# କଠୋପନିଷଦ୍



ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।
କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା ଦୁର୍ଗଂ ପଥସ୍ତତ୍କବୟୋ ବଦନ୍ତି ॥

ସତ୍ୟାନନ୍ଦ ଚମ୍ପତିରାୟ

Digitized by srujanika@gmail.com

ॐ

Sri Satyanand Champati Ray and Smt. Kamalini Devi

May God bless you health! May [illegible] always be with you! Best wishes,

Swami Chidananda ॐ

24.3.'86

# କଠୋପନିଷଦ୍

ସତ୍ୟାନନ୍ଦ ଚମ୍ପତିରାୟ



ନତତ୍ର ସୂର୍ଯ୍ୟୋଭାତି ନ ଚନ୍ଦ୍ର ତାରକଂ
ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ
ତମେବ ଭାନ୍ତମନୁଭାତି ସର୍ବଂ
ସତ୍ୟ ଭାସା ସର୍ବମିଦଂ ବିଭାତି ।।

ବେଦାନ୍ତ ପ୍ରଚାର ପରିଷଦ୍
ଭୂମିକା, ଖଣ୍ଡଗିରି, ଭୁବନେଶ୍ୱର - ୩୦

Digitized by srujanika@gmail.com

ଉପନିଷଦ ଗ୍ରନ୍ଥମାଳା : ତୃତୀୟ ପୁଷ୍ପ

**କଠୋପନିଷଦ୍**

ସତ୍ୟାନନ୍ଦ ଚମ୍ପତିରାୟ

ପ୍ରକାଶକ :
ବେଦାନ୍ତ ପ୍ରଚାର ପରିଷଦ୍
ଭୂମିକା, ପ୍ଲଟ୍ ନଂବର ୫୭୬,
ପୋଷ୍ଟ : ଖଣ୍ଡଗିରି
ଭୁବନେଶ୍ୱର - ୩୦

ମୁଦ୍ରଣ :
ଶିବା ଡି.ଟି.ପି ସେଣ୍ଟର
ଚଣ୍ଡୀ ଛକ, କଟକ - ୧
ଫୋନ- ୬୦୧୩୨୮

ପ୍ରଥମ ସଂସ୍କରଣ : ୧୯୯୮

ମୂଲ୍ୟ : ପଇଁଚାଳିଶ ଟଙ୍କା

Digitized by srujanika@gmail.com



ଓଁ

ଅଖଣ୍ଡ ମଣ୍ଡଳାକାରଂ ବ୍ୟାପ୍ତଂ ଯେନ ଚରାଚରମ୍
ତଦ୍ ପଦଂ ଦର୍ଶିତ ଯେନଂ ତସ୍ମୈ ଶ୍ରୀଗୁରବେ ନମଃ ।
ଅନେକ ଜନ୍ମ ସଂପ୍ରାପ୍ତଂ କର୍ମବନ୍ଧ ବିଦାହିନେ
ଆତ୍ମଜ୍ଞାନ ପ୍ରଦାନେନ ତସ୍ମୈ ଶ୍ରୀଗୁରବେ ନମଃ ।
ମନ୍ନାଥ ଶ୍ରୀ ଜଗନ୍ନାଥଃ ମଦ୍‌ଗୁରୁଃ ଶ୍ରୀଜଗଦ୍‌ଗୁରୁଃ
ମମାତ୍ମା ସର୍ବଭୂତାତ୍ମା ତସ୍ମୈ ଶ୍ରୀଗୁରବେ ନମଃ ।

**ମୋର ପରମାରାଧ୍ୟ ଗୁରୁଦେବ**
**ପରମ ପାବନ ଶ୍ରୀ ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ**
**ପଦାରବିନ୍ଦରେ ବିନମ୍ର ପୁଷ୍ପାଞ୍ଜଳି ।**

ସତ୍ୟାନନ୍ଦ
ମାର୍ଗଶିର ପୂର୍ଣ୍ଣିମା, ୧୯୯୭
ଓଁ

Digitized by srujanika@gmail.com

## ପରମପୂଜ୍ୟ ଶ୍ରୀ ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କ



# ଆଶୀର୍ବାଣୀ

ଓଁ

ଓଡ଼ିଶାର ଅନ୍ୟତମ ପ୍ରସିଦ୍ଧ କବି ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ ଗୀତା, ଈଶୋପନିଷଦ ଓ କେନୋପନିଷଦର ଅନୁବାଦ ସହ ବ୍ୟାଖ୍ୟା ସହଜରେ ସାଧାରଣ ପାଠକ ଉପନିଷଦ ଭାବଧାରାକୁ ମନେ ରଖି ପାରିଲା ଭଳି ଲୋକପ୍ରିୟ ଛନ୍ଦୋବଦ୍ଧ ପଦ୍ୟରେ କରିଛନ୍ତି। ସେପରି କଠୋପନିଷଦ୍‌କୁ ଏବେ ଅନୁବାଦ କରିଥିବାର ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ। ଯମ ଓ ନଚିକେତା ସମ୍ବାଦ ଛଳରେ ସରଳ ଓ ଲୋକପ୍ରିୟ ଭାବରେ ଅଗ୍ନି-ବିଦ୍ୟା ପରି ପରମ ଅଧ୍ୟାତ୍ମସିଦ୍ଧି କିପରି ଅଟଳ ନିଷ୍ଠା ଦ୍ୱାରା ସମ୍ଭବ ହୋଇପାରେ କଠୋପନିଷଦରେ ତାହା କୁହାଯାଇଛି। ଆଶା କରେ ସତ୍ୟାନନ୍ଦଙ୍କ ଏହି ଓଡ଼ିଆ ପଦ୍ୟାନୁବାଦ ଅଧ୍ୟାତ୍ମାନୁସନ୍ଧିତ୍ସୁଙ୍କ ତୃଷା ନିବାରଣରେ ବହୁ ପରିମାଣରେ ସମର୍ଥ ହେବ। କାରଣ ହୃଦୟର ଭାଷା (ପଦ୍ୟମାଧ୍ୟମ) ରେ ହିଁ ବୈଦିକ ଋଷିମାନଙ୍କର ମାନସ ଭାବ ପ୍ରକାଶ ପାଇଛି।

ମୁଁ ଲେଖକ ଓ ପାଠକ ଉଭୟଙ୍କର ସଫଳତା କାମନା କରୁଛି।

ଜୟ ଜଗନ୍ନାଥ। ଏହା ଜଗଦ୍ଧିତାୟ ହେଉ।

ସ୍ୱା. ସ୍ୱାମୀ ଚିଦାନନ୍ଦ
୮।୪।୯୬

Digitized by srujanika@gmail.com

ॐ

Great is my joy to know that Sri Satyananda Champatiray, an eminent poet of Orissa has now translated the Kathopanisad in the same popular pattern as adopted by him in his translations of the Gita, the Isopanisad and the Kenopanisad with its translation and annotation both in metrical verse for easy récapitulation of Upanisadic thoughts by the general readers. The Kathopanisad in the form of dialogue between Yama and Nachiketas teaches the Agni-vidya in a simple popular manner the highest divine attainment through an avowed steadfastness. I hope Sri Satyananda's this verified translation in Oriya will quench the thirst of spiritual seekers to a great extent, since the mind of the Vedic seer is found expression in the language of the heart. I wish both writer and the reader all success. Jai Jagannatha!

May many be benefitted by this book.

Swami Chidananda
8.4.97 ॐ

Digitized by srujanika@gmail.com

BBSR-STD-0674
Phone : 432945 (O), 417387 (R)



1392/2395 SRIVIDYA
BHUBANESWAR - 751030

A Spiritual Philanthropic Research Journal on Philosophy & Culture of



ଶ୍ରୀବିଦ୍ୟା ସଂସ୍କୃତି ସଂସ୍ଥାନ : श्रीविद्या-संस्कृति-संस्थानम्
SRIVIDYA SAMSKRUTI SAMSTHAN
(Regd. No. 1594 - 177 of 1987 - 88)
Hon. Chief Editor & Working President
*H.H. Mahamedhanandanath Saraswati*
सर्वतन्त्रस्वतन्त्रविद्वान् श्रीमहामेधानन्दनाथसरस्वती



# ଶ୍ରୀମୁଖ

ଧର୍ମାଧର୍ମାଦ୍ୟସଂସ୍ପୃଷ୍ଟଂ କାର୍ଯ୍ୟକାରଣବର୍ଜିତଂ କାଳାଦିଭିରବିଚ୍ଛିନ୍ନଂ ବ୍ରହ୍ମ ଯଦନ୍ତମାମ୍ୟହମ୍ ।
କାଦିଠାନ୍ତାଦ୍ ସୂର୍ଯ୍ୟଗର୍ଭାଦ୍ ଯଃ ଚିକେତ ଯମାଦ୍ ସ୍ୱୟମଗ୍ନିର୍ଭାତମନାହତଂ ସୋଽୟମାତ୍ମା ସନାତନଃ ॥

**ଅନୁବନ୍ଧ ଚତୁଷ୍ଟୟ :**

କଠୋପନିଷଦ୍ କୃଷ୍ଣଯଜୁର୍ବେଦର କଠ-ଶାଖାନ୍ତର୍ଗତ ଏକ ବିଖ୍ୟାତ ଉପନିଷଦ୍ । ଏଥିରେ ଯମ-ନଚିକେତା-ସଂବାଦ ରୂପରେ ପରିବେଷିତ ଅଗ୍ନିବିଦ୍ୟା ହିଁ ବ୍ରହ୍ମବିଦ୍ୟା ବା ଉପନିଷଦ୍ ତତ୍ତ୍ୱ ବୋଲି ପ୍ରତିପାଦିତ ହୋଇଛି । ବିବେକ ବୈରାଗ୍ୟାଦି ସାଧନସଂପନ୍ନ ଏହାର **ଅଧିକାରୀ** । ପ୍ରତ୍ୟଗାତ୍ମଭୂତ ବ୍ରହ୍ମରୂପ ଏହାର **ବିଷୟ**, ସଂସାର ରୂପକ ଅନର୍ଥର ନିବୃତ୍ତି ଓ ନିରତିଶୟାନନ୍ଦ ପ୍ରାପ୍ତି ହେଉଛି ଏହାର **ପ୍ରୟୋଜନ** ଏବଂ ସାଧ୍ୟସାଧନ ଭାବ **ସମ୍ବନ୍ଧକୁ** ନେଇ ଏହାର ଅନୁବନ୍ଧ ଚତୁଷ୍ଟୟ ।

**ଋଗ୍‌ବେଦରେ ମଧ୍ୟ 'କଠ' :**

ଅଷ୍ଟାଧ୍ୟାୟୀର 'ଦେବସୁମ୍ନୟୋର୍ଯଜୁଷି କାଠକେ (୭/୪/୩୮)ର ବ୍ୟାଖ୍ୟା ବେଳେ ହରଦତ୍ତ ତାଙ୍କର 'ପଦମଞ୍ଜରୀ'ରେ ଋଗ୍‌ବେଦରେ ମଧ୍ୟ ଗୋଟିଏ କଠ-ଶାଖା ଥିବା ସୂଚନା ଦେଇଛନ୍ତି ବୋଲି ଭଟ୍ଟୋଜୀ ଦୀକ୍ଷିତ ଉଲ୍ଲେଖ କରିଛନ୍ତି– 'ବହ୍ୱୃଚାନାମପ୍ୟସ୍ତି କଠଶାଖା, ତତୋ ଭବତି ପ୍ରତ୍ୟୁଦାହରଣମ୍ ଇତି ହରଦତ୍ତଃ । ହେମଚନ୍ଦ୍ର ମଧ୍ୟ ତାଙ୍କ କୋଷରେ 'କଠୋ ମୁନୌ ସ୍ୱର ଋଚାଂ ଭେଦେ ତତ୍‌ପାଠିବେଦିନୋ'ରେ କଠକୁ ଋଗ୍‌ବେଦର ଭେଦ ବା ଶାଖା ବୋଲି କହିଛନ୍ତି । ଆଚାର୍ଯ୍ୟ ଶଙ୍କର ଛାନ୍ଦୋଗ୍ୟୋପନିଷଦ୍ (୬/୩/୨) ଭାଷ୍ୟରେ 'ଇତି ହି କାଠକେ' କହି 'ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁଃ' ଓ 'ଆକାଶବତ୍ ସର୍ବଗତଶ୍ଚ



Digitized by srujanika@gmail.com

ନିତ୍ୟଃ' ବାକ୍ୟ ଉଦ୍ଧାର କରିଛନ୍ତି । ଏଥିରୁ ପ୍ରଥମ ବାକ୍ୟଟି ପ୍ରଚଳିତ ଯଜୁର୍ବେଦୀୟ କଠୋପନିଷଦ୍ (୨/୨/୧୨)ରେ ଦେଖିବାକୁ ମିଳେ । ମାତ୍ର 'ଆକାଶବଦ୍...' ଉଦ୍ଧୃତିଟି ଋଗ୍‌ବେଦୀୟ 'କଠୋପନିଷଦ୍'ର ବୋଲି ଅନୁମାନ କରାଯାଏ । ଏପରି ସ୍ଥିତିରେ ଦୁଇଟି ବେଦ ସହ ସମ୍ପୃକ୍ତ ଜଣେ ମୁନିଙ୍କ 'କଠ' ଗୋଟିଏ ଶାଖା କିପରି ହେବ ସନ୍ଦେହ ହୁଏ ।

**କଠ : ଅନାହତ ଚକ୍ର ବା ହୃଦ୍-ପଦ୍ମ -**

'କଠ' ନାମ କାହିଁକି ହେଲା ବୋଲି ପ୍ରଶ୍ନ କଲେ ପ୍ରାୟ ସମସ୍ତେ କହିବେ 'କଠ'-ନାମକ ଜଣେ ମନ୍ତ୍ରଦ୍ରଷ୍ଟା ଶାଖା ପ୍ରବର୍ତ୍ତକ ଋଷିଙ୍କର ନାମାନୁସାରେ ଏପରି ନାମକରଣ ହୋଇଛି । କିନ୍ତୁ ତଥାକଥିତ ମହର୍ଷିଙ୍କ ଅନୁସୃତି ବା ଅନୁସ୍ମୃତିରେ ସେପରି ନାମର ପ୍ରଚଳନ ଆମ ଭାରତ ବର୍ଷରେ ଦେଖିବାକୁ ମିଳେ ନାହିଁ । ମୋ ମତରେ 'କଠ'— ଏକ ଋଷିଙ୍କର ନାମ ନୁହେ । ଏହା ହେଉଛି ହୃଦୟଗୁହା (ଗୁହାଂ ପ୍ରବିଶ୍ୟ, କଠ ୨।୧।୭) ବା ଅନାହତଚକ୍ରର କଠ ('କ' ଠାରୁ 'ଠ' ଅକ୍ଷରାତ୍ମକ) ଦ୍ୱାଦଶ ଦଳରେ ଲୟଯୋଗର ଯୋଗିଜନ ସୁଲଭ ସାଧନା ଓ ସିଦ୍ଧି ପାଇଁ ଏକ ଆର୍ଷ ମାର୍ଗର ନିର୍ଦ୍ଦେଶ ମାତ୍ର । ତେଣୁ ଗୁହ୍ୟାତିଗୁହ୍ୟ ଅଜପାଜପ ଧ୍ୟାନରେ—

''କାଦ୍ୟୈଷ୍ଟାନ୍ତଗତୈଃ ପ୍ରକଳ୍ପିତଦଳେ ପଦ୍ମେ ନିବିଷ୍ଟଂ ଶିବଂ
ରାକାନାୟକମଣ୍ଡଳ ପ୍ରରୁଚିରଂ ତ୍ର୍ୟକ୍ଷଂ କପର୍ଦ୍ଦୋଜ୍ଜ୍ୱଳମ୍ ।
ଶାନ୍ତଂ ଟଙ୍କମୃଗାଭୟୈର୍ବରଯୁତୈର୍ଯୁକ୍ତଂ କରୈଃ କଙ୍କଣଂ
ଗ୍ରୈବେୟାଙ୍ଗଦହାରନୂପୁରଯୁତଂ ଚର୍ମାମ୍ବରଂ ଚିନ୍ତୟେତ୍ ।।

ଅନାହତଚକ୍ରେ ଦ୍ୱାଦଶଦଳପଦ୍ମେ କଂ ଖଂ ଗଂ ଘଂ ଙଂ ଚଂ ଛଂ ଜଂ ଝଂ ଞଂ ଟଂ ଠଂ ଦ୍ୱାଦଶାକ୍ଷରେ ଷଟ୍‌କୋଣଯନ୍ତ୍ରେ ହରିଣବାହନେ ସ୍ଥିତାୟ ପାର୍ବତୀଶକ୍ତିସହିତାୟ ହେମବର୍ଣ୍ଣାୟ ପରମଶିବାୟ ଷଟ୍‌ସହସ୍ରଂ ଅଜପାଜପଂ ନିବେଦୟାମି ନମଃ— ବୋଲି କୁହାଯାଏ । ଏହି ଚକ୍ରର ବର୍ଣ୍ଣନା କରି ହିଁ 'ଶ୍ରୀ ଲଳିତା ସହସ୍ର ନାମ'ରେ କୁହାଯାଇଛି— ''ଅନାହତାବ୍ଜନିଳୟା ଶ୍ୟାମାଭା ବଦନଦ୍ୱୟା । ଦଂଷ୍ଟ୍ରୋଜ୍ଜ୍ୱଳାକ୍ଷମାଳାଦିଧରା ରୁଧିର-ସଂସ୍ଥିତା । କାଳରାତ୍ର୍ୟାଦିଶକ୍ତ୍ୟୌଘବୃତା ସ୍ନିଗ୍ଧୌଦନପ୍ରିୟା । ମହାବୀରେନ୍ଦ୍ରବରଦା ରାକିଣ୍ୟମ୍ବାସ୍ୱରୂପିଣୀ ।'' ଏହାର ଦ୍ୱାଦଶ ଦଳରେ 'କାଳରାତ୍ରି, ଖଣ୍ଡିତା, ଗାୟତ୍ରୀ, ଘଣ୍ଟାକର୍ଷିଣୀ, ଙର୍ଣ୍ଣା, ଚନ୍ଦ୍ରା, ଛାୟା, ଜୟା, ଝଂକାରିଣୀ, ଜ୍ଞାନରୂପା, ଟଂକହସ୍ତା, ଠଂକାରିଣୀ'— ଶକ୍ତିଙ୍କ ଉପାସନା ଷଟ୍‌କୋଣ ଯନ୍ତ୍ର ମଧ୍ୟରେ 'ହୃଦା ମନୀଷା ମନସାଭିକ୍ଳୃପ୍ତୋ' (କଠ ୨।୩।୯) କରି ବାୟୁବୀଜ 'ୟଂ' ଦ୍ୱାରା ପ୍ରାଣଶକ୍ତିକୁ ପୁଷ୍ଟ କରି 'ମୃତ୍ୟୁଂ ତୀର୍ତ୍ତ୍ୱା' କୃଷ୍ଣସାରାଧିରୂଢ଼ ଧୂମ୍ରସଦୃଶ 'ୟଂ' ବୀଜମ୍ ଏବଂ ଶ୍ୱେତବର୍ଣ୍ଣ ଅଧୂମ୍ରକ ଈଶାନ (କଠ- ୨।୧।୧୩) ନିତ୍ୟକୂଟସ୍ଥ ହୋଇ ଅମୃତତ୍ୱ ଲାଭ କରନ୍ତି— 'ଅମୃତାସ୍ତେ



Digitized by srujanika@gmail.com

ଭବନ୍ତି' (କଠ- ୨।୩।୯) । ଏଠାରେ ହିଁ 'ଅଙ୍ଗୁଷ୍ଠମାତ୍ରଃ ପୁରୁଷଃ' (କଠ୨।୧।୧୨,୧୩) 'ଉ' (କଠ ୨।୩।୧୩) ବା ପ୍ରାଣଶକ୍ତି ଅଟନ୍ତି । ସେ ହିଁ ଆମ ନର ଦେହରେ ନାରାୟଣ ବା ଶରୀର ରଥରେ ଅଧିରୂଢ଼ 'ବାମନ' ପୁରୁଷ, ଯାହାଙ୍କ ଦର୍ଶନରେ ମଣିଷ ଆଉ ପୁନର୍ଜନ୍ମର ଆବର୍ତ୍ତରେ ପଡେ ନାହିଁ– ''ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ'' । ସେ ହିଁ ଆମ ପିଣ୍ଡ ବ୍ରହ୍ମାଣ୍ଡ ବା ଦେହ ଜଗତ୍‌ର ନାଥ–ପୁରୁଷୋତ୍ତମ ଜଗନ୍ନାଥ ।

କଠୋପନିଷଦ୍ ପୂର୍ବାର୍ଦ୍ଧ (ବା ପ୍ରଥମ ଅଧ୍ୟାୟର ବଲ୍ଲୀତ୍ରୟ)ରେ ଯୋଗସାଧନର ଲୟକ୍ରମ ଏବଂ ଉତ୍ତରାର୍ଦ୍ଧ (ବା ଦ୍ୱିତୀୟ ଅଧ୍ୟାୟର ବଲ୍ଲୀତ୍ରୟ)ରେ ଲୟ କ୍ରମାନୁସାରେ ବାକ୍‌ଶକ୍ତିକୁ ମନରେ, ମନକୁ ବୁଦ୍ଧିରେ ଏବଂ ବୁଦ୍ଧିକୁ ସମଷ୍ଟି ପ୍ରାଣସ୍ୱରୂପ ମହାନାତ୍ମା ବା ମହତ୍‌ରେ ଏବଂ ମହତ୍‌କୁ ପରମତତ୍ତ୍ୱରେ ଲୀନ କରି କୁଣ୍ଡଳିନୀ ଶକ୍ତିର ଉତ୍ଥାପନ ପାଇଁ ଉପଦେଶ ଦିଆଯାଇଛି । 'ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ' (କଠ ୧।୩।୧୪) – ଉଠ ତୁମେ ଜାଗ ଲାଗ ସିଦ୍ଧି ସୁନିଶ୍ଚିତ ।

ଦ୍ୱିତୀୟ ଅଧ୍ୟାୟରେ ମନୋନିରୋଧ ଦ୍ୱାରା ଆତ୍ମାକୁ ଶରୀର (ସ୍ଥୂଳ ଓ ସୂକ୍ଷ୍ମ)ରୁ ପୃଥକ୍ କରିବା ଆବଶ୍ୟକ ଅର୍ଥାତ୍ ଉଭୟର ଅନ୍ୟଥାଖ୍ୟାତିସ୍ୱରୂପ ଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ବୋଲି ପାତଞ୍ଜଳ ଯୋଗଶାସ୍ତ୍ରରେ ମଧ୍ୟ କୁହାଯାଇଛି । ଚିତ୍ତର ବିଲୀନତା ବା ଲୟଯୋଗ ଦ୍ୱାରା ପ୍ରାଣବାୟୁ ସ୍ଥିର ହୁଏ ଏବଂ ସ୍ୱରୂପାନନ୍ଦ ଲାଭ ରୂପକ ପରମପଦ ପ୍ରାପ୍ତ ହୁଏ । କଠୋପନିଷଦ୍ (୨।୩।୧୦) ରେ କୁହାଯାଇଛି–

ଯଦା ପଞ୍ଚାବତିଷ୍ଠନ୍ତେ ଜ୍ଞାନାନି ମନସା ସହ ।
ବୁଦ୍ଧିଶ୍ଚ ନ ବିଚେଷ୍ଟତେ ତାମାହୁଃ ପରମାଂ ଗତିମ୍ ।।

ଅର୍ଥାତ୍, ଯେତେବେଳେ ମନ ସହ ପଞ୍ଚ ଜ୍ଞାନେନ୍ଦ୍ରିୟ ନିରୁଦ୍ଧ ହୋଇଯାଏ ଓ ବୁଦ୍ଧି ମଧ୍ୟ ନିଶ୍ଚେଷ୍ଟ ହୋଇଯାଏ, ତାହାକୁ 'ପରମଗତି' କୁହାଯାଏ । ଧୈର୍ଯ୍ୟର ସହ ମୁଞ୍ଜାରୁ ଈଷିକା ବାହାର କଲା ଭଳି ଯୋଗ ଧାରଣାରେ ଶରୀରରୁ ଆତ୍ମାକୁ ଅଲଗା କରିବା ଲାଗି କୁହାଯାଇଛି –

'ତଂ ସ୍ୱାଚ୍ଛରୀରାଦ୍ ପ୍ରବୃହେନ୍ମୁଞ୍ଜାଦିବେଷୀକାଂ ଧୈର୍ଯ୍ୟେଣ'

– ଏଥିପାଇଁ ହୃଦୟକମଳ(କଠ) ର ଧ୍ୟାନ ଦ୍ୱାରା ମୂର୍ଦ୍ଧା ଉପରକୁ ଯାଇଥିବା ନାଡ଼ୀରେ ମନକୁ ସହସ୍ରାରରେ ରଖିବା ଲାଗି ଏକ ଯୋଗବିଧିର ସଂକେତ ରହିଛି । ଅନ୍ତ ସମୟରେ ଉକ୍ତ ନାଡ଼ୀରେ ପ୍ରାଣତ୍ୟାଗ କଲେ 'ମୋକ୍ଷ' ମିଳେ–

'ଶତଂ ଚୈକା ଚ ହୃଦୟସ୍ୟ ନାଡ୍ୟସ୍ତାସାଂ ମୂର୍ଦ୍ଧାନମଭିନିଃସୃତୈକା ।
ତୟୋର୍ଦ୍ଧ୍ୱମାୟନ୍ନମୃତତ୍ୱମେତି ବିଷ୍ୱଙ୍‌ଙନ୍ୟା ଉତ୍କ୍ରମଣେ ଭବନ୍ତି ।। (କଠ ୨।୩।୧୬)



Digitized by srujanika@gmail.com

ଏହା ହିଁ କୁଣ୍ଡଳିନୀ ସାଧନାରେ ବ୍ରହ୍ମରନ୍ଧ୍ର ଦେଇ ପ୍ରାଣର ମହାପ୍ରୟାଣ ବା ମୋକ୍ଷ । ଏହାର ସାଧନ-ସଂକେତ ଆମର କଠୋପନିଷଦ୍ ଯମ-ନଚିକେତା ସଂବାଦ ମଧ୍ୟରେ ନିହିତ ।

**କଥାରମ୍ଭ :**

ଜଣେ ଋଷି ଥିଲେ । ତାଙ୍କ ନାମ ଔଦ୍ଦାଳକି ଆରୁଣି ଗୌତମ । ଋଗ୍ବେଦ ୪ର୍ଥ ମଣ୍ଡଳର ମନ୍ତ୍ର ଦ୍ରଷ୍ଟା ଋଷି ବାମଦେବ ଏବଂ 'ଅହଂ ବ୍ରହ୍ମାସ୍ମି'– ଏହି ମହାବାକ୍ୟର ଦ୍ରଷ୍ଟା ଋଷି ଗୌତମ ତଥା ନ୍ୟାୟ ଦର୍ଶନ ପ୍ରଣେତା ଅକ୍ଷପାଦ ଗୌତମ, ସୁପ୍ରସିଦ୍ଧ ସତ୍ୟକାମ ଜାବାଳର ଗୁରୁ ହରିଦ୍ରୁମତ୍ବ ଗୌତମ, ସୁବିଖ୍ୟାତ ସ୍ମୃତିକାର ଗୌତମ, ରାମାୟଣର ଅହଲ୍ୟାପତି ଗୌତମ, ମହାଭାରତ ଯୁଦ୍ଧର ଅନ୍ୟତମ ମହାରଥୀ ଶରଦ୍ୱାନ କୃପାଚାର୍ଯ୍ୟ ଗୌତମ ଓ 'ତତ୍ତ୍ୱମସି' ମହାବାକ୍ୟର ଶ୍ରୋତା ଶ୍ୱେତକେତୁ ଗୌତମଙ୍କ ଭଳି କଠୋପନିଷଦ୍‌ର ଶ୍ରୋତା ନଚିକେତା ମଧ ଥିଲେ ଆଉ ଏକ ଗୌତମ । ଏହି ଗୌତମ ତାଙ୍କର ଗୋତ୍ର ନାମ ଥିଲା । ନଚିକେତାଙ୍କ ପିତାଙ୍କ ନାମ ଥିଲା ଉଦ୍ଦାଳକ ବା ଔଦ୍ଦାଳକି ଏବଂ ସେ ମହର୍ଷି ଅରୁଣଙ୍କର ପୁତ୍ର ହୋଇଥିବାରୁ 'ଆରୁଣି' । ମହର୍ଷି ଆରୁଣି ପ୍ରଚୁର ବାଜ (ଅନ୍ନ) ଦାନ କରି ଶ୍ରବ (= ବହୁଶ୍ରୁତ ବା ବିଖ୍ୟାତ) ହୋଇଥିବାରୁ ବାଜଶ୍ରବା ନାମରେ ପ୍ରସିଦ୍ଧି ଲାଭ କରିଥିଲେ । ଭଟ୍ଟ ଭାସ୍କର ମିଶ୍ରଙ୍କ ମତରେ ତାଙ୍କର ପ୍ରକୃତ ନାମ 'ଉଶନ୍' (ଉଶନ୍ ନାମ ବାଜଶ୍ରବସୋଽପତ୍ୟମ୍) ଥିଲା ।

**ତଂହ କୁମାରଂ ସନ୍ତଂ : ପିଲାଟିଏ ତଥାପି –**

ଥରେ ମହର୍ଷି ଉଦ୍ଦାଳକ ସକାମ ବିଶ୍ୱଜିତ୍ ଯଜ୍ଞ କରି ଦକ୍ଷିଣାରେ ନିଜର ସର୍ବସ୍ୱ ଦାନ କରିଦେଲେ । ସେ ଦାନ ଭିତରେ ତାଙ୍କର ଭଲ ଦୁଧିଆଳୀ ଗାଈ ସହିତ ଅନେକ ଅକର୍ମଣ୍ୟ ବୁଢ଼ୀ ଗାଈ ମଧ ଥିଲା । ପିତାଙ୍କ ଏପରି ଅନୁପଯୋଗୀ ଦାନ ଦେଖି କୁମାର ନଚିକେତା ଭାବିଲେ 'ଦାନ ଯଦି ଗ୍ରହୀତାଙ୍କ ଉପକାରରେ ଆସିବ ନାହିଁ, ତେବେ ଏପରି ଦାନ ଦେଇ ଅଯଶଃ ସିନା ଯଶଃ ମିଳିବ ନାହିଁ । ପିତା ଯଦି ସର୍ବସ୍ୱ ଦାନ ଦେବା ଉଦ୍ଦେଶ୍ୟରେ ଭଲ ମନ୍ଦ ସବୁ ଦାନ ଦେଇ ଦେଉଛନ୍ତି, ତେବେ ସେଥିରେ ତାଙ୍କର ପୁଅ ମୁଁ ନଚିକେତା ବି ତ ଅଛି । ତା'ହେଲେ ମୋତେ ସେ କାହାକୁ ଦେବେ ?'

ତେଣୁ ନଚିକେତାଙ୍କ ପ୍ରଶ୍ନ (କଠ ୧।୧।୪) 'ତୁମେ ମୋତେ କାହାକୁ ଦେବ ?' ପ୍ରଶ୍ନଟିକୁ ଦୁଇଥର ଏଡ଼ାଇ ଦେଲା ପରେ ପୁଣି ତୃତୀୟ ଥର ପଚାରିବାରୁ ରାଗିଯାଇ ପିତା ବିରକ୍ତିର ସହ କହିଲେ– 'ମୁଁ ତୋତେ ମୃତ୍ୟୁ (ଯମ)କୁ ଦେବି ।' ଏହା କହି ପିତା ଅନୁତାପ କଲେ ।

ନଚିକେତା ପୁଣି ଭାବିଲେ (କଠ ୧।୧।୫) 'ପିତା ମୋତେ ମୃତ୍ୟୁକୁ ଦେବାକୁ କହିଲେ ଯେ, ମୁଁ ଯମଙ୍କର କେଉଁ କାମରେ ବା ଆସିବି ? ତଥାପି ଯମ ମୋତେ ଯେଉଁ



Digitized by srujanika@gmail.com

କାମରେ ଲଗାଇବେ, ସେଥିରେ ମୁଁ ଉତ୍ତମ ନ ହୋଇ ପାରିଲେ ବି ମଧ୍ୟମ ହେବି ସିନା କେବେ ହେଁ ଅଧମ ହେବିନାହିଁ ।'

ନଚିକେତା ଅନୁତପ୍ତ ପିତାଙ୍କୁ ପୁଣି ବୁଝାଇ କହିଲେ (କଠ ୧।୧।୧୬)– 'ଆପଣ ଅନୁତାପ କାହିଁକି କରୁଛନ୍ତି ? ଆପଣଙ୍କ ପୂର୍ବପୁରୁଷମାନେ ସବୁବେଳେ ନିଜର ବଚନ ରକ୍ଷା କରି ଆସିଛନ୍ତି । ଏହି ମଣିଷ ଜୀବନ ଫସଲ ଭଳି ଫଳି ପାଚି ଝଡ଼ି ପୁଣି ଅଙ୍କୁରି ବାରେ ଲାଗିଛି । ଜୀବନ ପାଇଁ ଏତେ ଅନୁଶୋଚନା ଅନାବଶ୍ୟକ । ମୁଁ ମୃତ୍ୟୁ (ଯମ) ଲୋକକୁ ଯିବି ।

ପୁରୁଷମେଧ ଓ ସର୍ବମେଧ ଯଜ୍ଞ ପରେ ସନ୍ୟାସର ବିଧାନ କରାଯାଇଥାଏ । ଉଶନ୍ ବାଜଶ୍ରବା କାମନାର ପ୍ରତୀକ କାରଣ ବଶକାନ୍ତୌ ଧାତୁରୁ ନିଷ୍ପନ୍ନ ଉଶନ୍ ଶବ୍ଦର ଅର୍ଥ ଯେ ନିଜ ପାଇଁ କାମନା କରେ (କାମୟମାନଃ ଇତି ଶଙ୍କରଃ) ଏବଂ ବାଜଶ୍ରବା ଶବ୍ଦରୁ ତାଙ୍କର ଲୋକୈଷଣା ସୂଚିତ ହୁଏ । ସେ ରୂଢ଼ିବାଦୀ ଏବଂ ଧର୍ମର ସକାମ ବାହ୍ୟ (କ୍ରତୁ) ଅଙ୍ଗପ୍ରତି ଅଧିକ ଆଗ୍ରହୀ । ତେଣୁ ସେ ସର୍ବଜିତ୍ ଯାଗ କରନ୍ତି । ଏପରି ସର୍ବଜିତ୍ ଯାଗ ମହାରାଜା ରଘୁ କରି ନିଃସ୍ୱ ହୋଇଥିଲେ ବୋଲି 'ରଘୁବଂଶ' (୫ମ ସର୍ଗ)ରେ ଉଲ୍ଲେଖ ଅଛି । ନଚିକେତା ପାଞ୍ଚବର୍ଷର ବାଳକ (କୌମାରଂ ପଞ୍ଚମାବ୍ଦାନ୍ତଂ ପୌଗଣ୍ଡଂ ଦଶମାବଧି, କୈଶୋରମାପଞ୍ଚଦଶଂ ଯୌବନଂ ସ୍ୟାତ୍ ତତଃ ପରମ୍) କିଛି କାମନା ନାହିଁ (ଭ୍ୱାଦି କିତ୍ ଇଚ୍ଛାୟାଂ ଧାତୁରୁ 'ନ ଚିକେତ') କି ଏସବୁ କାହିଁକି କିଛି ବୁଝିପାରୁ ନାହାନ୍ତି ( ଜୁହୋତ୍ୟାଦି 'କି' ଜ୍ଞାନେ ଧାତୁରୁ 'ନ ଚିକେତି') । ସେ ତ୍ୟାଗ, ସରଳତା ଓ ନିଷ୍କାମ କର୍ମର ପ୍ରତୀକ । ଜ୍ଞାନେଶ୍ୱର ୧୮ ବର୍ଷରେ, ଜ୍ଞାନସମ୍ବନ୍ଧର୍ ୧୬ ବର୍ଷରେ ଓ ଆଚାର୍ଯ୍ୟ ଶଙ୍କର ୮ ବର୍ଷରେ ପୂର୍ଣ୍ଣ ବୈରାଗ୍ୟର ଅଧିକାରୀ ହୋଇଥିଲେ ମାତ୍ର ଶ୍ରୌତ ନଚିକେତା ୫ ବର୍ଷରୁ ବୈରାଗ୍ୟର ଅଧିକାରୀ ହୋଇପାରିଥିଲେ ଏବଂ ସଂସ୍କାରବଶତଃ ନିଜର କର୍ତ୍ତବ୍ୟ ବିଷୟରେ ପୂର୍ଣ୍ଣ ଅବହିତ ଥିଲେ ।

**ଯମଘରେ ନଚିକେତା :**

ନଚିକେତା ଯମଙ୍କ ଦ୍ୱାରରେ ପହଞ୍ଚିଲେ । ଘରେ ଯମ  ନଥିଲେ । ତିନିଦିନ ନ ଖାଇ ନ ପିଇ ନଚିକେତା ଯମଙ୍କୁ ଅପେକ୍ଷା କଲେ । ଯମ ଫେରିବା ପରେ ନିଜ ମନ୍ତ୍ରୀ ଓ ପତ୍ନୀଙ୍କ ପରାମର୍ଶରେ 'ଅଗ୍ନିସଦୃଶ ଅତିଥି ବ୍ରାହ୍ମଣ କୁମାର' (କଠ ୧।୧।୭, ତୁଳନୀୟ ଋଗ୍‌ବେଦର 'ଏତମର୍ଥଂ ନ ଚିକେତ ଅହଂ ଅଗ୍ନିଃ)ଙ୍କୁ ପାଦ୍ୟାର୍ଘ୍ୟ ଦେଇ ଅର୍ଚ୍ଚନା କଲେ । କାରଣ ଯେଉଁ ଘରେ ଅତିଥି ବ୍ରାହ୍ମଣ ନିରାଶ ହୋଇ ଭୋକରେ ରହେ, ସେ ଘର ମାଲିକର ଯେତେ ଆଶା, ଯଜ୍ଞ ଦାନାଦି ଶୁଭକର୍ମ, ପୁତ୍ର ଓ ପଶୁ– ସବୁକିଛି ନଷ୍ଟ ହୋଇଯାଏ । ତେଣୁ ବାଳକ ନଚିକେତାଙ୍କୁ ସନ୍ତୁଷ୍ଟ କରିବା ସକାଶେ ଯମ ତିନୋଟି ବର ଯାଚିଲେ ।



Digitized by srujanika@gmail.com

ଏଠାରେ ଯମଙ୍କୁ ବୈବସ୍ୱତ ବା ବିବସ୍ୱାନ୍ (ବା ସୂର୍ଯ୍ୟ)ଙ୍କ ପୁତ୍ର ବୋଲି ସମ୍ବୋଧନ କରାଯାଇଛି । 'ବିବସ୍'ର ଅର୍ଥ ଅନାଚ୍ଛାଦିତ । ସୂର୍ଯ୍ୟଙ୍କୁ ଆଚ୍ଛାଦିତ କରି ହେବ ନାହିଁ । ସ୍ୱରୂପତଃ ବ୍ରହ୍ମ ମଧ ଅନାବୃତ । ସୂର୍ଯ୍ୟ ହେଉଛନ୍ତି ଦିବ୍ୟାଗ୍ନି । ଏହି ଦିବ୍ୟାଗ୍ନିଙ୍କ ସନ୍ତାନ ଯମ ହେଉଛନ୍ତି ନିୟନ୍ତ୍ରଣଶକ୍ତି ବା ବିଶ୍ୱନିୟନ୍ତା ସଂଯମର ପ୍ରତୀକ ବ୍ରହ୍ମଙ୍କ । ଏହାଙ୍କର ମନ୍ତ୍ରୀ ହେଉଛନ୍ତି 'ମନ' ଓ ପତ୍ନୀ ହେଉଛନ୍ତି 'ବୁଦ୍ଧି' । ଯମଙ୍କ ଆଗରେ ଏମାନେ ଅତିଥି ନଚିକେତାଙ୍କୁ 'ବୈଶ୍ୱାନର' (ବିଶ୍ୱଶ୍ଚାସୌ ନରଶ୍ଚେତି ବିଶ୍ୱନରଃ ସଏବ ବୈଶ୍ୱାନରଃ) ବୋଲି କହି ସମଷ୍ଟି ଅଭିମାନ ଜାଗ୍ରତ୍-ଅବସ୍ଥାସମ୍ପନ୍ନ ନଚିକେତା ତାଙ୍କ ଜାଗତିକ ବସ୍ତୁର ବାଧ ପରେ ହିଁ ବ୍ରହ୍ମଜ୍ଞାନ ଦିଆଯିବା ଉଚିତ୍ ବୋଲି ସଂକେତ ଦେଇଛନ୍ତି ।

**ପ୍ରଥମ ବର– ଆଧିଭୌତିକ :**

ପ୍ରଥମେ ନଚିକେତା ପରିବାର ପାଇଁ ଆଧିଭୌତିକ ପାର୍ଥିବ ବର ମାଗିଲେ– ଯମପୁରରୁ ଘରକୁ ଫେରିଯିବା ସକାଶେ ଓ ତାଙ୍କ ପିତାଙ୍କ ସ୍ନେହ ଓ ସନ୍ତୋଷ ଦ୍ୱାରା ସାନନ୍ଦ ସ୍ୱୀକୃତ ହେବା ପାଇଁ ।

**ଦ୍ୱିତୀୟ ବର– ଆଧିଦୈବିକ :**

ଦ୍ୱିତୀୟ ଆଧିଦୈବିକ ବରରେ ମର୍ତ୍ତ୍ୟ ଓ ସ୍ୱର୍ଗର ସଂଯୋଜନ ସେତୁ ସ୍ୱରୂପ ଅଗ୍ନି ବିଦ୍ୟାର ଉପାସନା ଶିଖିବାକୁ ଚାହିଁଥିଲେ ଏବଂ ଯମ ଯେପରି ଶିକ୍ଷା ଦେଲେ ନଚିକେତା ଅନୁରୂପ ଭାବରେ ସବୁକଥା ପୁନରାବୃତ୍ତି କରିଦେବାରୁ ଯମଙ୍କଠାରୁ ଗୋଟିଏ (ସୃଂକା ବା) ରତ୍ନମାଳା ଉପହାର ସହ ପ୍ରାର୍ଥିତ ଅଗ୍ନିବିଦ୍ୟା ପାଇଲେ । ସେହି ଅଗ୍ନିବିଦ୍ୟାରୁ ଜ୍ଞାନ, ଅଧ୍ୟୟନ ଓ ଅନୁଷ୍ଠାନ ଦ୍ୱାରା ମାତା, ପିତା ଓ ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ଆଣି ବେଦ, ସ୍ମୃତି ଓ ଶିଷ୍ଟ ପୁରୁଷଙ୍କ ମାର୍ଗରେ ପ୍ରତ୍ୟକ୍ଷ, ଅନୁମାନ ଓ ଶାସ୍ତ୍ରୋକ୍ତ ବିଧିରେ ଯଜ୍ଞ, ଅଧ୍ୟୟନ ଓ ଦାନ କରି ତ୍ରିରାବୃତ ଅଗ୍ନି-ଚୟନ ପ୍ରକ୍ରିୟାରେ ନିର୍ଦ୍ଦିଷ୍ଟ ସଂଖ୍ୟକ ଇଷ୍ଟକ ଦ୍ୱାରା ନିର୍ଦ୍ଦିଷ୍ଟ କ୍ରମରେ ବେଦୀ ନିର୍ମାଣ ଓ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ଯଜ୍ଞାନୁଷ୍ଠାନ କରି ଅଗ୍ନିହିଁ ବୈଶ୍ୱାନର, ବିରାଟ ପୁରୁଷ, ପ୍ରଥମ ଶରୀର ଓ ସର୍ବଜଗତର ଆଦି 'ସ ବୈ ଶରୀରୀ ପ୍ରଥମଃ, ସ ବୈ ପୁରୁଷଃ ଉଚ୍ୟତେ, ଆଦିକର୍ତ୍ତା ସ ଭୂତାନାଂ ବ୍ରହ୍ମାଗ୍ରେ ସମବର୍ତ୍ତତ'ବୋଲି ଜାଣିବାରୁ ଏହି ଅଗ୍ନିବିଦ୍ୟାର ନାମ 'ତ୍ରିଣାଚିକେତାଗ୍ନି' ରହିଲା ।

ଏଠାରେ ଇଷ୍ଟକ କେବଳ ପୋଡ଼ାମାଟିର ଇଟା ନୁହେଁ । 'ଇଷ୍ ଇଚ୍ଛାୟାଂ' ଧାତୁରୁ ନିଷ୍ପନ୍ନ ଇଷ୍ଟ ହେଉଛନ୍ତି ଅଭୀଷ୍ଟ ଦେବତା । ଅଳ୍ପାର୍ଥକ 'କ'-ପ୍ରତ୍ୟୟ ଏହାର ସସୀମତା ଦ୍ୟୋତକ । ସସୀମ ଓ ସଗୁଣ ବା ସୋପାଧିକ ଉପାସନାରୁ ହିଁ ଅସୀମ ଓ ନିର୍ଗୁଣ ବା ନିରୁପାଧିକ ବ୍ରହ୍ମୋପଲବ୍ଧି ହୋଇଥାଏ । ପ୍ରତ୍ୟେକ ଇଚ୍ଛା ବା ଅଭିଳାଷକୁ ଈଶ୍ୱରାର୍ପଣ ବୁଦ୍ଧିରେ କଲେ କର୍ମବନ୍ଧନରୁ ମଣିଷ ମୁକ୍ତି ଲାଭ କରେ । ପୂର୍ବ ମୀମାଂସାର କର୍ମୋପାସନାର ସମୁଚ୍ଚୟ



Digitized by srujanika@gmail.com

ସାଧନ ଦୃଶ୍ୟମାନ ଅଗ୍ନିଦ୍ୱାରା ଯଜ୍ଞ କରି ଅପରବ୍ରହ୍ମ ସିଦ୍ଧି ପରେ ଉତ୍ତର ମୀମାଂସା ବା ବେଦାନ୍ତ ମାର୍ଗରେ ଅଦୃଷ୍ଟ ଅନ୍ତରାଗ୍ନି ଦ୍ୱାରା କୁଣ୍ଡଳିନୀ ଜାଗରଣ ପ୍ରକ୍ରିୟାରେ ଆତ୍ମାନୁଭୂତି ବା ପରବ୍ରହ୍ମୋପଲବ୍ଧି ହିଁ ଜୀବନର ସାର୍ଥକତା । ସେତେବେଳେ—

ଅନ୍ତର୍ନିରନ୍ତରମନିନ୍ଧନମେଧମାନେ ମୋହାନ୍ଧକାରପରିପନ୍ଥିନି ସଂବିଦଗ୍ନୌ ।

କସ୍ମିଂଶ୍ଚିଦଦ୍ଭୁତମରୀଚିବିକାଶଭୂମ୍ନି ବିଶ୍ୱଂ ଜୁହୋମି ବସୁଧାଦିଶିବାବସାନମ୍ ।।

ସାଧକର ଅନ୍ତଃକରଣରେ ଇନ୍ଧନ ବା ଜାଳେଣି ବିନା ସବୁବେଳେ ଅଧିକରୁ ଅଧିକତର ଜଳୁଥିବା ମୋହ ରୂପକ ଅନ୍ଧକାରର ବିନାଶକ ମାତୃକାଚକ୍ର ବିକସିତ ଦିବ୍ୟ ସଂବିଦଗ୍ନିରେ ପୃଥିବୀ ତତ୍ତ୍ୱଠାରୁ ଶିବତତ୍ତ୍ୱ ପର୍ଯ୍ୟନ୍ତ ଷଟ୍‌ତ୍ରିଂଶତ୍ ତତ୍ତ୍ୱାତ୍ମକ ବିଶ୍ୱକୁ ଆହୁତି ଦେବା ହିଁ ଅନ୍ତର୍ଯଜ୍ଞ ।

**ଶାକ୍ତାଦ୍ୱୈତ ଓ ଅନ୍ତର୍ଯଜ୍ଞ :**

ଶାକ୍ତକ୍ରମରେ ଷଟ୍‌ଚକ୍ରକୁ ଛ କୁଣ୍ଡ ରୂପେ ବର୍ଣ୍ଣନା କରାଯାଇଛି । ମୂଳାଧାରରେ କ୍ଷିତି, ସ୍ୱାଧିଷ୍ଠାନରେ ଅପ୍, ମଣିପୁରରେ ତେଜ, ଅନାହତରେ ମରୁତ୍, ବିଶୁଦ୍ଧିରେ ବ୍ୟୋମ ଏବଂ ଆଜ୍ଞା ଚକ୍ରରେ ଜୀବାତ୍ମାକୁ ଆହୁତି ଦିଆଯାଏ । ଫଳରେ ପଞ୍ଚତନ୍ମାତ୍ର ଓ ଏଥିରୁ ଉତ୍ପନ୍ନ ପଞ୍ଚଭୂତାତ୍ମକ ସ୍ଥୂଳ ଦେହ ପଞ୍ଚପ୍ରାଣ, ମନ, ବୁଦ୍ଧି, ଚିତ୍ତ, ଅହଂକାର ଓ ଜୀବାତ୍ମା— ଏହି ସକଳ 'ଇଦଂ' ପଦାର୍ଥକୁ ପୂର୍ଣ୍ଣାହଂତା ଶିବରେ ଆହୁତି ଦିଆହୁଏ । ଅର୍ଥାତ୍ ତତ୍-ପଦାର୍ଥ ଅହଂ-ଅଗ୍ନିରେ ସମସ୍ତ ତ୍ୱଂ ପଦାର୍ଥ ଇଦଂତାକୁ ନିବେଦନ କରି 'ତତ୍ତ୍ୱମସି' ମହାବାକ୍ୟ ଉପଲବ୍ଧି କରିବା ହେଉଛି ତନ୍ତ୍ରୋକ୍ତ ଭାବନାତ୍ମକ ଯଜ୍ଞର ପ୍ରଧାନ ଉଦ୍ଦେଶ୍ୟ । ଜୀବ ଦେହରେ ଶିବତ୍ୱାନୁଭବ ହେଉଛି ଆଗମୋକ୍ତ ସାରତତ୍ତ୍ୱ । ଆମ ଆଖିର ଦୃଷ୍ଟିଶକ୍ତି ବା ରୂପଜଗତ୍, ଆମ କାନର ଶ୍ରୁତିଶକ୍ତି ବା ଶବ୍ଦାକାଶ, ଆମ ଦେହରସ୍ପର୍ଶଶକ୍ତି, ଆମ ଜିହ୍ୱାର ରସବୋଧ ଶକ୍ତି ତଥା ଆମ ମନର ବିଚାର ଶକ୍ତି— ସବୁ ସେହି ଏକ ଶକ୍ତିର ସ୍ଫୁରଣ ବା ଲୀଳାବିଳାସ । ହୃଦୟ ପଦ୍ମରେ ସେହି ଅଗ୍ନି ଶକ୍ତିକୁ ବାୟୁବୀଜରେ ବୀଜନ କରି ଦୀପ୍ତ ରଖି ଏ ସବୁର ଦିବ୍ୟାନୁଭବରେ ହିଁ ତାଙ୍କର ସତ୍ତାନୁଭବ କରିବା ହେଉଛି ଯଥାର୍ଥ ଯଜ୍ଞ ବା ଅଗ୍ନିବିଦ୍ୟାର ଆଧ୍ୟାତ୍ମିକ ପ୍ରୟୋଗ ।

**ତୃତୀୟ ବର— ଆଧ୍ୟାତ୍ମିକ :**

ତା'ପରେ ତୃତୀୟ ବରରେ ଅଧ୍ୟାତ୍ମାନୁସନ୍ଧିତ୍ସୁ ନଚିକେତା ଜିଜ୍ଞାସା କଲେ— 'ମଣିଷ ମଲାପରେ ଆତ୍ମା ଯାଏ କୁଆଡେ ? କେହି କହନ୍ତି— ଶରୀର ନଷ୍ଟ ହୁଏ କିନ୍ତୁ ଆତ୍ମା ଅମର । ଆଉ କେହି କହନ୍ତି— ମଲାପରେ ସବୁ ଶେଷ । ଏଥିରୁ କେଉଁଟା ସତ ? ଆପଣଙ୍କ ପାଖରୁ ମୁଁ ଆତ୍ମତତ୍ତ୍ୱ ଜାଣିବାକୁ ଚାହେଁ ।'



Digitized by srujanika@gmail.com

**ନ ସାମ୍ପରାୟଃ ପ୍ରତିଭାତି ବାଳଂ– ବ୍ରହ୍ମବିଦ୍ୟା ଅବୋଧ ବାଳକ ପାଇଁ ନୁହେ :**

'ସଂପରାୟ' କହିଲେ 'ପରଲୋକ' । ଏହି ପରଲୋକ ସମ୍ବନ୍ଧୀୟ ଶାସ୍ତ୍ରୀୟ ସାଧନ ବିଶେଷ ହେଉଛି 'ସାମ୍ପାରାୟ' । ଏହାଦ୍ୱାରା ପରଲୋକଗତ ଆତ୍ମତତ୍ତ୍ୱ ଜଣାଯାଇଥାଏ । ମାତ୍ର ଆତ୍ମତତ୍ତ୍ୱର ଅଧିକାରୀ ହେବାପାଇଁ ବାଳକ ନଚିକେତାଙ୍କ ବୈରାଗ୍ୟ ଆସିଛି କି ନାହିଁ– ଜାଣିବା ପାଇଁ ଯମ ଲୋଭ ଦେଖାଇ କହିଲେ, 'ଆତ୍ମତତ୍ତ୍ୱ ସମ୍ବନ୍ଧରେ ଦେବତାମାନଙ୍କର ମଧ୍ୟ ସନ୍ଦେହ ରହିଛି । ଏ ସୂକ୍ଷ୍ମତତ୍ତ୍ୱ ଅତୀବ ଦୁରବଗାହ ଓ ଦୁରଧିଗମ୍ୟ । ତେଣୁ ଏହାକୁ ଛାଡ଼ି ତୁମେ ତୁମର ଶତାୟୁ ପୁତ୍ର-ପୌତ୍ର, ଦୀର୍ଘାୟୁଷ, ଧନସମ୍ପତ୍ତି, ଦିବ୍ୟଯୁବତୀ, ସାମ୍ରାଜ୍ୟସୁଖ ଓ ପ୍ରଭୁତ୍ୱ ସବୁକିଛି ମାଗ, ଯାହାକି ତୁମର ଉପକାରରେ ଆସିବ ଓ ସୁଖ ବି ଦେଇପାରିବ ।'

**ନିତ୍ୟାନିତ୍ୟବସ୍ତୁ ବିବେକ :**

ଏହା ଶୁଣି ନଚିକେତା କହିଲେ, 'ହେ ଅନ୍ତକ ! ଆପଣ ଯାହାସବୁ ଦେବାକୁ କହିଲେ, ସେ ସବୁ 'ଅଳିକ' ଆଜି ଅଛି ତ କାଲି ନାହିଁ । ଏ ସବୁର ଉପଭୋଗରେ ଇନ୍ଦ୍ରିୟ ଗଣ ଜୀର୍ଣ୍ଣ ହୋଇଯିବ । ଏ ଜୀବନ କ୍ଷଣସ୍ଥାୟୀ । ଅଶ୍ୱାଦିବାହନ ଆପଣଙ୍କର ହୋଇଥାଉ, ମୋର ପ୍ରୟୋଜନ ନାହିଁ । ଧନସମ୍ପତ୍ତି ସବୁଦିନ ରହିବ ନାହିଁ କି ମଣିଷକୁ ନିତ୍ୟସୁଖ ଦେଇପାରିବ ନାହିଁ। ଆପଣ ଏ ପଦରେ ଥିଲାଯାଏ ଆପଣଙ୍କ କୃପାରୁ ମୁଁ ଜୀବିତ ରହିପାରିବି ଓ ଏ ସବୁର ଅଭାବ କିଛି ହେବ ନାହିଁ । ଏଣୁ ଅନିତ୍ୟ ବସ୍ତୁକୁ ଛାଡି ଆପଣ ମତେ ନିତ୍ୟ ଆତ୍ମତତ୍ତ୍ୱ ବିଷୟରେ ହିଁ ଉପଦେଶ ଦିଅନ୍ତୁ ।

**ଶ୍ରେୟଃ ଓ ପ୍ରେୟଃ :**

ଏଥିରେ ସନ୍ତୁଷ୍ଟ ହୋଇ ଯମ କହିଲେ (କଠ ୧।୨।୬), ସଂସାରରେ ଦେଖାଯାଏ ଦୁଇଟି ବିଷୟ ; ଗୋଟିଏ ଶ୍ରେୟ ଅର୍ଥାତ୍ ଆତ୍ମକଲ୍ୟାଣକର ମାର୍ଗ ଓ ଅନ୍ୟଟି ପ୍ରେୟ ଅର୍ଥାତ୍ ପ୍ରିୟ ଭୋଗମାର୍ଗ । ମନ୍ଦବୁଦ୍ଧି ଲୋକ ସାଂସାରିକ ଯୋଗ (ବା ଅପ୍ରାପ୍ତ ପଦାର୍ଥର ପ୍ରାପ୍ତି)– କ୍ଷେମ (ପ୍ରାପ୍ତ ପଦାର୍ଥର ରକ୍ଷା)କୁ ଲକ୍ଷ୍ୟରେ ରଖି ସ୍ୱର୍ଗାଦି ସୁଖ ପର୍ଯ୍ୟନ୍ତ ପ୍ରେୟ ଚାହାନ୍ତି ଓ ଶ୍ରେୟସ୍କର ପରମାର୍ଥ ମାର୍ଗରୁ ବିଚ୍ୟୁତ ହୋଇଯାଆନ୍ତି । ଅବିଦ୍ୟା ବା ପ୍ରେୟର ସକଳ ମୋହକୁ ସର୍ବତୋଭାବେ ଜଳାଞ୍ଜଳି ଦେଇ ଶ୍ରେୟ ବା ବିଦ୍ୟାକୁ ବରଣ କରିଥିବାରୁ ନଚିକେତାଙ୍କୁ କଲ୍ୟାଣକର ଆତ୍ମବିଦ୍ୟା ଲାଭ ହେଲା । ଏଠାରେ କହି ରଖେ– ଦ୍ୱୈତ ଦୃଷ୍ଟିରେ ଯାହା ପ୍ରିୟ ତାହା ପ୍ରଶଂସନୀୟ ନ ହୋଇପାରେ ଏବଂ ଯାହା ପ୍ରଶଂସନୀୟ ତାହା ପ୍ରିୟ ହୋଇନପାରେ । ମାତ୍ର ଅଦ୍ୱୈତ ଦୃଷ୍ଟିରେ ସବୁ ପ୍ରିୟ ଓ ସବୁ ପ୍ରଶଂସନୀୟ ଅଟେ । ଗୀତା (୭।୨୬) ରେ କୁହାଯାଇଛି– 'ପ୍ରଶସ୍ତ କର୍ମଣି ତଥା ସଚ୍ଛବ୍ଦଃ ପାର୍ଥ ଯୁଜ୍ୟତେ' । ଏଣୁ ଏଠାରେ ନୈତିକ କର୍ମକୁ 'ଶ୍ରେୟ' ଏବଂ ଇହଲୌକିକ ଓ ପାରଲୌକିକ



Digitized by srujanika@gmail.com

ଅଭ୍ୟୁଦୟକୁ 'ପ୍ରେୟ' ବୋଲି ଗ୍ରହଣ କରାଯାଇପାରେ ।

**ଦୁର୍ବିଜ୍ଞେୟ ଆତ୍ମଜ୍ଞାନ (କଠ ୧।୨।୭-୮, ୨୪) :**

ଯାହାକୁ ଅନେକେ ଶୁଣିପାରନ୍ତି ନାହିଁ ବା ଶୁଣିଲେ ବି ଜାଣିପାରନ୍ତି ନାହିଁ, ସେହି ଆତ୍ମା ବିଷୟରେ ଯେଉଁ ଅଧ୍ୟାତ୍ମ କୁଶଳ ବା ତତ୍ତ୍ୱବିଦ୍ ଲୋକ (ଗୁରୁ) କିଛି ଜାଣନ୍ତି ଓ ସେ ବିଷୟରେ କିଛି କହନ୍ତି, ସେ ଜଣେ ଆଶ୍ଚର୍ଯ୍ୟବକ୍ତା ଏବଂ ଯେଉଁ ଜିଜ୍ଞାସୁ ନିପୁଣ ଲୋକ (ଶିଷ୍ୟ) ତାକୁ ଶୁଣିବାର ଯୋଗ୍ୟତା ଲାଭ କରନ୍ତି ସେ ଜଣେ ଆଶ୍ଚର୍ଯ୍ୟ ଶ୍ରୋତା କାରଣ ଅନେକ ଗୁରୁଙ୍କୁ ଶୁଣିବା ପାଇଁ ମଧ୍ୟ ଶ୍ରୋତା ଶିଷ୍ୟ ମିଳେ ନାହିଁ କି ଅନେକ ଶିଷ୍ୟ ଗୁରୁଙ୍କଠାରୁ ଶୁଣି ମଧ୍ୟ ସେହି ତତ୍ତ୍ୱ ଜାଣିପାରନ୍ତି ନାହିଁ (କଠ ୧।୨।୭) । କୌଣସି ନିକୃଷ୍ଟ ବ୍ୟକ୍ତିର ଉପଦେଶରୁ ତାକୁ ଭଲକରି ଜାଣିହୁଏ ନାହିଁ, କାରଣ ଲୋକେ ଏହାକୁ ନାନା ଭାବରେ ଚିନ୍ତା କରିଥାଆନ୍ତି (କଠ ୧।୨।୮) । ଏଣୁ ଅନ୍ୟ ଜଣେ (ଜ୍ଞାନୀ ଗୁରୁ) ଉପଦେଶ ନ ଦେଲେ ଏହି ସୂକ୍ଷ୍ମତତ୍ତ୍ୱକୁ ଜାଣି ହେବ ନାହିଁ । କାରଣ ଏହା ଅତର୍କ୍ୟ ଅଟେ (କଠ ୧।୨।୯) ।

**ଆତ୍ମା :**

'ଆତ୍ମା ଅତତେର୍ବାପ୍ତେର୍ବା' (ନିରୁକ୍ତ ୩।୧୫) ଅନୁସାରେ 'ଅତ ସାତତ୍ୟଗମନେ' ଧାତୁରୁ ବା 'ଆପ୍ ବ୍ୟାପ୍ତୌ' ଧାତୁରୁ ଆତ୍ମା ଶବ୍ଦଟି ନିଷ୍ପନ୍ନ ହୋଇଛି । ଏଣୁ ଆତ୍ମା ସର୍ବତ୍ର ବ୍ୟାପ୍ତ ଓ ସତତ ଗତିଶୀଳ । ଏହି ଆତ୍ମା ଜନ୍ମ ହୁଏନି, ମରେନି କି ସତ୍ତା ରୂପରେ ପ୍ରକାଶ ପାଏନି । ଏହା ଅଜ, ନିତ୍ୟ, ଶାଶ୍ୱତ, ପୁରାଣ (ପୁରୁଣା ହେଲେବି ନୂଆଁ), ମରଣଶୀଳ ଶରୀରରେ ଥାଇ ମଧ୍ୟ ଏହା ମରେ ନାହିଁ– ଅମର ଅଟେ (କଠ୧।୨।୧୮;ଗୀତା ୨।୨୦) । ଯଦି ମାରିବା ଲୋକ ମାରିବି ବୋଲି କିମ୍ୱା ମାଡ଼ ଖାଇବା ଲୋକ ମାଡ଼ ଖାଇଲି ବୋଲି ବୁଝନ୍ତି, ତେବେ ଉଭୟେ ଜାଣନ୍ତି ନାହିଁ ଯେ ଆତ୍ମା ମାରେ ନାହିଁ କି ମରେ ନାହିଁ (କଠ ୧।୨।୧୯; ଗୀତା ୨।୧୯) । ସୂକ୍ଷ୍ମଠାରୁ ଆହୁରି ସୂକ୍ଷ୍ମ ଏବଂ ମହାନ୍ ଠୁଁ ଆହୁରି ମହାନ୍ ଏହି ଆତ୍ମା ପ୍ରାଣୀମାନଙ୍କର ହୃଦୟଗୁହାରେ ଥାଏ । ଅନ୍ୟ ଭାବରେ କହିଲେ (ଧାତୁଃ ପ୍ରସାଦାତ୍) ବିଧାତା ବା ଈଶ୍ୱରଙ୍କ କୃପାରୁ (ଅକ୍ରତୁ) ନିଷ୍କାମ ଯଜ୍ଞକାରୀ ମନୁଷ୍ୟ ଆତ୍ମାର ମହିମାକୁ ଦେଖେ ଓ ବୀତଶୋକ ହୋଇଥାଏ । ଦୃଷ୍ଟ ଅଦୃଷ୍ଟ ସକଳ ବାହ୍ୟ ବିଷୟରୁ ଉପରତ କାମନାହୀନ ଶୋକରହିତ ଅକ୍ରତୁମାନବ ଧାତୁ (ଅର୍ଥାତ୍ ଶରୀରସ୍ଥିତ ସପ୍ତଧାତୁ ରସ, ରକ୍ତ, ମାଂସ, ମେଦ, ଅସ୍ଥି, ମଜ୍ଜା ଓ ବୀର୍ଯ୍ୟର ବିକ୍ଷୋଭ ହେତୁ ମନର ବିଭିନ୍ନ କାମବାସନା) ଶାନ୍ତିଦ୍ୱାରା ଏହି ଆତ୍ମାର ମହିମା ଦର୍ଶନରେ ସମର୍ଥ ହୋଇଥାଏ (କଠ ୧।୨।୨୦) । ଏଠାରେ ଶଙ୍କା ହୁଏ ଯେ ତେବେ ସୁଷୁପ୍ତି ଅବସ୍ଥାର କାମନାହୀନତା ଭିତରେ ଆତ୍ମଦର୍ଶନ ହୁଏ ନାହିଁ କାହିଁକି ? ଏଣୁ ଆଚାର୍ଯ୍ୟଶଙ୍କର ତାଙ୍କର ଭାଷ୍ୟରେ 'ଦର୍ଶନ-ଶ୍ରବଣ-ମନନ-ବିଜ୍ଞାନ-ଲିଙ୍ଗମାତ୍ମାନମ୍' ଉକ୍ତିରେ କହିଛନ୍ତି ଯେ, କୌଣସି ବସ୍ତୁର ଦର୍ଶନ,



Digitized by srujanika@gmail.com

ଶ୍ରବଣ, ମନନ ଓ ବିଜ୍ଞାନ ବା ନିଦିଧାସନ ପ୍ରଭୃତି ହେଲେ ତଦ୍ ତଦ୍ ଲିଙ୍ଗ (ଚିହ୍ନ) ବା ସାଧନ ଅନୁସାରେ ଆତ୍ମାକୁ ଜାଣିହୁଏ । ଏହି ଆତ୍ମା ଜ୍ଞାନ ସ୍ୱରୂପ । ଯେଉଁଠାରେ ଯେଉଁ ଜ୍ଞାନ ହୁଏ, ସେଠାରେ ସେହି ଜ୍ଞାନ ରୂପରେ ତା'ର ଧାରଣା ହୁଏ । ଅଣୁତ୍ୱର ଜ୍ଞାନ ହେଲେ ସେ ଅଣୁରୂପ ଏବଂ ମହତ୍ତ୍ୱଜ୍ଞାନ ହେଲେ ସେ (ଆତ୍ମା) ମହତ୍ ରୂପ ଅଟେ । ଏଣୁ କେଉଁଠି ଆତ୍ମାକୁ ଅଙ୍ଗୁଷ୍ଠ ପରିମାଣ ବାମନରୂପ ବୋଲି କୁହାଯାଇଛି ତ କେଉଁଠି ବିରାଟ ବିଶ୍ୱରୂପ ବୋଲି ଉଲ୍ଲେଖ କରାଯାଇଛି । ଏ ସବୁ ଧାରଣା ଧ୍ୟାନୋପଯୋଗୀ ହେଲେ ହେଁ ବସ୍ତୁତଃ ଏହାର ଯେଉଁ ଜ୍ଞାନ, ତାହାହିଁ ଆତ୍ମାର ଯଥାର୍ଥ ସ୍ୱରୂପ ।

ସେ ଦୂର ନିକଟ ସର୍ବତ୍ର ଯାତାୟାତ କରିପାରେ । ବସିକରି ଦୂରକୁ ଚାଲିଯାଏ ତ ଶୋଇକରି ସବୁଆଡ଼େ ଯାଇପାରେ । ଏହିପରି ମଦ ଓ ଅମଦରୁ ଊର୍ଦ୍ଧ୍ୱରେ ଥିବା ସେହି ଦେବଙ୍କୁ ମୋ ଛଡ଼ା ଆଉ କିଏ ବା ଜାଣିପାରିବ ? (କଠ ୧।୨।୨୧) କାରଣ ଆତ୍ମାର ଗମନାଗମନ ବା ମୃତ୍ୟୁଜୀବନ ବିଷୟଟି ଧର୍ମଦେବତା ଯମଙ୍କ ଅଧୀନ ।

ସେହି ଅଶରୀରୀ ଆତ୍ମା ନଶ୍ୱର ଶରୀରରେ ଅବସ୍ଥାନ କରିଥାଏ । ଆତ୍ମାର ଏହି ମହାନ୍ ବିଷ୍ଣୁ ସ୍ୱରୂପକୁ ଯେଉଁ ବୁଦ୍ଧିମାନ ଲୋକ ବୁଝିପାରେ ସେ ଶୋକ କରେ ନାହିଁ (କଠ ୧।୨।୨୨) ।

ସେହି ଆତ୍ମା ବେଦାଧ୍ୟୟନ ଦ୍ୱାରା, ମେଧା ଦ୍ୱାରା ବା ବହୁ ଶାସ୍ତ୍ର ଶ୍ରବଣଦ୍ୱାରା ଉପଲଭ୍ୟ ନୁହେଁ । ସେ ଯାହାକୁ ବରଣ କରେ ବା ବାଛେ, ତା'ର ନିକଟରେ ନିଜର ସ୍ୱରୂପକୁ ଅଭିବ୍ୟକ୍ତ କରେ (କଠ ୧।୨।୨୩) । ଏଣୁ ପରମ୍ପରା ବା ନିଜ ବୁଦ୍ଧିର ସାହାଯ୍ୟ ନେଇ ଆତ୍ମତତ୍ତ୍ୱ ଜାଣି ହେବ ନାହିଁ । ଯେତେବେଳେ ଯାଏଁ ସେ ନିଜକୁ ନିଜେ ପ୍ରକଟ କରେ ନାହିଁ, ସେତେବେଳେ ଯାଏଁ ତା'ର ଜ୍ଞାନ ଅସମ୍ଭବ ଅଟେ ଏବଂ ଯେତେବେଳେ ସେ କାହା ଆଗରେ କୃପା କରି ପ୍ରକଟ ହୁଏ, ସେତେବେଳେ ତା' (ଆତ୍ମସମ୍ବନ୍ଧୀୟ) ଜ୍ଞାନ ସରଳ ଓ ସହଜ ହୋଇଯାଏ । ଏହାକୁ ହିଁ ମା'ର କୃପା ବୋଲି ସଗୁଣ ସାଧକମାନେ କହିଥାଆନ୍ତି ।

ଯେଉଁ ପର୍ଯ୍ୟନ୍ତ ସାଧକ ନିଜେ ନିଜକୁ ତା'ର କୃପାପାତ୍ର କରି ଗଢେ ନାହିଁ, ସେ ଯାଏଁ ତା'କୃପା ପାଏ ନାହିଁ । ଦୁଶ୍ଚରିତ, ଅଶାନ୍ତ, ଅସମାହିତ ବ୍ୟକ୍ତି ନିଜ ବୁଦ୍ଧିରେ ତାକୁ ପାଇପାରେ ନାହିଁ ( କଠ ୧।୨।୨୪) ।

ପ୍ରଳୟବେଳେ ଯାହାର ବ୍ରହ୍ମ (ବ୍ରାହ୍ମଣ) ଓ କ୍ଷତ୍ର (ବା କ୍ଷତ୍ରିୟ) ଉଭୟ ଖାଦ୍ୟ ଅର୍ଥାତ୍ ଯାହା ନିକଟରେ ବ୍ରାହ୍ମଣ କ୍ଷତ୍ରିୟ କିଛି ଭେଦଭାବ ନାହିଁ ଏବଂ ମୃତ୍ୟୁ ଯାହାର ଉପସେଚନ (ଗୋଳାଇବା ପାଇଁ ଡାଲି ବା ପଖାଳ ପାଣି) ହୋଇ ସବୁକୁ ସିକ୍ତ କରି ସହାୟକ ହୋଇଥାଏ, ଯଥାର୍ଥ ସାଧନ ହୀନ ଆଉ କିଏ ବା ତାକୁ ଜାଣିପାରିବ ? (କଠ ୧।୨।୨୫) । ଏଣୁ ବ୍ରହ୍ମ ବା ଜ୍ଞାନ ଶକ୍ତି ଓ କ୍ଷତ୍ର ବା କ୍ରିୟା ଶକ୍ତି ସହ ମୃତ୍ୟୁର ମଧ୍ୟ ଯେ



Digitized by srujanika@gmail.com

ମୃତ୍ୟୁ– ତାକୁ ଜାଣିବା ପାଇଁ ପ୍ରବଳ ଇଚ୍ଛା ଶକ୍ତି ସହିତ ସାଧନା ଆବଶ୍ୟକ ।

**ଆତ୍ମାର ଅମୃତ ସ୍ୱରୂପ-ଉପଲବ୍ଧି :**

ଏହାକୁ ହିଁ ବୁଝାଇ ଉତ୍ତରାର୍ଦ୍ଧରେ ସ୍ପଷ୍ଟ କୁହାଯାଇଛି ଯେ, ଇନ୍ଦ୍ରିୟଗଣ ବହିର୍ମୁଖୀ ହୋଇଥିବାରୁ ଅନ୍ତରାତ୍ମାକୁ ଦର୍ଶନ କରି ପାରନ୍ତି ନାହିଁ । ଏଣୁ ଇନ୍ଦ୍ରିୟ ମାନଙ୍କୁ ଅନ୍ତର୍ମୁଖ କରି ପାରିଲେ ହିଁ ଆତ୍ମ ସ୍ୱରୂପର ଜ୍ଞାନ ହେବ । ପରମାତ୍ମାଙ୍କ ପ୍ରେରଣାରୁ ଜୀବ ଜାଗ୍ରତ୍-ଅବସ୍ଥାରେ ରୂପରସାଦି ଏବଂ ସ୍ୱପ୍ନାବସ୍ଥାରେ ମଧ୍ୟ ବିବିଧ ଦୃଶ୍ୟାଦି ଅବଗତ ହୋଇଥାଏ । ପରମାତ୍ମାଙ୍କ ଠାରୁ ପ୍ରଥମେ ହିରଣ୍ୟଗର୍ଭ ଉତ୍ପନ୍ନ ହୋଇଥିଲେ । ସୃଷ୍ଟିକାଳରେ ତାଙ୍କଠାରୁ ସୂର୍ଯ୍ୟ ଉଦୟ ହୁଅନ୍ତି ଏବଂ ପ୍ରଳୟ କାଳରେ ତାଙ୍କଠାରେ ହିଁ ଅସ୍ତମିତ ହୁଅନ୍ତି । ଇହ ଲୋକ ଓ ପରଲୋକରେ ଏକ ମାତ୍ର ଆତ୍ମ ଚୈତନ୍ୟ ହିଁ ବିଦ୍ୟମାନ ଥାଏ । ଯେଉଁ ବ୍ୟକ୍ତି ଚୈତନ୍ୟରେ ଭିନ୍ନତା ଦର୍ଶନ କରେ ସେ ବାରମ୍ବାର ଜନ୍ମ ମୃତ୍ୟୁର ଚକ୍ରରେ ପଡ଼ିଥାଏ । ଏକମାତ୍ର ବିଶୁଦ୍ଧ ଓ ନିଶ୍ଚଳ ମନ ଦ୍ୱାରା ହିଁ ମନ ଓ ଆତ୍ମାର ଏକତ୍ୱ ଅବଗତ ହୋଇଥାଏ । ଆତ୍ମଜ୍ଞାନ ଲାଭ ହେଲେ ବ୍ରହ୍ମଜ୍ଞ ଆତ୍ମା ହିଁ ବ୍ରହ୍ମସ୍ୱରୂପ ହୋଇଯାଏ ।

ଏକାଦଶଦ୍ୱାରଯୁକ୍ତ ଏହି ଦେହଟି ଆତ୍ମାର ଆବାସ ସ୍ଥାନ ବୋଲି ଜାଣିବା ଲୋକ ଆତ୍ମ ଚୈତନ୍ୟର ପୃଥକ୍ ଜ୍ଞାନ ଲାଭ ଦ୍ୱାରା ଶୋକମୁକ୍ତ ହୋଇ କୈବଲ୍ୟ ଲାଭ କରେ । ଆତ୍ମା ଜଳ, ସ୍ଥଳ, ଆକାଶ-ସର୍ବତ୍ର ବିଦ୍ୟମାନ । ପ୍ରାଣ ଓ ଇନ୍ଦ୍ରିୟାଦି ତାଙ୍କରି ପ୍ରେରଣାରେ କର୍ମ ମୁଖର ହୋଇ ଥାଆନ୍ତି । ଏହି ଆତ୍ମଜ୍ଞାନଲାଭ ନ କଲେ ଜୀବଗଣ ସ୍ଥାବର ଜଙ୍ଗମାଦି ନାନା ଦେହରେ ଜନ୍ମଗ୍ରହଣ କରିଥାଆନ୍ତି । ବିଭିନ୍ନ ଦେହରେ ଏକ ଆତ୍ମା ବିଦ୍ୟମାନ ରହିଛି । ଦେବ, ତିର୍ଯ୍ୟକ୍ , ମନୁଷ୍ୟାଦି ଦେହରେ ପ୍ରକାଶମାନ ସେହି ଏକ ଆତ୍ମାକୁ ଯେ ବୁଦ୍ଧିରେ ଜାଣିପାରେ ବା ମନ (ହୃଦୟ) ରେ ସାକ୍ଷାତ୍ ଦର୍ଶନ କରେ, ସେ ନିତ୍ୟ ସୁଖ ଓ ଶାନ୍ତି ଲାଭକରେ । ଚନ୍ଦ୍ରସୂର୍ଯ୍ୟଙ୍କ ଆଲୋକରେ ସେ ପ୍ରକାଶିତ ନୁହନ୍ତି କାରଣ ତାଙ୍କର ଚୈତନ୍ୟ ଜ୍ୟୋତିରେ ହିଁ ଏ ସକଳ ଜଗତ୍ ପ୍ରକାଶ ପାଉଛି । ନିର୍ମଳ ହୃଦୟରେ ହିଁ ଆତ୍ମାର ଅମୃତ ସ୍ୱରୂପ ଉପଲବ୍ଧି ହେବ ।

**ଜୀବ, ଈଶ୍ୱର ଓ ବ୍ରହ୍ମ :**

ମଣିଷର ଦେହ ହିଁ ଜୀବ ଓ ଶିବଙ୍କ ନିବାସସ୍ଥାନ । ଏଥିରୁ ଜୀବ କର୍ମଫଳ ଭୋଗ କରେ ଏବଂ ପରମାତ୍ମା ଶିବ କର୍ମଫଳ ଭୋଗ କରାଏ (ଋତଂ ପିବନ୍ତୌ ସୁକୃତସ୍ୟ ଲୋକେ– କଠ ୧।୩।୧) । ସ୍ୱୟଂ କୃତ କର୍ମ ହେଉଛି 'ସୁକୃତ' ଏବଂ 'ଋତଂ' ହେଉଛି ବିଶ୍ୱସଂଚାଳନର ଶାଶ୍ୱତ ନିୟମ । ଏଣୁ ଏଥିରେ କର୍ମଫଳ ଅବଶ୍ୟମ୍ଭାବି ଏବଂ ଏହାକୁ ଜୀବ ପାନ କରେ ଅର୍ଥାତ୍ 'ନିଶ୍ଚୟ ଭୋଗ କରେ' । ଅନନ୍ତ କର୍ମଫଳର ଭୋକ୍ତା ଜୀବ ମଧ୍ୟରେ ଥିବା ପରମାତ୍ମା ଶିବ ମଧ୍ୟ 'ଛତ୍ରିନ୍ୟାୟ'ରେ ପାନକର୍ତ୍ତା ବୋଲି କୁହାଯାଇଛି ।



Digitized by srujanika@gmail.com

ମାତ୍ର ଆତ୍ମା କର୍ତ୍ତା ନୁହେଁ କି ଭୋକ୍ତା ନୁହେଁ । ଅଥଚ ଅନେକ ସୁକୃତର ରସତମ ରସ ସତ୍ୟଧର୍ମ ହିଁ ଆତ୍ମା ଓ ପରମାତ୍ମାଙ୍କୁ ବଳପ୍ରଦାନ କରିଥାଏ । ଉକ୍ତ ସତ୍ୟଧର୍ମର ଉପାସକଙ୍କ ହୃଦୟ ବା ବୁଦ୍ଧିରୂପକ ଗୁହାରେ ସତତ ନିବାସୀ ଈଶ୍ୱର ପ୍ରତ୍ୟକ୍ଷ ହୋଇଥାନ୍ତି । ଜୀବ ଓ ଈଶ୍ୱର ଏକତ୍ର ବୁଦ୍ଧିଗୁହାରେ ଲୁକ୍କାୟିତ ଥାଆନ୍ତି– 'ଗୁହାଂ ପ୍ରବିଷ୍ଟୌ ପରମେ ପରାର୍ଦ୍ଧେ'– କିନ୍ତୁ ଦେଖାଯାଆନ୍ତି ନାହିଁ, କାରଣ ଆମର ଜ୍ଞାନର ପରିସୀମା ଭିତରେ ବୁଦ୍ଧିର ଅର୍ଦ୍ଧେକ ମାତ୍ର ଅର୍ଥାତ୍ ନିମ୍ନଭୌତିକ ସ୍ତରଭାଗ ହିଁ ଆସିଥାଏ । ମଣିଷ ତା' ଉପରକୁ ଯିବାକୁ ଚାହେଁ ନାହିଁ କି ସେପରି ଅଛି ଅଛି ବୋଲି ଜାଣେ ନାହିଁ । ସତ୍ୟ ସଂକଳ୍ପ ସାଧକ ହିଁ ସେହି ପରାର୍ଦ୍ଧ ବା ବୁଦ୍ଧିର ଉପର ଉଚ୍ଚ ଅଧ୍ୟାତ୍ମ ସ୍ତରରେ ପହଞ୍ଚି, ସେଠାରେ ଜୀବ ଓ ଈଶ୍ୱରଙ୍କୁ ଛାୟାଲୋକ ବା ପ୍ରତିବିମ୍ବ-ବିମ୍ବ ସଦୃଶ ଅନୁଭବ କରିବାରେ ସମର୍ଥ ହୁଅନ୍ତି । ଏ କଥା ବ୍ରହ୍ମଜ୍ଞ ଓ ପଞ୍ଚାଗ୍ନି (ଗାର୍ହପତ୍ୟ, ଦକ୍ଷିଣାଗ୍ନି, ଆହବନୀୟ, ସତ୍ୟ ଓ ଆବସଥ)ର ଉପାସକ ତ୍ରିଣାଚିକେତ ମଧ୍ୟ କହନ୍ତି (କଠ ୧।୩।୧) । ଏଠାରେ ପଞ୍ଚାଗ୍ନି ଅର୍ଥାତ୍ ପଞ୍ଚଜ୍ଞାନେନ୍ଦ୍ରିୟରେ ପଞ୍ଚ ବିଷୟର ନିରନ୍ତର ଆହୂତି ଦ୍ୱାରା ନାମରୂପକୁ ଏବଂ ତ୍ରିଣାଚିକେତ ଅର୍ଥାତ୍ ଜ୍ଞାନ, ଇଚ୍ଛା ଓ କ୍ରିୟା ଶକ୍ତି ଦ୍ୱାରା ପ୍ରତି ମୁହୂର୍ତ୍ତରେ ବାସନାବହ୍ନିକୁ ଜାଳି ହୃଦୟରେ ସଚ୍ଚିଦାନନ୍ଦତ୍ତ୍ୱର ଉପଲବ୍ଧି ବୋଲି ବୁଝିବାକୁ ହେବ ।

ସ୍ଥୂଳ ପଞ୍ଚେନ୍ଦ୍ରିୟଙ୍କ ଠାରୁ ସେମାନଙ୍କ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ସୂକ୍ଷ୍ମ ଅଟନ୍ତି । ଏହି ବିଷୟମାନଙ୍କଠାରୁ ସୂକ୍ଷ୍ମ ମନ, ମନଠାରୁ ସୂକ୍ଷ୍ମ ବୁଦ୍ଧି, ବୁଦ୍ଧିଠାରୁ ସୂକ୍ଷ୍ମ ମହତ୍ ଓ ମହତ୍‌ଠାରୁ ସୂକ୍ଷ୍ମ ଅବ୍ୟକ୍ତ ଓ ଅବ୍ୟକ୍ତ ଠାରୁ ସୂକ୍ଷ୍ମ ପୁରୁଷ ଅଟେ । ଏହି ପୁରୁଷ (ପୁରି ଶେତେ- ପୁରରେ ଯେ ଶୋଇଥାଏ) ହେଉଛି ସୂକ୍ଷ୍ମତାର ଅନ୍ତିମସୀମା ବା ପରାଗତି (କଠ ୧।୩।୧୦,୧୧) । ଏହି ପୁରୁଷ ସକଳ ପ୍ରାଣୀଙ୍କଠାରେ ଲୁକ୍କାୟିତ ଥାଏ ବୋଲି ଦେଖାଯାଏ ନାହିଁ– 'ନ ପ୍ରକାଶତେ'– ପ୍ରକାଶିତ ହୁଏ ନାହିଁ ସତ କିନ୍ତୁ ବୁଦ୍ଧିର ସୂକ୍ଷ୍ମାଗ୍ରଭାଗଦ୍ୱାରା ସୂକ୍ଷ୍ମଦର୍ଶୀମାନେ ଦେଖିଥାଆନ୍ତି (କଠ ୧।୩।୧୨) । ଏହି ସୂକ୍ଷ୍ମାଗ୍ର ବୁଦ୍ଧି ହେଉଛି ଯୋଗଶାସ୍ତ୍ର (୧।୪୮) ର ସମାଧିଜା ଋତମ୍ଭରା ପ୍ରଜ୍ଞା । ଶ୍ରୀମଦ୍ ଭାଗବତର କପିଳ-ଦେବହୂତି-ସଂବାଦରେ ଏହାକୁ ହିଁ ଯୋଗସାଧନ ଦ୍ୱାରା ପ୍ରବୃଦ୍ଧ ବୁଦ୍ଧି (ଭା. ୩।୨୫।୨୬) ବୋଲି କୁହାଯାଇଛି । କଠୋପନିଷଦ୍ (୧।୩।୧୩) ରେ ବୁଦ୍ଧିକୁ ବିଜ୍ଞାନାତ୍ମା ଓ ମହତ୍‌କୁ ମହାନାତ୍ମା କୁହାଯାଇଛି । ବ୍ରହ୍ମସୂତ୍ର (୧।୪।୧) ଭାଷ୍ୟରେ ମହାନାତ୍ମାକୁ ପ୍ରଥମଜ ହିରଣ୍ୟ ଗର୍ଭ ବୁଦ୍ଧି ବା ବୁଦ୍ଧିର ପରାପ୍ରତିଷ୍ଠା ବୋଲି ଆଚାର୍ଯ୍ୟ ଶଙ୍କର କହିଛନ୍ତି । ବୁଦ୍ଧି ଓ ମହତ୍ ସାଂଖ୍ୟ ମତରେ ପ୍ରକୃତିର ଅଙ୍ଗ ଅଟନ୍ତି । ଏଣୁ ଏହାଠାରୁ ଆତ୍ମତତ୍ତ୍ୱକୁ ପୃଥକ୍ କରି ପରମାତ୍ମତତ୍ତ୍ୱରେ ପହଞ୍ଚିବାକୁ ହେବ । ବୁଦ୍ଧିରେ ସ୍ଥିତ ବାହ୍ୟଜ୍ଞାନର ଜ୍ଞାତା ଆତ୍ମତତ୍ତ୍ୱ ଆତ୍ମସଂଯମ ଦ୍ୱାରା ସ୍ୱ-ସ୍ୱରୂପର ଜ୍ଞାନ ପ୍ରାପ୍ତ କରିଥାଏ । ଏହି ବୁଦ୍ଧିସ୍ଥିତ ବିଜ୍ଞାନାତ୍ମା ହେଉଛି ଜୀବ, ମହାନାତ୍ମା ହେଉଛନ୍ତି ଈଶ୍ୱର ଏବଂ ପରମପୁରୁଷ ହେଉଛନ୍ତି ଅକ୍ଷର ବ୍ରହ୍ମ ।

ଉପନିଷଦ୍ ଅନୁସାରେ ଏହି ଜଗତ୍‌ର ନିମିତ୍ତ ଓ ଉପାଦାନ କାରଣ ବ୍ରହ୍ମଠାରୁ



Digitized by srujanika@gmail.com

ସାଂଖ୍ୟର ପ୍ରଧାନ ବା ଅବ୍ୟକ୍ତ ବା ପ୍ରକୃତି ଅଲଗା ବା ସ୍ୱତନ୍ତ୍ର ନୁହନ୍ତି । ଏଣୁ ଅବ୍ୟକ୍ତଠାରୁ ଈଶ୍ୱରଙ୍କ ଇଚ୍ଛାଧୀନ ଉଦୟାସ୍ତକାରୀ ଶକ୍ତିର ପ୍ରଳୟାବସ୍ଥାକୁ ଅବ୍ୟକ୍ତ ଏବଂ ସୃଷ୍ଟି ସମୟରେ ହିରଣ୍ୟଗର୍ଭ ରୂପରେ ଏହାର ବ୍ୟକ୍ତଦଶାକୁ ମହାନାତ୍ମା ବା ମହାନ୍ କୁହାଯାଇଛି । ଏହାକୁ ହିଁ ଅନ୍ୟତ୍ର ପ୍ରାଣ ନାମରେ ଅଭିହିତ କରାଯାଇଛି । ସାଂଖ୍ୟର ମହତ୍ ସ୍ୱତନ୍ତ୍ର ଓ ବିଜାତୀୟ ତତ୍ତ୍ୱ ହେତୁ ବ୍ରହ୍ମରେ ଲୀନ ହୋଇପାରିବ ନାହିଁ । କିନ୍ତୁ ବ୍ରହ୍ମରୁ ଉପନିଷଦ୍‌ର ହରିଣ୍ୟଗର୍ଭ ମହାନାତ୍ମା ନିଃସୃତ ହୋଇଥିବାରୁ ପ୍ରଳୟ ସମୟରେ ସମଷ୍ଟି ରୂପରେ ସକଳ ଜୀବଙ୍କୁ ନିଜ ଗର୍ଭରେ ଧାରଣ କରି ସେ ବ୍ରହ୍ମରେ ଲୀନ ହୋଇଯାଏ । ଏଣୁ କୁହାଯାଇଛି– 'ଜ୍ଞାନମାତ୍ମନି ମହତି ନିୟଚ୍ଛେତ୍, ତଦ୍ ଯଚ୍ଛେତ୍ ଶାନ୍ତ ଆତ୍ମନି (କଠ ୧।୩।୧୩) ଓ 'ଯୋଗୋ ହି ପ୍ରଭବାପ୍ୟୟୌ' (କଠ ୨।୩।୧୧) ଅର୍ଥାତ୍ ଜ୍ଞାନାତ୍ମାକୁ ମହାନାତ୍ମା ଓ ତାକୁ ଶାନ୍ତ ଆତ୍ମା କରିବା ଆବଶ୍ୟକ, କାରଣ ଯୋଗ ହେଉଛି ପ୍ରଭବ ଓ ଅପ୍ୟୟ ବା ବିଲୀନୀକରଣ ।

**କଠ-ସାଧନାର ହୃଦୟ : ଯୋଗ–**

ବେଦରେ କୁହାଯାଇଛି, 'ଆଚାର୍ଯ୍ୟୋ ମୃତ୍ୟୁଃ' (ଅଥର୍ବ ୧୧।୫।୧୪) ଅର୍ଥାତ୍ ମୃତ୍ୟୁ ନିଜେ ଆଚାର୍ଯ୍ୟ । କଠୋପନିଷଦ୍‌ରେ ସଂଯମଶୀଳ ବୈବସ୍ୱତ ଯମ ନିଜେ ଗୁରୁ ବା ଆଚାର୍ଯ୍ୟ । ସେ ମୃତ୍ୟୁର ଦେବତା ଭାବରେ ହୃଦୟଗୁହାର ସବୁ କଥା ଜାଣନ୍ତି । ଶିଷ୍ୟ ନଚିକେତା ଉଦ୍ଦାଳକଙ୍କ ପୁତ୍ର ଭାବରେ ବ୍ରହ୍ମବିଦ୍ୟାର ଅଧିକାରୀ । କାରଣ 'ଉଦ୍' କହିଲେ ବ୍ରହ୍ମ (ତସ୍ୟ ଉଦ୍ ଇତି ନାମ) । ଚଲ୍ ଧାତୁରୁ ଚାଳକ ହେଲା ପରି 'ଦଳ' ବିଶରଣେ ଧାତୁରୁ 'ଦାଳକ' ଶବ୍ଦର ଅର୍ଥ ଶିଥିଳ । ଏଣୁ ସଂସାର ବନ୍ଧନର ଶିଥିଳୀକରଣ ରୂପକ ବ୍ରହ୍ମବିଦ୍ୟାର ସଂସ୍କାର ରହିଛି ନଚିକେତାଙ୍କଠାରେ । କାୟମନୋବାକ୍ୟରେ ଏହାକୁ ବୁଝିବା ପାଇଁ ସାଧନ ସମରରେ ଅବତୀର୍ଣ୍ଣ ରଥୀ ବା ପ୍ରତ୍ୟେକ ସାଧକ ନିଜର ଶରୀର ରୂପକ ରଥରେ ରହି ମନରୂପକ ଲଗାମକୁ ବୁଦ୍ଧିରୂପକ ସାରଥି ହାତରେ ଦେଇ ବିଷୟାବଳି ରୂପକ ଚରାଘାସ ପାଇଁ ନିତ୍ୟ ଲୋଲୁପ ଇନ୍ଦ୍ରିୟ ରୂପକ ଅଶ୍ୱମାନଙ୍କୁ ଆୟତ୍ତ କରିବାକୁ ହେବ । ଏଣୁ କଠୋପନିଷଦ୍ (୧।୩।୧୩) ର 'ଯଚ୍ଛେଦ୍ ବାଙ୍ମନସୀତି' କୁ ଆଚାର୍ଯ୍ୟ ଶଙ୍କର ବ୍ରହ୍ମସୂତ୍ର (୧।୪।୧) ଭାଷ୍ୟରେ ବ୍ୟାଖ୍ୟା କରି ଲେଖିଛନ୍ତି– 'ଶରୀର, ଇନ୍ଦ୍ରିୟ, ମନ ଓ ବୁଦ୍ଧି ବିଷୟକ ସଂବେଦନା ବା ସୁଖଦୁଃଖର ଅନୁଭବ ଜ୍ଞାନ ସହ ଯୁକ୍ତ ଅବିଦ୍ୟାରେ ପଡ଼ି ଭୋକ୍ତାର ଶରୀରାଦିରେ ରଥାଦି ରୂପକକଳ୍ପନା ଭିତରେ ସଂସାର ଓ ମୋକ୍ଷର ଗତି ନିରୂପଣ ଦ୍ୱାରା 'ପ୍ରତ୍ୟଗାତ୍ମବ୍ରହ୍ମର ପ୍ରାପ୍ତି କିପରି କର୍ତ୍ତବ୍ୟ' କୁହାଯାଇଛି । କଠୋପନିଷଦ୍ (୧।୩।୧୨) ରେ 'ଏଷ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନ ପ୍ରକାଶତେ'– ସର୍ବପ୍ରାଣିଙ୍କ ହୃଦୟ କନ୍ଦରରେ ଏହି ଆତ୍ମା ଗୂଢ଼ ହୋଇ ରହିଥିବାରୁ ପ୍ରକାଶ ପାଏ ନାହିଁ ସତ କିନ୍ତୁ ସୂକ୍ଷ୍ମଦର୍ଶୀ ମହର୍ଷି ନିଜ ଯୋଗଜ ବୁଦ୍ଧିର ସୂକ୍ଷ୍ମ ଅଗ୍ରଭାଗରେ ଏହି ଅଙ୍ଗୁଷ୍ଠ ପ୍ରମାଣ ପ୍ରାଣପୁରୁଷ ବ୍ରହ୍ମାତ୍ମାକୁ ଲକ୍ଷ୍ୟ ବା ଦର୍ଶନ କରିଥାଆନ୍ତି । ଏଣୁ ଏହାର ଉପଲବ୍ଧି ସକାଶେ ଯୋଗମାର୍ଗରେ ସାଧକ



Digitized by srujanika@gmail.com

ଚିତ୍ତବୃତ୍ତିର ନିରୋଧ ପୂର୍ବକ ବାଗାଦି ବାହ୍ୟେନ୍ଦ୍ରିୟ ବ୍ୟାପାର କଳାପ ତ୍ୟାଗ କରି ମନୋଲୟ ଦ୍ୱାରା 'ଆତ୍ମସଂସ୍ଥଂ ମନଃ କୃତ୍ୱା ନ କିଞ୍ଚିଦପି ଚିନ୍ତୟେତ୍'— କେବଳ ବ୍ରହ୍ମାନନ୍ଦାନୁଭବ ଛଡ଼ା ଆଉ କିଛି ଚିନ୍ତା କରନ୍ତି ନାହିଁ । ଏହାକୁ ହିଁ ହଠଯୋଗପ୍ରଦୀପିକା ମତରେ 'ଅପୁନର୍ବାସନୋତ୍ଥାନାଲ୍ଲୟୋ ବିଷୟବିସ୍ମୃତିଃ'— ବାସନାମାନଙ୍କ ପୁନରୁତ୍ଥାନାଭାବ ଓ ବିଷୟ ବିସ୍ମୃତି ହିଁ 'ଲୟ' ଯୋଗ ଅଟେ । ଏଥିପାଇଁ କଠ (୨।୩।୧୮) ର ଯୋଗ ବିଧିରେ 'ହୃଦା ମନୀଷା ମନସାଭିକ୍ଲୃପ୍ତ' (କଠ ୨।୩।୯) ହୋଇ ହୃଦୟର ଭକ୍ତି, ମନୀଷା ଅର୍ଥାତ୍ ବୁଦ୍ଧି ବା ଋତମ୍ଭରା ପ୍ରଜ୍ଞା ଓ ମନସା ବା ଏକାଗ୍ରଚିତ୍ତରେ ଦୃଢ ସଂକଳ୍ପର ସହିତ ମୃତ୍ୟୁକୁ ଭୟ ନ କରି ନଚିକେତା ପରି ଅନାହତ ସାଧନ ସମରରେ ଅବତୀର୍ଣ୍ଣ ହୋଇ 'ବ୍ରହ୍ମପ୍ରାପ୍ତୋ ବିରଜୋଽଭୂଦ୍ ବିମୃତ୍ୟୁଃ' (କଠ ୨।୩।୧୮) ନିର୍ମଳାନ୍ତଃକରଣରେ ଆତ୍ମଜ୍ଞାନ ବା ବ୍ରହ୍ମପ୍ରାପ୍ତି ଦ୍ୱାରା ମୃତ୍ୟୁକୁ ଜୟ କରି ଅମର ହେବାକୁ ହେବ ।

**ଅନୁବାଦ ସମ୍ବନ୍ଧରେ ପଦେ :**

ଓଡ଼ିଆରେ ଉପନିଷଦ୍‌ମାନଙ୍କର ଶୁଦ୍ଧ ଆକ୍ଷରିକ ଅନୁବାଦ କିମ୍ବା ଭାବବୋଧକ ହୃଦ୍ୟ ଅନୁବାଦ ନାହିଁ । ଗୋପବନ୍ଧୁଙ୍କ 'ବ୍ରହ୍ମତତ୍ତ୍ୱ ବା ନଚିକେତା— ଉପାଖ୍ୟାନ' ଏକ ସରଳ ସାବଲୀଳ ଅନୁବାଦ । କବି ସତ୍ୟାନନ୍ଦଙ୍କ ଅନୁବାଦ କିନ୍ତୁ ସରଳ ଓ ସାବଲୀଳତା ସହ ସମଗ୍ର ଭାରତୀୟ ଭାଷାମାନଙ୍କରେ ବୈଶିଷ୍ଟ୍ୟପୂର୍ଣ୍ଣ ଅନୁବାଦ ଅଟେ । ଏଥିରେ ମନ୍ତ୍ରମାନଙ୍କର ଅର୍ଥ ଓ ବ୍ୟାଖ୍ୟା ଉଭୟକୁ ଚଉଦ ଅକ୍ଷରୀ ବୃତ୍ତରେ ବହୁ ଉଦାହରଣ ଛଳରେ ଉପନିଷଦ୍‌ର ଗୂଢତତ୍ତ୍ୱାବଳିକୁ ଅତିପ୍ରାଞ୍ଜଳ ଭାଷାରେ ବୁଝାଇ ଦିଆଯାଇଛି । ଶ୍ରୀମଦ୍‌ଭାଗବତ ଉପରେ ଶ୍ରୀଧର ସ୍ୱାମୀଙ୍କ ବ୍ୟାଖ୍ୟାକୁ ଦୀନବନ୍ଧୁ ଖାଡ଼ଙ୍ଗା ନବାକ୍ଷରୀ ବୃତ୍ତରେ ଓଡ଼ିଆ ପଦ୍ୟରେ ଅନୁବାଦ କରିଥିଲେ । କବି ସତ୍ୟାନନ୍ଦ କିନ୍ତୁ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଭାଷ୍ୟକୁ ଅନୁବାଦ ନ କରି ଉପନିଷଦ୍‌ଟିର ଭାଷ୍ୟ, ବ୍ୟାଖ୍ୟା, ଟୀକା, ଟିପ୍ପଣୀ ଓ ବିଭିନ୍ନ ଭାଷାରେ ଉପଲବ୍ଧ ଆଲୋଚନାବଳୀକୁ ଅଧ୍ୟୟନ କରି ସେ ଗୁଡ଼ିକରେ ଥିବା ବେଦାନ୍ତର ସାରନିର୍ଯ୍ୟାସ ପାଠକମାନଙ୍କ ହୃଦୟକୁ ସ୍ପର୍ଶ କଲାଭଳି ଭାଷାରେ ପ୍ରକାଶ କରିଛନ୍ତି । ଗୀତା ତଥା ଈଶ ଓ କେନ ପରେ କଠୋପନିଷଦ୍‌ର କବି ସତ୍ୟାନନ୍ଦଙ୍କ ସତ୍ୟାନନ୍ଦଦାୟିନୀ ବ୍ୟାଖ୍ୟା ପାଠକମାନଙ୍କୁ ସତ୍ୟ ଓ ଆନନ୍ଦ ଦେଇ ତାଙ୍କ ପ୍ରତିଷ୍ଠାପିତ ବେଦାନ୍ତ ପ୍ରଚାର ପରିଷଦ୍‌ର ଆଭିମୁଖ୍ୟ ସାଧନରେ ଏକ ସାର୍ଥକ ସଫଳ ପ୍ରଚେଷ୍ଟା ହୋଇଥିବାରୁ ଓଡ଼ିଆ ପାଠକଙ୍କ ନିକଟରେ ଏହା ଆଦର ଲାଭ କରି ବହୁଜନ ହିତାୟ ହେବ ବୋଲି ଏହାର ବହୁଳ ପ୍ରସାର କାମନା କରୁଛି— ଓଁ ତତ୍‌ସତ୍

**ସତ୍ୟାନନ୍ଦକବେର୍ବ୍ୟାଖ୍ୟା ସତ୍ୟାନନ୍ଦପ୍ରଦାୟିନୀ ।**
**ସତ୍ୟାନନ୍ଦବତାଂ ଭୂୟାତ୍ ସତ୍ୟାନନ୍ଦସମୃଦ୍ଧୟେ ॥ ଇତି ଶମ୍**

ମକର ସଂକ୍ରାନ୍ତି ୫୦୯୮ କଳିଯୁଗାବ୍ଦ
ମାଘ କୃଷ୍ଣ ୨ୟା ୧୯୨୦ ଶକାବ୍ଦ
ତା ୧୪ ଜାନୁଆରୀ, ୧୯୯୮

**ଶ୍ରୀ ମହାମେଧାନନ୍ଦନାଥ ସରସ୍ୱତୀ**
**ଅଧ୍ୟକ୍ଷ**
ବେଦାନ୍ତ ପ୍ରଚାର ପରିଷଦ୍, ଭୁବନେଶ୍ୱର-୩୦



Digitized by srujanika@gmail.com

# ନିଜର ପଦେ

ଗୀତା ଓ ଶ୍ରୀରାମ ଚରିତ ମାନସ ଲେଖି ସାରିବା ପରେ ଉପନିଷଦ ପଢିଲି । ପଢିଲି ପ୍ରଥମେ ''ଈଶୋପନିଷଦ୍'' । ବହୁତ ଭଲ ଲାଗିଲା । ପାଇଲି ଅଶେଷ ଶାନ୍ତି ଓ ସନ୍ତୋଷ । କେବଳ ମୋ ନିଜ ସୁଖ ପାଇଁ (ସ୍ୱାନ୍ତଃସୁଖାୟ) ତାକୁ ମୋ ନିଜ ଭାଷାରେ ଲେଖି ପକାଇଥିଲି ୧୯୯୩ ମସିହାରେ । ସେଇଟି ପାଠକପାଠିକାଙ୍କ ପାଖରେ ବେଶ୍ ଆଦର ଲାଭ କଲା । ସେମାନଙ୍କ ପାଖରୁ ଯଥେଷ୍ଟ ପ୍ରେରଣା ମଧ୍ୟ ମିଳିଲା । ଏଥିରେ ଉତ୍ସାହିତ ହୋଇ ମୁଁ ପୁଣି ଲେଖିଲି ''କେନୋପନିଷଦ୍'' ୧୯୯୬ ରେ । ଏ ଉପନିଷଦଟି ମଧ୍ୟ ତଦନୁରୂପ ହେଲା । ତହିଁରୁ ଜନ୍ମ ନେଲା ''କଠୋପନିଷଦ'' । ଉପନିଷଦ୍ ଗ୍ରନ୍ଥମାଳାର ଏଇଟି ତୃତୀୟ ପୁଷ୍ପ । ଅପାର ପ୍ରଭୁକୃପା, ଗୁରୁକୃପା ସହ ଏ ଦେଶର ବହୁ ମହାତ୍ମାଙ୍କ ଆଶୀର୍ବାଦ ତଥା ମିତ୍ର ସୁହୃଦଙ୍କ ଶୁଭେଚ୍ଛାକୁ ସମ୍ବଳ କରି ଏ ଗ୍ରନ୍ଥଟି ଆମ୍ ପ୍ରକାଶ କରୁଛି ।

ଏଇ ଅବସରରେ ଈଶୋପନିଷଦ୍‌ରେ ମୋର ବକ୍ତବ୍ୟର କିଛି ଅଂଶକୁ ଏଠାରେ ପୁଣି ଥରେ ଉଲ୍ଲେଖ କରୁଛି । ''ଉପନିଷଦ୍ ତ ଅନନ୍ତ ଆକାଶ । ସେଠାରେ ମୁଁ ଏକ ଛୋଟିଆ ଚଢ଼େଇ ମାତ୍ର । ଛୋଟ ଛୋଟ ଦୁଇଟି ଡେଣା ନେଇ କେତେ ବାଟ ବା ଉଡ଼ି ପାରିବି ? ତଥାପି ଅନନ୍ତ ଆକାଶରେ ଉଡ଼ିବା ଆନନ୍ଦକୁ ଛୋଟ ଚଢ଼େଇଟି କ'ଣ ଏଡ଼େଇ ଦେଇପାରେ ?''

ମୋର ଗୁରୁଦେବ ସ୍ୱାମୀ ଚିଦାନନ୍ଦଜୀ ମହାରାଜ ଈଶୋପନିଷଦ୍ ପରି କଠୋପନିଷଦ୍ ପାଇଁ ତାଙ୍କର ଶୁଭାଶିଷ ଦେଇ ଏ ଅଧମ ଶିଷ୍ୟକୁ କୃତାର୍ଥ କରିଛନ୍ତି । ଏ ପରିଷଦ୍‌ର ଆଚାର୍ଯ୍ୟ ତଥା ଓଡ଼ିଶାର ବିଶିଷ୍ଟ ଶାସ୍ତ୍ରଜ୍ଞ ବିଦ୍ୱାନ୍ ଶ୍ରୀ ମହାମେଧାନନ୍ଦନାଥ ସରସ୍ୱତୀ କେନୋପନିଷଦ୍ ପରି ଏ ଗ୍ରନ୍ଥଟିର 'ଶ୍ରୀମୁଖ' ଲେଖିଥିବାରୁ ମୁଁ ତାଙ୍କୁ ମୋର କୃତଜ୍ଞତା ଜଣାଉଛି । ଏ ଦିଗରେ ପୂଜନୀୟ ଶ୍ରୀ ପ୍ରଶାନ୍ତ ବ୍ରହ୍ମଚାରୀ ମଧ୍ୟ ମୋତେ କୃତଜ୍ଞ କରିଛନ୍ତି । ଦିବ୍ୟଜୀବନ ସଂଘର ଓଡ଼ିଶା ଶାଖା ସଂପାଦକ ବନ୍ଧୁ ଶ୍ରୀ ଗଣେଶ୍ୱର ଦାଶଙ୍କୁ ତଥା କଟକ ଶିବା ଡି.ଟି.ପି. ସେଣ୍ଟରର ଶ୍ରୀମାନ୍ ଶୈଳେନ୍ଦ୍ର କୁମାର ଦାଶ ତଥା ଅନ୍ୟ କର୍ମକର୍ତ୍ତାମାନଙ୍କୁ ଏହାର ମୁଦ୍ରଣ ପାଇଁ ଆନ୍ତରିକ ଧନ୍ୟବାଦ ଦେଉଛି । ଗ୍ରନ୍ଥ ପାଣ୍ଡୁଲିପିରେ ଆବଶ୍ୟକୀୟ ପରିବର୍ତ୍ତନ ଓ ପରିବର୍ଦ୍ଧନ ପାଇଁ ପରାମର୍ଶ ଦେଇଥିବାରୁ ମୋର ଜ୍ୟେଷ୍ଠ ଜାମାତା ଇଂଜିନିୟର ଶ୍ରୀମାନ୍ ଗୋଲୋକ ବିହାରୀ ବରାଳଙ୍କୁ ଧନ୍ୟବାଦ ଜଣାଉଛି । ଗ୍ରନ୍ଥ ଲେଖା ଓ ପ୍ରକାଶନ ଦିଗରେ ମୋ' ପରିବାରର ସମସ୍ତ ସଭ୍ୟଙ୍କ ଅକୁଣ୍ଠ ସାହାଯ୍ୟ ଓ ସହଯୋଗକୁ ମୁଁ ଆଜି ସ୍ମରଣ କରୁଛି । ପୂର୍ବଦୁଇଟି ଉପନିଷଦ ପରି ଏ ଉପନିଷଦ୍‌ଟି ପାଠକ ପାଠିକା ମହଲରେ ଟିକିଏ ଆଦର ପାଇଲେ ନିଜକୁ ଧନ୍ୟ ମନେ କରିବି ।

***ସତ୍ୟାନନ୍ଦ ଚମ୍ପତିରାୟ***



Digitized by srujanika@gmail.com

# ସୂଚୀପତ୍ର







Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

## ପ୍ରଥମ ବଲ୍ଲୀ

**ଉଦ୍ଦାଳକଙ୍କ ଦାନ :**

**ଓଁ ଉଶନ୍ ହ ବୈ ବାଜଶ୍ରବସଃ ସର୍ବବେଦସଂ ଦଦୌ ।**
**ତସ୍ୟ ହ ନଚିକେତା ନାମ ପୁତ୍ର ଆସ ॥ ୧ ॥**

ପୂର୍ବେ ଥିଲେ ଉଦ୍ଦାଳକ ନାମେ ଋଷିବର
ବାଜଶ୍ରବା-ପୁତ୍ର, ଗୋତ୍ର ଗୌତମ ତାଙ୍କର ।
ସେ କରିଲେ ବିଶ୍ୱଜିତ ଯଜ୍ଞ ଯଶ ପାଇଁ
ଯେ ଯଜ୍ଞେ ସର୍ବସ୍ୱ ଦାନ କରାଯାଇ ଥାଇ ।
ଆଉ ଶୁଣାଯାଏ ପୁଣି ସେହି ଋଷିଙ୍କର
ନଚିକେତା ନାମେ ଥିଲା ବାଳୁତ କୁମର ॥ ୧ ॥

କଥା କାହାଣୀର ଛଳେ କଠୋପନିଷଦ
ଯମ ମୁଖେ ବ୍ରହ୍ମଜ୍ଞାନ ବଡ଼ ପ୍ରୀତିପ୍ରଦ ।
କରିବାକୁ ଏ ତତ୍ତ୍ୱକୁ ମନୋଜ୍ଞ ମଞ୍ଜୁଳ,
ନଚିକେତା ଉପାଖ୍ୟାନ ଅଶେଷ ଅତୁଳ ।

ଏହି ''ନଚିକେତା'' ନାମ ସାର୍ଥକ ଏ ସ୍ଥଳେ,
ଜାଗଇ ଜାଣିବା ଇଚ୍ଛା ଯାର ବୁକୁ ତଳେ ।
ସେହିପରି ''ବାଜଶ୍ରବା'' ଶବ୍ଦ ଏ ଶ୍ଳୋକରେ
ପାଠକ ମନରେ ଗୂଢ଼ ଭାବ ଜାତ କରେ ।
'ବାଜ' ଅର୍ଥ ଅନ୍ନ, ଆଉ ''ଶ୍ରବ'' ଅର୍ଥ ଯଶଃ
ଅନ୍ନଦାନେ ଯେ ଲଭନ୍ତି ଜୀବନେ ସୁଯଶଃ ।
କିନ୍ତୁ ଏଠି ବାଜଶ୍ରବା ମହର୍ଷିଙ୍କ ନାମ
ଋଷିଙ୍କ ଭିତରେ ଥିଲା ତାଙ୍କରି ସୁନାମ ।
ତାଙ୍କ ପୁତ୍ର ଗଉତମ ଯଶଃ ଆଶା କରି
କଲେ ବିଶ୍ୱଜିତ ଯଜ୍ଞ ବିଧି ଅନୁସରି ।

Digitized by srujanika@gmail.com

ଏ ଯଜ୍ଞ ନିୟମ ବେଦ ଶାସ୍ତ୍ରର ବିଧାନ,
ଯଜମାନ କରିଦେବେ ସର୍ବସ୍ୱ ପ୍ରଦାନ ।

**ତଂ ହ କୁମାରଂ ସନ୍ତଂ ଦକ୍ଷିଣାସୁ**
**ନୀୟମାନାସୁ ଶ୍ରଦ୍ଧାବିବେଶ, ସୋଽମନ୍ୟତ ॥ ୨ ॥**

ଦକ୍ଷିଣା ଦେବାକୁ ଯଜ୍ଞ-ପୁରୋହିତ ଗଣେ,
ଯଜ୍ଞ ସ୍ଥଳେ ଅଣାଗଲେ ଯେପରି ଗୋଧନେ,
ଦେଖି ତାହା ନଚିକେତା ସରଳ ବିନୀତ
ପିତା ପ୍ରତି ଶ୍ରଦ୍ଧା ହୃଦେ ହୋଇଲା ଉଦିତ ।
ଶ୍ରଦ୍ଧାବେଶେ କଲେ ଚିନ୍ତା ସେହି ମନେ ମନେ,
ପିତାଙ୍କ ମଙ୍ଗଳ ଏଥି ହୋଇବ କେସନେ ? ॥ ୨ ॥

ଯଜ୍ଞ କର୍ମ ଅନୁଷ୍ଠାନ ଶେଷେ ଯଜମାନ
ଋତ୍ୱିକେ ଓ ପୁରୋହିତେ କରିଥାନ୍ତି ଦାନ ।
ବିନା ଦାନେ ଯଜ୍ଞ କର୍ମ ନୁହେଁ ସୁସମ୍ପନ୍ନ
ଯଜମାନ ନ କରନ୍ତି ସୁଫଳ ଅର୍ଜନ ।
ତେଣୁ ଗଉତମ ଯଜ୍ଞ ଶେଷେ ଦାନ ପାଇଁ
ଯଜ୍ଞ ପୀଠେ ଧେନୁ ପଲ ଆଣିଲେ ମଗାଇ ।
ଯଜ୍ଞର ଦକ୍ଷିଣା ରୂପେ ଭୂମି ଧେନୁ ବିତ୍ତ
ସେତେବେଳେ ଦିଆ ଯାଉଥିଲା ଅପ୍ରମିତ ।
ଦାନ ପାଇଁ କେତେ ବୁଢ଼ୀ ଅକର୍ମଣ୍ୟ ଗାଈ
ଅଣା ହେବା ଦେଖି ଋଷିପୁତ୍ର ଦୁଃଖ ପାଇ,
ଭାବନ୍ତି ଏମିତି ଦାନେ ମୋର ପିତାଙ୍କର
କେବେହେଲେ ମନୋବାଞ୍ଛା ନୋହିବ ସଫଳ ।
ଶ୍ରଦ୍ଧାରେ କୁମାର ଚିତ୍ତ ହେଲା ବିଗଳିତ
ବହୁ ଚିନ୍ତା ଭାବନାରେ ହେଲେ ନିମଜ୍ଜିତ ।

ଦକ୍ଷିଣା ସ୍ୱରୂପେ ମଡ଼ା ହଡ଼ା ବୁଢ଼ୀ ଗାଈ
ପ୍ରକୃତ ଦାନରେ କେବେ ଗଣା ହୁଏ ନାହିଁ ।
ନ ହୁଅଇ ଯେବେ ଶାସ୍ତ୍ର ସମ୍ମତ ଏ ଦାନ
ତେବେ କିଆଁ କରାଯିବ ଯଜ୍ଞ ଅନୁଷ୍ଠାନ ?

Digitized by srujanika@gmail.com

ତେଣୁ ପିତାଙ୍କର ହେବ ଅଧୋଗତି ସାର,
ନଚିକେତା ମନେ ଚିନ୍ତା ଜାଗେ ବାରବାର ।

## ନଚିକେତା ମନରେ ଆଶଙ୍କା

**ପୀତୋଦକା ଜଗ୍ଧତୃଣା ଦୁଗ୍ଧଦୋହା ନିରିନ୍ଦ୍ରିୟାଃ ।**
**ଅନନ୍ଦା ନାମ ତେ ଲୋକାସ୍ତାନ୍ ସ ଗଚ୍ଛତି ତା ଦଦତ୍ ॥୩॥**

ଯେଉଁ ଗାଈ ସବୁ ପିଇ ସାରିଛନ୍ତି ଜଳ
ଆଉ ଜଳ ପିଇବାକୁ ଦେହେ ନାହିଁ ବଳ,
ଯେଉଁ ଗାଈସବୁ ଘାସ ଚରି ସାରିଛନ୍ତି
ଆଉ ଘାସ ଚରିବାକୁ ସମର୍ଥ ନୁହନ୍ତି,
ଯେଉଁ ଗାଈ ସବୁ ଦୁଧ ଦେଇ ସାରିଛନ୍ତି
ଆଉ ଦୁଧ ଦେବା ପାଇଁ ନ ଅଛି ଶକତି,
ଯାହାଙ୍କ ଇନ୍ଦ୍ରିୟେ ସବୁ ହେଲେଣି ଦୁର୍ବଳ
ଆଉ ଫଳ ଦେବା ପାଇଁ ଦେହେ ନାହିଁ ବଳ,
ସେପରି ଗାଈଙ୍କୁ ଯଜ୍ଞେ କରାଗଲେ ଦାନ
ମୃତ୍ୟୁରେ ''ଅନନ୍ଦ ଲୋକେ'' ଯାଏ ଯଜମାନ ॥୩॥

ଯଜ୍ଞର ଦକ୍ଷିଣା ପାଇଁ ଯେଉଁ ଧେନୁପଳ
ଅଣାଗଲେ, ସେହି ସବୁ ବୃଦ୍ଧା ଓ ଦୁର୍ବଳ ।
ଜଳପାନେ ଦୁଗ୍ଧଦାନେ କି ତୃଣ ଭକ୍ଷଣେ
ନ ଥିଲା ଶକତି ତାଙ୍କ ଦେହେ କଦାଚନେ ।
ସକଳ ଇନ୍ଦ୍ରିୟ ବଳ ପ୍ରଜନନ ଶକ୍ତି
ଲୋପ ପାଇ ଦିଶୁ ଥିଲେ ସର୍ବେ କ୍ଷୀଣା ଅତି ।
ଧୋତରୀ ଧୋକଡ଼ି ହଡ଼ି ବୁଢ଼ୀ ଅକର୍ମଣ୍ୟ
ଗାଈ ଦାନ କଲେ ପୁଣ୍ୟ ମିଳିବ କେସନ ?
ତାଙ୍କୁ ଦେଖି ନଚିକେତା ଚିନ୍ତା କଲେ ମନେ
ଏପରି ଅଶାସ୍ତ୍ର ବିଧି ହୁଅଇ କେସନେ ?

'ଏ ଦାନେ ସରଗ ସୁଖ ନ ହେବ ପ୍ରାପତ
ବରଂ ଦୁଃଖଲୋକକୁ ଏ ଫିଟାଇବ ପଥ ।

Digitized by srujanika@gmail.com

ଶାସ୍ତ୍ର ପ୍ରତିକୂଳ ଆଉ ଶ୍ରଦ୍ଧାହୀନ ଦାନ
ନରକ ଭୋଗକୁ ହୁଏ ନିଶ୍ଚିତ ସୋପାନ ।’

କହନ୍ତି ହୃଦର ଭାବ ଘେନନ୍ତି ଦେବତା
କି ଦେଇ ନ ଦେଇ ସିଏ ନ ଖେଳାନ୍ତି ମଥା ।
କିନ୍ତୁ ଯେ ଦିଅଇ ସେହି ନିଜେ ତ ଜାଣଇ
କେତେ ଶ୍ରଦ୍ଧା ଅନୁରାଗ ତା’ର ଅଛି ରହି ।
ଝିଅର ଘରକୁ ବାପା ଭାର ପଠାଇଲେ
ଭଲ ଭଲ ଦରବ ତ ଖଞ୍ଜଇ ତହିଁରେ ।
ଦେବତା ପାଇଁକି କିନ୍ତୁ ବାସି ପଚା ସଢ଼ା
ଭକତିର ଭେଳିକିରେ ହେଉଅଛି ବଢ଼ା ।

## ପିତା ପୁତ୍ରଙ୍କ ପ୍ରଶ୍ନୋତ୍ତର

ସ ହୋବାଚ ପିତରଂ, ତତ କସ୍ମୈ ମାଂ ଦାସ୍ୟସୀତି ।
ଦ୍ୱିତୀୟଂ ତୃତୀୟଂ, ତଂ ହୋବାଚ ମୃତ୍ୟବେ ତ୍ୱା ଦଦାମୀତି ॥ ୪ ॥

ନଚିକେତା ପଚାରିଲେ, “ହେ ପିତା ଆପଣ,
ମୋତେ ଏବେ କରୁଛନ୍ତି କାହାକୁ ଅର୍ପଣ ?”
ଏପରି ଦ୍ୱିତୀୟ ବାର ତୃତୀୟ ଯେ ବାର
ପଚାରିଲେ ନଚିକେତା ଏକାଧିକ ବାର ।
ପିତା ରାଗି ଯାଇ ତହୁଁ କହିଲେ ପୁତ୍ରକୁ,
“ଆରେ ତୋତେ ଦେଉଛି ମୁଁ ସେ କାଳ ଯମକୁ ।”

ପିତାଙ୍କ ଅନିଷ୍ଟ କେମ୍ନେ ହେବ ନିବାରଣ
ମୁଁ ତାଙ୍କର ପୁତ୍ର, ମୋର କର୍ତ୍ତବ୍ୟ କଅଣ ?
ଯଜ୍ଞର ପୂର୍ଣ୍ଣତା ପାଇଁ କି ହେବା ଉଚିତ
ଭାବି ନଚିକେତା ଚିତ୍ତ ହେଲା ଆକୁଳିତ ।
ଫଳକାମୀ ପିତା ମୋର ବହି ଅନୁରାଗ
ଅନୁଷ୍ଠାନ କରିଛନ୍ତି ବିଶ୍ୱଜିତ ଯାଗ ।
ଏ ଯାଗେ ସର୍ବସ୍ୱ ଦାନ ହୁଏ ପ୍ରୟୋଜନ
ପିତାଙ୍କ ସମ୍ପତ୍ତି ମୁହିଁ ତାଙ୍କ ପ୍ରିୟଧନ ।

Digitized by srujanika@gmail.com

ତେଣୁ ପିତା ମୋତେ ଦାନ କରିବା ଉଚିତ
ଯଜ୍ଞର ପୂର୍ଣ୍ଣତା ତେବେ ହୋଇବ ନିଶ୍ଚିତ ।
ପ୍ରାଣ ବିନିମୟେ ହେଲେ ପିତାଙ୍କ ମଙ୍ଗଳ
ତେବେ ପୁତ୍ର ଜନ୍ମ ମୋର ହୋଇବ ସଫଳ ।

ଏହିପରି ବହୁ ଚିନ୍ତା କରି ମନେ ମନେ,
ସାଇତି ବୁକୁର ବ୍ୟଥା ହୃଦେ ସଂଗୋପନେ,
ପଚାରିଲେ ପିତାଙ୍କୁ ସେ, "ହେ ପିତା ଆପଣ
କେଉଁ ଋତ୍ୱିକଙ୍କୁ ମୋତେ କରିବେ ଅର୍ପଣ ?"
ପ୍ରଥମେ ଏ ପ୍ରଶ୍ନେ ପିତା ଦେଲେ ନାହିଁ ମନ,
ପୁତ୍ର ବାରବାର ତାହା କଲେ ଉତ୍ଥାପନ ।
ପିତା ରାଗି ମାଗି ତହୁଁ କହିଲେ ପୁଅକୁ
"ଆରେ ତୋତେ ଦେଉଛି ମୁଁ ସେ କାଳଯମକୁ ।"

ବେଳେବେଳେ ପିତାମାତା ରାଗିଯାଇ ଅତି
"ମରି ଯା' ତୁ" ବୋଲି ନିଜ ପିଲାଙ୍କୁ କହନ୍ତି ।
ଅବଶ୍ୟ ତା' ବିରକ୍ତିରେ ମୁଖର ବଚନ
ସେ ଚାହିଁ ନ ଥାନ୍ତି କେବେ ସତରେ ମରଣ ।
ନଚିକେତା ପିତା ଏଠି କହିଲେ ତେସନେ;
ତାହା ମଧ ବୁଝିଥିଲେ ନଚିକେତା ମନେ ।
ତଥାପି ପିତାଙ୍କ ବାକ୍ୟ ହୋଇବ କି ଆନ
ଭାବି ଭାବି ହଜିଗଲା ତାଙ୍କ ବୁଦ୍ଧି ଜ୍ଞାନ ।
ଭାବିଲେ "ମୁଁ କିଛି ମନ୍ଦ କର୍ମ କରିନାହିଁ,
ତେବେ ସେ ଯମକୁ ମୋତେ ଦିଅନ୍ତି କିମ୍ପାଇଁ ?"

**ବହୂନାମେମି ପ୍ରଥମୋ ବହୂନାମେମି ମଧ୍ୟମଃ ।**
**କିଂ ସ୍ୱିଦ୍ ଯମସ୍ୟ କର୍ତ୍ତବ୍ୟଂ ଯନ୍ମୟାଽଦ୍ୟ କରିଷ୍ୟତି ॥୫॥**

ପିତାଙ୍କର ଏହିପରି ବଚନ ଶ୍ରବଣେ
ନଚିକେତା ବହୁ ଚିନ୍ତା କଲେ ମନେ ମନେ ।
ବହୁଙ୍କ ଭିତରେ ମୁହିଁ ଅଟଇ ପ୍ରଥମ
ବହୁଙ୍କ ମଧରେ ପୁଣି ମୋ ସ୍ଥାନ ମଧ୍ୟମ ।

Digitized by srujanika@gmail.com

କିବା କରଣୀୟ ଅଛି ଯମଙ୍କ ଏପରି
ପିତା ମୋତେ ଦେଇ ଯାହା, ସେ ପାରିବେ କରି ॥୫॥

ଯମାଳୟେ ଯିବା ପାଇଁ ପିତାଙ୍କ ଆଦେଶ
ଶୁଣି ନଚିକେତା ହେଲେ ବିସ୍ମିତ ଅଶେଷ ।
ଭାବିଲେ ସେ, ପିତା ନିଶ୍ଚେ ମନେ ରୋଷ ବହି
ଏପରି ବଚନ ସିନା ମୋତେ' ଛନ୍ତି କହି ।
ସେ ରୋଷ କାରଣ କ'ଣ ଜାଣିବି କେମନେ ?
ତେବେ ଏହା ସ୍ୱାଭାବିକ ଏ ମର୍ତ୍ତ୍ୟ ଭୁବନେ –
ଅଯୋଗ୍ୟ ଅବାଧ୍ୟ ଆଉ ଶିଷ୍ଟାଚାରହୀନ
ପୁତ୍ରେ, ଶିଷ୍ୟେ ପିତା, ଗୁରୁ ହୁଅନ୍ତି କଠିନ ।
କିନ୍ତୁ ପିତାଙ୍କର ବହୁ ପୁତ୍ର, ଶିଷ୍ୟ ମେଳେ
ପ୍ରଥମ ମଧ୍ୟମ ଅଟେ – ନୁହଁ କେତେବେଳେ
ଅଧମ ଅଶିଷ୍ଟ ମୂର୍ଖ ଅବାଧ୍ୟ ସନ୍ତାନ
ତେବେ ସେ ଯମକୁ କିଆଁ କରନ୍ତି ପ୍ରଦାନ !
ମୋତେ ଦେଇ ଯମଙ୍କର କି କାର୍ଯ୍ୟ ହୋଇବ ?
ଏହା ନିଶ୍ଚେ ତାଙ୍କ କୋପ ବାକ୍ୟ ହୋଇଥିବ ।

ପୁତ୍ର ବା ଶିଷ୍ୟର ସେବା ସୁକର୍ମ ଭିତ୍ତିରେ
ଶାସ୍ତ୍ରମତେ ବିଭାଜିତ ତିନୋଟି ଶ୍ରେଣୀରେ ।
ଉତ୍ତମ ମଧ୍ୟମ ଆଉ ଅଧମ ଏପରି
ଗୃହାଶ୍ରମେ ପିତା, ଗୁରୁ ଥିଲେ ଭାଗ କରି ।
ଯିଏ ପିତା, ଗୁରୁଙ୍କର ଜାଣି ମନ କଥା
କହିବା ପୂର୍ବରୁ କର୍ମ କରନ୍ତି ସର୍ବଥା,
ଉତ୍ତମ ଶ୍ରେଣୀରେ ସେହି ଗଣା ପରିଶେଷେ,
ମଧ୍ୟମ ଅପେକ୍ଷା ରଖେ ଗୁରୁଙ୍କ ଆଦେଶେ ।
ଆଜ୍ଞା ପାଇ ମଧ୍ୟ କିଛି ନ କରେ ଅଧମ
ସେ କର୍ମ କରଇ ସଦା ସ୍ୱେଚ୍ଛାଚାରୀ ସମ ।

**ଅନୁପଶ୍ୟ ଯଥା ପୂର୍ବେ ପ୍ରତିପଶ୍ୟ ତଥାଽପରେ ।**
**ସସ୍ୟମିବ ମର୍ତ୍ତ୍ୟଃ ପଚ୍ୟତେ ସସ୍ୟମିବାଜାୟତେ ପୁନଃ ॥୬॥**

Digitized by srujanika@gmail.com

ନଚିକେତା ଏହିପରି ମନେ କରି ଚିନ୍ତା
ପିତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ହେ ପିତା,
ତବ ପିତା ପିତାମହ ପୂର୍ବ ବଂଶଧରେ
ଭାବିଲ, ଯେପରି ସର୍ବେ ଆଚରଣ କଲେ।
ବର୍ତ୍ତମାନ କାଳେ ପୁଣି ସାଧୁ ସନ୍ତ ଜନେ
କରନ୍ତି ଯେ ଆଚରଣ ବିଚାର ତ ମନେ।
ମଣିଷ ମରଣଶୀଳ ଜାଣ ଶସ୍ୟ ପରି
ଜୀର୍ଣ୍ଣ ହୋଇ ଯଥାକାଳେ ଯାଇଥାଏ ମରି।
ପୁଣି ଶସ୍ୟ ପରି ସିଏ ହୁଅଇ ଉତ୍ପନ୍ନ
ତେଣୁ ମୋ ସକାଶେ ଦୁଃଖ କର ନାହିଁ ମନ" ॥୬॥

ଯମଙ୍କୁ ଦେବାକୁ ସିନା କହିଦେଲେ ପିତା,
ପରେ ପ୍ରକୃତିସ୍ଥ ହୋଇ ପୁଣି କରି ଚିନ୍ତା,
କାଳେ ତାଙ୍କୁ ଦେବେ ନାହିଁ ଯିବା ଅନୁମତି
ସେଥିପାଇଁ ନଚିକେତା ଏଠି କହୁଛନ୍ତି–
"ଯମଙ୍କୁ ଦେବାକୁ ମୋତେ କହି ଏ ବଚନ
ସତ୍ୟ ରକ୍ଷା କର ପିତା, ନ କର ଲଂଘନ।
ସତ୍ୟ ପାଇଁ ମୋର ଯମ ପୁରକୁ ଗମନ,
କିଛି ନ ବିଚାରି ପିତା କର ସମର୍ଥନ।
ଭାବ ତ ପୁରାଣି ପୂର୍ବ ପୁରୁଷେ ଆମରି
ସତ୍ୟନିଷ୍ଠ ହୋଇ କେହ୍ନେ ଯାଇଛନ୍ତି ତରି।
ପୁଣି ଭାବ ଆଜି ମଧ ସାଧୁ ଓ ସଜ୍ଜନେ
ସତ୍ୟ ଆଚରଣ କରି ରହନ୍ତି ଜୀବନେ।
ମଣିଷର ନଶ୍ୱରତା କଥା ଭାବି ମନେ
ସତ୍ୟକୁ ସେମାନେ ଲଂଘି ନାହାନ୍ତି ଜୀବନେ।
ଜୀବନ ଅନିତ୍ୟ ଜାଣି ଶସ୍ୟାଦି ସମାନେ,
ସତ୍ୟେ ଦୃଢ଼ ରହିଥିଲେ ପରା ସେହିମାନେ।
ଯାହାର ଉତ୍ପତ୍ତି ଅଛି ନଶ୍ୱର ତ ସେହି
ଜନମି ମୃତ୍ୟୁକୁ ଲଂଘି ନ ପାରନ୍ତି କେହି।

Digitized by srujanika@gmail.com

ଶସ୍ୟ ପରି ପ୍ରାଣୀ ଲଭେ ବିନାଶ ଯେସନେ,
ପୁଣି ଶସ୍ୟ ପରି ଜନ୍ମ ହୁଅଇ ତେସନେ।
ତେଣୁ ସତ୍ୟ ପାଳ ପିତା ଦେଇ ଅନୁମତି
ସାଧୁ ସନ୍ଥେ ସତ୍ୟ ପାଳି ଧର୍ମ ଆଚରନ୍ତି।''

କୌଣସି ପ୍ରକାରେ ପୁତ୍ର ପିତାଙ୍କୁ ବୁଝାଇ,
ସଶରୀରେ ପହଞ୍ଚିଲେ ଯମ ଦ୍ୱାରେ ଯାଇ।
କିନ୍ତୁ ଯମରାଜ ଥିଲେ ଅନ୍ୟତ୍ର ସେ କାଳେ,
ତାଙ୍କୁ ଚାହିଁ ନଚିକେତା ରହିଲେ ସେଠାରେ।
ଅତିଥି ବିଚାରି ତାଙ୍କୁ ଯମ ଅନୁଚରେ
ଖାଦ୍ୟ ପେୟ ବନ୍ଦୋବସ୍ତ କରିଲେ ଆଦରେ।
ନଚିକେତା କିନ୍ତୁ କିଛି ନ କରି ଗ୍ରହଣ
ରହିଲେ ଯମକୁ ଚାହିଁ କରି ଅନଶନ॥

## ଯମ-ଭବନରେ ନଚିକେତା

**ବୈଶ୍ୱାନରଃ ପ୍ରବିଶତ୍ୟତିଥିର୍ବ୍ରାହ୍ମଣୋ ଗୃହାନ୍।**
**ତସ୍ୟୈତାଂ ଶାନ୍ତିଂ କୁର୍ବନ୍ତି, ହର ବୈବସ୍ୱତୋଦକମ୍ ॥୭॥**

ଯମରାଜ ଯଥାକାଳେ ଗୃହେ ପହଞ୍ଚନ୍ତେ
ତାଙ୍କୁ ଦେଖି ଜଣାଇଲେ ତାଙ୍କ ଅନୁଗତେ।
ବ୍ରାହ୍ମଣ ଅତିଥି ଦେବ ଅଗ୍ନିଙ୍କ ସମାନ
ତବ ଗୃହେ ହୋଇଛନ୍ତି ଏବେ ବିଦ୍ୟମାନ।
ପାଦ୍ୟ ଆସନାଦି ଦ୍ୱାରା ଅତିଥି ସତ୍କାର
କରନ୍ତି ଗୃହସ୍ଥ ଲୋକେ ଭବ୍ୟ ବ୍ୟବହାର।
ହେ ସୂର୍ଯ୍ୟନନ୍ଦନ, ଏବେ ତାଙ୍କ ତୃପ୍ତି ପାଇଁ
ଯଥା ଶୀଘ୍ର ପାଦ୍ୟ ଜଳ ଘେନି ଆସ ଯାଇ'' ॥୭॥

ବ୍ରାହ୍ମଣ ଅତିଥି ଦେବ ବୈଶ୍ୱାନର ପରି,
ଉପଗତ ହୋଇଛନ୍ତି ଭବନେ ତୁମରି।

Digitized by srujanika@gmail.com

ଏ ସମୟେ ଲୋକେ ଦେଇ ପାଦ୍ୟ ଓ ଆସନ,
ସନ୍ତୋଷ କରାଇଥାନ୍ତି ଅତିଥି ବ୍ରାହ୍ମଣ ।
ଜଳେ ଯେଉଁପରି ଅଗ୍ନି ହୁଅଇ ଶୀତଳ,
ଅତିଥି ସନ୍ତୋଷ ତେହ୍ନେ ପାଇ ପାଦ୍ୟଜଳ ।
ବ୍ରାହ୍ମଣ ଅତିଥି ଦେବ ନ ହେଲେ ତୃପତ
ଅଗ୍ନି ସମ ଜାଳି ଭସ୍ମ କରନ୍ତି ସମସ୍ତ ।
ନ ହେଲେ ଅତିଥିଙ୍କର ଭବ୍ୟ ସମାଦର,
ଗୃହସ୍ଥର ଅକଲ୍ୟାଣ ହୁଅଇ କେବଳ ।
ତୁମେ ତେଣୁ ଏବେ ତୁମ କଲ୍ୟାଣ ନିମନ୍ତେ
ଯଥା ଶୀଘ୍ର ଯାଇ ଜଳ ଆଣ ବିଧି ମତେ ।''

**ଆଶା-ପ୍ରତୀକ୍ଷେ ସଙ୍ଗତଂ ସୂନୃତାଂ ଚ**
**ଇଷ୍ଟାପୂର୍ତ୍ତେ ପୁତ୍ର-ପଶୂଂଶ୍ଚ ସର୍ବାନ୍ ।**
**ଏତଦ୍ ବୃଙ୍କ୍ତେ ପୁରୁଷସ୍ୟାଳ୍ପମେଧସୋ**
**ଯସ୍ୟାନଶ୍ନନ୍ ବସତି ବ୍ରାହ୍ମଣୋ ଗୃହେ ॥୮॥**

ବ୍ରାହ୍ମଣ ଅତିଥି ଯେଉଁ ଗୃହସ୍ଥର ଘରେ
ରହନ୍ତି ଭୋଜନ ପାନ ବିନା ଉପାସରେ
ସେ ମନ୍ଦ ବୁଦ୍ଧିର ଆଶା ଆକାଂକ୍ଷା ନିକର
ସକଳ ତପସ୍ୟା ସିଦ୍ଧି ହୁଅଇ ବିଫଳ ।
ଯଜ୍ଞାଦିର ପୁଣ୍ୟ, ପୁଣି ପୁଣ୍ୟ ପୂର୍ତ୍ତ କର୍ମ
ଯେତେ ପୁଣ୍ୟ ହୋଇଥାଏ ସତ୍‌ସଙ୍ଗୁ ଉପୂନ୍ନ
ପୁତ୍ର ପଶୁ ସହ ସବୁ ପୁଣ୍ୟ ଯାଏ ନାଶ,
ବ୍ରାହ୍ମଣ ଅତିଥି ଗୃହେ ରହିଲେ ଉପାସ ॥୮॥

ରହିଲେ ଅତିଥି ଦେବ ଗୃହେ ଉପବାସେ,
ମୂର୍ଖ ମନ୍ଦମତି ପାଇଁ ଦୁଃଖ ମାଡ଼ି ଆସେ ।
ପୂରାକାଳେ ଆର୍ଯ୍ୟ ଗୃହେ ଅତିଥି ସତ୍କାର
ଗୃହସ୍ଥର ଥିଲା ଏକ ଭବ୍ୟ ବ୍ୟବହାର ।
ଅବଶ୍ୟ କର୍ତ୍ତବ୍ୟକର୍ମ ବୋଲି ଭାବି ମନେ
ଅତିଥି ସତ୍କାର କରାଯାଏ ସଯତନେ ।

Digitized by srujanika@gmail.com

ଅତିଥି ହୁଅନ୍ତି ଯେବେ ଗୃହେ ଉପଗତ
ଗୃହସ୍ଥ ଭାବନ୍ତି ମନେ ପୁଣ୍ୟ କି ପ୍ରାପତ ॥
ଅତିଥିଙ୍କୁ ଦେଇ ପରେ କରିଲେ ଭୋଜନ
ଅତିଥିଙ୍କ ପୁଣ୍ୟ ସ୍ୱାମୀ କରନ୍ତି ଅର୍ଜନ ।
କିନ୍ତୁ ଯେ ଭୋଜନ କରେ ଅତିଥିଙ୍କ ଆଗେ
ଗୃହ ଶିରୀ ସଉଭାଗ୍ୟ ନିମିଷକେ ଭାଙ୍ଗେ ।
ସବୁ ନାଶ ଯାଏ ଯେତେ ଯଜ୍ଞ ସମ୍ପାଦନ
ଯେତେ ପୁଣ୍ୟ କର୍ମ, ଯେତେ ତଡ଼ାଗ ଖନନ ।
ଆଶା ଆକାଙ୍କ୍ଷାର କିଛି ଫଳ ନ ହୁଅଇ
ସବୁ ବ୍ୟର୍ଥ ଯାଏ, ବ୍ୟଥା କେବଳ ମିଳଇ ।
ସେଥିପାଇଁ ଗୃହସ୍ୱାମୀ ଅତୁଳ ଆଦରେ
ଅତିଥି ସତ୍କାର କରୁଥିଲେ ନିରନ୍ତରେ ।

ଦେବତା ବ୍ରାହ୍ମଣ ଦ୍ୱିଜ ଅତିଥି ତତ୍ପର,
ଯେଉଁ ଦେଶେ ଥିଲା ଦିନେ ସାଧାରଣ ନର,
ସେ ''ଅତିଥିଦେବୋ ଭବ'' ''ମାତୃଦେବୋ ଭବ''
ଆଜି ଏ ମାଟିରେ ତିଳେ ନୋହେ ଅନୁଭବ ।
ସେ କାଳରେ କିନ୍ତୁ ଏହି ଅତିଥି ସତ୍କାର
କରିଥିଲା ଅତି ଉଚ୍ଚ ସ୍ଥାନ ଅଧିକାର ।
କେବଳ ଏ ଲୋକେ ନୁହେଁ, ଯମ ଲୋକରେ ବି,
ଗୃହୀ ପାଳୁଥିଲା ଧର୍ମ ଅତିଥିଙ୍କୁ ସେବି ।
ସ୍ୱଜନଙ୍କ ଠାରୁ ଯମ ଏ ସଂବାଦ ପାଇ,
ଗଲେ ଅତିଥିଙ୍କୁ ଶାନ୍ତ କରାଇବା ପାଇଁ ॥

## ଯମରାଜଙ୍କ ବର ପ୍ରଦାନ

**ତିସ୍ରୋ ରାତ୍ରୀର୍ଯଦବାତ୍ସୀର୍ଗୃହେ ମେ**
**ଅନଶ୍ନନ୍ ବ୍ରହ୍ମନ୍ନତିଥିର୍ନମସ୍ୟଃ ।**
**ନମସ୍ତେଽସ୍ତୁ ବ୍ରହ୍ମନ୍ ସ୍ୱସ୍ତି ମେଽସ୍ତୁ**
**ତସ୍ମାତ୍ ପ୍ରତି ତ୍ରୀନ୍ ବରାନ୍ ବୃଣୀଷ୍ୱ ॥୯॥**

Digitized by srujanika@gmail.com

ପାଶେ ଯାଇ ଯମରାଜ ବାଳକେ କହିଲେ,
"ତୁମେ ମୋ ଅତିଥି ପୁଣି ବ୍ରାହ୍ମଣ ବିଧିରେ ।
ନମସ୍ୟ ଅତିଥି ଯେଣୁ କରେ ନମସ୍କାର
ଏଥିଁ ମୋ ମଙ୍ଗଳ ହେଉ ସକଳ ପ୍ରକାର ।
ମୋ ନମସ୍ୟ ହୋଇ ଯେଣୁ ଏ ମୋର ଭବନେ,
ବିତାଇଛ ତିନି ରାତି ରହି ଅନଶନେ,
ତେଣୁ ପ୍ରତି ରାତି ପାଇଁ ଏକ ଏକ ବର
ଏହିପରି ତିନି ବର ମାଗ ହେ କୁମର" ॥ ୯ ॥

ଋଷିପୁତ୍ର ନଚିକେତା ଯାଇ ଯମାଗାରେ,
କଟାଇ ଅଛନ୍ତି ତିନି ରାତି ଅନାହାରେ ।
ଜାଣି ଏହା ଯମ ତାଙ୍କୁ କରି ନମସ୍କାର
କହିଲେ ଅର୍ଚ୍ଚନାକରି ନାନାଦି ପ୍ରକାର –
"ତୁମର ଏଇ ମୋ ଗୃହେ ହେ ପୂଜ୍ୟ ଅତିଥି,
ଅନାହାରେ ତିନିରାତି ଯାଇଅଛି ବିତି ।
ସେହି ଅପରାଧେ ମୋର ବହୁ ଅମଙ୍ଗଳ
ଆଶଙ୍କା ଉପୁଜେ ହୃଦେ ଥରକୁ ଯେ ଥର ।
ତୁମ ଅନୁଗ୍ରହେ ତାହା ହେବ ଉପଶମ
ତେଣୁ ଦୟା କର ମୋତେ କ୍ଷମି ଦୋଷ ମମ ।
ଯେଉଁ ତିନି ରାତି ତୁମେ ରହି ଉପବାସେ,
ବହୁ କ୍ଳେଶ ସହିଅଛ ଏ ମୋର ନିବାସେ,
ତୁମ ଶାନ୍ତି ପାଇଁ ତେଣୁ ପ୍ରତି ରାତି ପାଇଁ
ଏକ ଏକ ବର ମାଗି ନିଅ ହେ ଗୋସାଇଁ ।"

**ପ୍ରଥମ ବର-ପିତୃ ପରିତୋଷ**

**ଶାନ୍ତ ସଂକଳ୍ପଃ ସୁମନା ଯଥା ସ୍ୟାଦ୍ –**
**ବୀତମନ୍ୟୁ ର୍ଗୌତମୋ ମାଽଭି ମୃତ୍ୟୋ ।**
**ତ୍ୱତ୍ ପ୍ରସୃଷ୍ଟଂ ମାଽଭିବଦେତ୍ ପ୍ରତୀତ**
**ଏତତ୍ ତ୍ରୟାଣାଂ ପ୍ରଥମଂ ବରଂ ବୃଣେ ॥୧୦॥**

Digitized by srujanika@gmail.com

ଯମରାଜେ ନଚିକେତା କହିଲେ ଉତ୍ତରେ,
"ହେ ମୃତ୍ୟୁଦେବତା, ମାଗେ ମୁଁ ପ୍ରଥମ ବରେ, –
ମୋ ପିତା ଗୌତମ ମୋତେ ଏଠାକୁ ପଠାଇ
ଦୁଃଖେ କାଳ କାଟୁଥିବେ ନିଶ୍ଚିତେ ମୋ ପାଇଁ।
ସେ ଲଭନ୍ତୁ ଶାନ୍ତି ଆଉ ଆନନ୍ଦ ମନରେ
ପାଶୋରନ୍ତୁ ପୂର୍ବକ୍ରୋଧ, ଯା' ଥିଲା ମୋ ପରେ।
ତୁମରି ପ୍ରେରିତ ହୋଇ ଗୃହେ ଲେଉଟିଲେ,
ପିତା ଚିହ୍ନି ମୋତେ ଗୃହେ ନିଅନ୍ତୁ ଆଦରେ।
ତିନି ବର ମଧ୍ୟେ ଏହି ମୋ ପ୍ରଥମ ବର,
ହେ ଯମ, ଏହାକୁ ମୋତେ ଅନୁଗ୍ରହ କର" ॥୧୦॥

ଯମଙ୍କର ତିନିବର ପ୍ରତିଶ୍ରୁତି ପାଇ
ନଚିକେତା କଲେ ଚିନ୍ତା ପିତାଙ୍କର ପାଇଁ।
ଭାବିଲେ ସେ ପିତା ପେଷି ମୋତେ ଯମପୁରେ
ନିଶ୍ଚେ କାଳ କାଟୁଥିବେ ଅତି ଦୁଃଖାତୁରେ।
ତେଣୁ ତାଙ୍କ ମନ ଶାନ୍ତି ପ୍ରସନ୍ନତା ଆଶେ
ଜଣାଇଲେ ନଚିକେତା ଯମରାଜ ପାଶେ।
ପିତାଙ୍କ ମନର କ୍ରୋଧ ହେଉ ପ୍ରଶମିତ
ନିଅନ୍ତୁ ସେ ମୋତେ ଚିହ୍ନି ଆଦର ସହିତ।
ପିତାଙ୍କ ବିଷୟେ ମାଗି ଏ ପ୍ରଥମ ବର
ନଚିକେତା ପିତୃଭକ୍ତି ଦେଖାନ୍ତି ତାଙ୍କର।

ଯମ ପୁରୁଁ କେହି କେବେ ମର ଦେହ ବହି
ଆଉ ଥରେ ମର୍ତ୍ତ୍ୟ ପୁରେ ଫେରି ନ ଆସଇ।
ଅତୃପ୍ତ ଆତ୍ମା ବା କେବେ ପ୍ରେତ ରୂପ ପାଇ
ପ୍ରକଟ ହୁଅନ୍ତି ମର୍ତ୍ତ୍ୟପୁରେ କାହିଁ କାହିଁ।
ଏବେ ନଚିକେତା ହୋଇ ଯମଙ୍କ ପ୍ରେରିତ,
ଲେଉଟି ପିତାଙ୍କ ପୁରେ ହେଲେ ଉପସ୍ଥିତ,
କାଳେ ପିତା ପ୍ରେତ ଭାବି ଭୟ ପାଇ ମନେ,
ଆଦର କରିବେ ନାହିଁ ପୂରୁବେ ଯେସନେ।
ନଚିକେତା ଯମରାଜେ ତେଣୁ ଥିଲେ କହି,
ଚିହ୍ନିବେ ଯେପରି ପିତା ପୂର୍ବ ସ୍ନେହ ବହି।

Digitized by srujanika@gmail.com

ଯମରାଜ କହିଲେ –

ଯଥା ପୁରସ୍ତାଦ୍ ଭବିତା ପ୍ରତୀତ
ଔଦ୍ଦାଲକିରାରୁଣିର୍ମତ୍ ପ୍ରସୃଷ୍ଟଃ ।
ସୁଖଂ ରାତ୍ରୀ ଶୟିତା ବୀତମନ୍ୟୁ –
ସ୍ତ୍ୱାଂ ଦଦୃଶିବାନ୍ ମୃତ୍ୟୁମୁଖାଦ୍ ପ୍ରମୁକ୍ତମ୍ ॥ ୧୧ ॥

''ମୋ କୃପାରୁ ଔଦ୍ଦାଳକି-ଆରୁଣି ଶେଷକୁ
ଚିହ୍ନି ପୂର୍ବପରି ସ୍ନେହ କରିବେ ତୁମକୁ ।
ମୃତ୍ୟୁ ମୁଖୁଁ ଫେରିଥିବା ତୁମକୁ ସମ୍ମୁଖେ,
ଦେଖି କ୍ରୋଧ ପରିହରି ଶୋଇବେ ସେ ସୁଖେ'' ॥ ୧୧ ॥

ନଚିକେତା କଥା ଶୁଣି ଯମ ହରଷରେ,
''ତଥାସ୍ତୁ'' ''ତା' ହେଉ'' ବୋଲି କହିଲେ ଧଡ୍ସରେ ।
ତୁମ ପିତା ଉଦ୍ଦାଳକ ମୋର ଅନୁଗ୍ରହେ,
ଚିହ୍ନି ସ୍ନେହ ପରାୟଣ ହୋଇବେ ନିଶ୍ଚୟେ ।
ତୁମେ ଏଠୁଁ ଯିବା ଦେଖି ହେବେ ଖୁସି ମନ
ରାତିରେ ଶାନ୍ତିରେ ସେ ତ କରିବେ ଶୟନ ।
କ୍ରୋଧ ପରିହରି ନେବେ ତୁମକୁ ଆଦରେ
ତୁମେ ଖୁସି ହେବ ପୁତ୍ର ଆତ୍ମୀୟ ମେଳରେ ।''

ବାଜଶ୍ରବସଃ, ଉଦ୍ଦାଳକ, ଆରୁଣି, ଗୌତମ,
ନଚିକେତା ପିତାଙ୍କର ଥିଲା ଚାରି ନାମ ॥

ନଚିକେତାଙ୍କ ମନରେ ସ୍ୱର୍ଗ ଯେପରି

ସ୍ୱର୍ଗେ ଲୋକେ ନ ଭୟଂ କିଞ୍ଚନାସ୍ତି
ନ ତତ୍ର ତ୍ୱଂ ନ ଜରୟା ବିଭେତି ।
ଉଭେ ତୀର୍ତ୍ୱାଽଶନାୟାପିପାସେ
ଶୋକାତିଗୋ ମୋଦତେ ସ୍ୱର୍ଗଲୋକେ ॥ ୧୨ ॥

Digitized by srujanika@gmail.com

ଏ ପ୍ରଥମ ବର ପରେ ଗୌତମ ନନ୍ଦନ,
ଦ୍ୱିତୀୟ ବରଟି ପାଇଁ କରି ନିବେଦନ,
କହିଲେ, "ହେ ମୃତ୍ୟୁଦେବ, ଏହି ସ୍ୱର୍ଗଲୋକେ,
କିଛିହିଁ ତ ନାହିଁ ଭୟ ଯେପରି ଭୂଲୋକେ।
ଚଳେ ନାହିଁ ଆପଣଙ୍କ ଏଠି ଅଧିକାର
ଜରା ବା ବାର୍ଦ୍ଧକ୍ୟ ଭୀତି ନାହିଁ ତ କାହାର।
କେ କ୍ଷୁଧା ପିପାସା କଷ୍ଟ ତହିଁ ନ ଭୋଗନ୍ତି
ଦୁଃଖାତୀତ ହୋଇ ସର୍ବେ ଆନନ୍ଦେ ରହନ୍ତି" ॥୧୨॥

ପିତାଙ୍କର ଚିତ୍ତ ଶାନ୍ତି ସସ୍ନେହ ମିଳନ
ମାଗିଲେ ପ୍ରଥମ ବରେ ଗୌତମ ନନ୍ଦନ।
ଏବେ ଏ ଦ୍ୱିତୀୟ ବରେ ମରଣର ଅନ୍ତେ
ସ୍ୱର୍ଗଲୋକେ ସେ ଗମନ କରିବା ନିମନ୍ତେ
କରନ୍ତି ପ୍ରାର୍ଥନା : ଯେଣୁ ଏ ମର୍ତ୍ତ୍ୟ ଭୁବନ
ଅନାହାର ରୋଗ ଶୋକ ଦୁଃଖ ନିକେତନ।

ବ୍ୟାଧି ଭୟ ଜରା ମୃତ୍ୟୁ ଭୟ ପ୍ରତିକ୍ଷଣେ
ମଣିଷ ପ୍ରାଣକୁ କୋରି ଭକ୍ଷଇ ଯେସନେ।
ସରଗେ ତ ଜରାମୃତ୍ୟୁ ନ ଥାଏ କାହାର
ନ ଥାଏ ସେଠାରେ କ୍ଷୁଧା ତୃଷା ଅନାହାର।
ପ୍ରିୟଜନ ବିଚ୍ଛେଦର ଦୁଃଖେ କଦାଚନ
ଶୋକାତୁର ନ ହୁଅଇ ତିଳେ ସ୍ୱର୍ଗଜନ।
କୌଣସି ପ୍ରକାର ପୀଡ଼ା ଦୁଃଖ ଶୋକ ଭୟ
ସରଗବାସୀଙ୍କୁ କେବେ ନ କରେ ଅଥୟ॥

**ଦ୍ୱିତୀୟ ବର – "ଅଗ୍ନିବିଦ୍ୟା"**

**ସ ତ୍ୱମଗ୍ନିଂ ସ୍ୱର୍ଗ୍ୟମଧ୍ୟେଷି ମୃତ୍ୟୋ।**
**ପ୍ରବ୍ରୂହି ତ୍ୱଂ ଶ୍ରଦ୍ଧଧାନାୟ ମହ୍ୟମ୍।**
**ସ୍ୱର୍ଗଲୋକା ଅମୃତତ୍ୱଂ ଭଜନ୍ତ**
**ଏତଦ୍ ଦ୍ୱିତୀୟେନ ବୃଣେ ବରେଣ ॥୧୩॥**

Digitized by srujanika@gmail.com

"ସ୍ୱର୍ଗ ପ୍ରାପ୍ତି ପାଇଁ ହୁଏ ଯେ ଅଗ୍ନି-ଚୟନ,
ସେ ବିଦ୍ୟାକୁ ଭଲ ଭାବେ ଜାଣନ୍ତି ଆପଣ ।
ମୋ ଶ୍ରଦ୍ଧା ସକାଶେ ଏବେ ହେ ମୃତ୍ୟୁ ଦେବତା,
କହନ୍ତୁ ବୁଝାଇ ମୋତେ ସେହି ଅଗ୍ନି କଥା ।
ମୃତ୍ୟୁ ପରେ ଯେ କରନ୍ତି ସରଗେ ଗମନ,
ଅମୃତତ୍ୱ ଲାଭେ ସେହି ହୁଅନ୍ତି ଭାଜନ ।
ସ୍ୱରଗ ସାଧନ ଭୂତ ସେହି ଅଗ୍ନି-ବିଦ୍ୟା,
ମୋ ଦ୍ୱିତୀୟ ବରେ ଦିଅ, କର ନାହିଁ ଦ୍ୱିଧା" ॥୧୩॥

ସ୍ୱର୍ଗଲାଭ ପାଇଁ ଅଗ୍ନି-ବିଦ୍ୟା ଅନୁଷ୍ଠାନ –
ବିଷୟେ କେବଳ ଅଛି ଯମଙ୍କର ଜ୍ଞାନ ।
ତେଣୁ ସେ କେବଳ ଯୋଗ୍ୟ ଗୁରୁ ଏଥିପାଇଁ
ତାଙ୍କୁ ଛାଡ଼ି ବିଶାରଦ ଆଉ କେହି ନାହିଁ ।
ସେହି ପୁଣି ନିଜେ କରି ଏ ଅଗ୍ନି-ଚୟନ,
ସ୍ୱର୍ଗେ ଯମ ପଦ ଲଭି ଅଛନ୍ତି ଏସନ ।

ଯେଣୁ ନଚିକେତା ହୃଦେ ଶ୍ରଦ୍ଧା ଥିଲା ଭରି
ତେଣୁ ସେ ଚାହିଁଲେ ଶିଷ୍ୟ ହେବାକୁ ତାଙ୍କରି ।
ନ ଥାଇ ଶରଧା ତତ୍ତ୍ୱ-ଜ୍ଞାନ ଅରଜନ
କଲାଣି କେଉଁଠି କିଏ କରିଛି ଶ୍ରବଣ ?
ଯମ ପାଶୁଁ ନଚିକେତା ଏହି ଦୁଇ ବରେ,
ମର ଓ ଅମର ଲୋକ ସୁଖ ଭିକ୍ଷା କଲେ ।
ଆଗକୁ ସରଗ ସୁଖ ଲଭିବା ନିମନ୍ତେ
ମଣିଷ କରଇ କେତେ ଧର୍ମ ଏ ଜଗତେ ।
ସ୍ୱର୍ଗ ସୁଖ ଅଭିଳାଷୀ ମୂଢ଼ ମର୍ତ୍ତ୍ୟ ନରେ,
କିପରି କରିବେ 'ଅଗ୍ନି ଯଜ୍ଞ' ଏ ମର୍ତ୍ତ୍ୟରେ,
ସେଥିପାଇଁ ନଚିକେତା ମାଗିଲେ ଏ ବର
ବିଶ୍ୱଜନ ହିତ ପାଇଁ ଏ ଚିନ୍ତା ତାଙ୍କର ॥

Digitized by srujanika@gmail.com

**ପ୍ର ତେ ବ୍ରବୀମି ତଦୁ ମେ ନିବୋଧ**
**ସ୍ୱର୍ଗ୍ୟମଗ୍ନିଂ ନଚିକେତଃ ପ୍ରଜାନନ୍ ।**
**ଅନନ୍ତଲୋକାପ୍ତିମଥୋ ପ୍ରତିଷ୍ଠାଂ**
**ବିଦ୍ଧି ତ୍ୱମେତଂ ନିହିତଂ ଗୁହାୟାମ୍ । ॥ ୧୪ ॥**

''ପୁତ୍ର ନଚିକେତା'', ଯମ କହିଲେ ଉତ୍ତରେ,
''ସ୍ୱର୍ଗପ୍ରଦ ଅଗ୍ନି-ବିଦ୍ୟା ମୁଁ ଜାଣେ ପ୍ରାଞ୍ଜଳେ ।
ତୋ ଆଗେ କହୁଛି ତାହା, ଶୁଣ ମନ ଦେଇ,
ଦୀର୍ଘକାଳ ସ୍ଥାୟୀ ସ୍ୱର୍ଗ ସୁଖଦାୟୀ ଏହି ।
ନିଖିଳ ବିଶ୍ୱର ପୁଣି ଏ ଆଶ୍ରୟ ଅଟେ,
ଜାଣିବୁ, ଏ ଜ୍ଞାନୀ-ହୃଦ-ଗୁହାରେ ପ୍ରକଟେ'' ॥ ୧୪ ॥

ଅଗ୍ନି-ବିଦ୍ୟା ବିଶେଷତ୍ୱ ଏ ମନ୍ତ୍ରେ ସୂଚିତ,
ଏ ନୁହଇ ସ୍ଥୂଳ ଅଗ୍ନି-ଯା' ବିଶ୍ୱେ ବିଦିତ ।
ହୃଦୟ-ଗୁହାରେ ବୁଦ୍ଧିରୂପ ବୈଶ୍ୱାନର;
ବସ୍ତୁଭଳି ହୁଅନ୍ତି ନି କାହାକୁ ଗୋଚର ।
ତିଳେ ହୁଏ ନାହିଁ ଦେଖି ଏହାଙ୍କୁ ଆଖିରେ
କେବେ ଧରା ପଡ଼ନ୍ତିନି ମନ ବା ବୃତ୍ତିରେ ।
ବିରାଟ ପୁରୁଷ ଅଗ୍ନି, ଏ ପ୍ରଥମ ଜାତ,
ଏ ଅଗ୍ନିରୁ ଏ ଜଗତ ହୋଇଛି ସଂଜାତ ।
ଜଗତ ଆଧାର ସେହି ଜଗତ ଆଶ୍ରୟ,
'ସର୍ବଲୋକ ଆଦି' ବୋଲି କେ କରନ୍ତି ଥୟ ।
ରହନ୍ତି ସେ ଜ୍ଞାନୀ-ହୃଦ-ଗୁହାରେ ଗୋପନେ,
ନୁହନ୍ତି ସହଜ ବୋଧ୍ୟ ସେ ଇତର ଜନେ ।
ନିର୍ମଳ ବୁଦ୍ଧିରେ ମାତ୍ର ସେ ପଡ଼ନ୍ତି ଜଣା
ଅଜ୍ଞାନୀ ତାହାଙ୍କୁ କେହ୍ନେ କରିବେ କଳ୍ପନା ?

**ଲୋକାଦିମଗ୍ନିଂ ତମୁବାଚ ତସ୍ମୈ**
**ଯା ଇଷ୍ଟକା ଯାବତୀର୍ବା ଯଥା ବା ।**
**ସ ଚାପି ତଦ୍ ପ୍ରତ୍ୟବଦଦ୍ ଯଥୋକ୍ତ-**
**ମଥାସ୍ୟ ମୃତ୍ୟୁଃ ପୁନରେବାହ ତୁଷ୍ଟଃ ॥ ୧୫ ॥**

Digitized by srujanika@gmail.com

ସକଳ ଲୋକର ଆଦି ଏ ଅଗ୍ନି ବିଷୟେ
ଶିଷ୍ୟଙ୍କୁ କହିଲେ ଯମଦେବତା ଆଗ୍ରହେ।
ଏ ଅଗ୍ନି-ଚୟନ ପାଇଁ ଯେପରି ପ୍ରକାର,
ଯେତେ-ଯେତେ ଖଣ୍ଡି ଇଟା ହୁଏ ଦରକାର,
ଯେପରି ଭାବରେ ହୁଏ ଅଗ୍ନି ପ୍ରଜ୍ୱଳନ
ସବିଶେଷେ ଯମରାଜ କରିଲେ ବର୍ଣ୍ଣନ।
ଯମ କହିଥିଲେ ଯାହା, ନିର୍ଭୁଲ ଭାବରେ
ଆଉ ଥରେ ନଚିକେତା ସବୁ ଗାଇଗଲେ।
ଯମରାଜ ହୋଇ ଅତି ହରଷ ଏଥିରେ
ଶିଷ୍ୟ ଶ୍ରଦ୍ଧାବାନ ଜାଣି ପୁଣି କହିଲେ – ।। ୧୫ ।।

ପ୍ରଥମେ କହିଲେ ଶିଷ୍ୟେ ମରଣ ଦେବତା
ଅଖିଳ ସୃଷ୍ଟିର ଆଦି ଭୂତ ଅଗ୍ନି କଥା।
ହିରଣ୍ୟଗର୍ଭ ତ ସୃଷ୍ଟି ଆଦି ବ୍ୟକ୍ତ ରୂପ
ସେହି ସ୍ଥୂଳ ସମଷ୍ଟିର ବିରାଟ ପୁରୁଷ।
ବିରାଟ ପୁରୁଷ ଅଗ୍ନି, ଅଗ୍ନି ବୈଶ୍ୱାନର
ପ୍ରଥମ ଶରୀର-ରୂପ ଆଦି ଜଗତର,
ଅଗ୍ନି ରୂପ ଏ ବିରାଟ ପୁରୁଷଙ୍କ ଠାରୁ
ଯେତେ ସବୁ "ଲୋକ" ଜାତ ନିଜ ମହିମାରୁ।

ଏହି ଅଗ୍ନି-ଯଜ୍ଞ ପାଇଁ ସ୍ୱତନ୍ତ୍ର ଭାବରେ,
କେତେ ବିଧି ବିଧାନ ତ ଅଛି ଜଗତରେ।
ନୋହି ଅବଗତ ତାହା କରିଲେ ଚୟନ
ସକଳ ସାଧନା ହେବ ସିନା ଅକାରଣ।
ଏ ଅଗ୍ନିରେ ହୋମ ପାଇଁ କେତେ କି ପ୍ରକାର
ସମିଧ ସାମଗ୍ରୀ ଇଟା ହୁଏ ବ୍ୟବହାର
ହୁଏ ହୋମ ବେଦୀ କୁଣ୍ଡ କେସନେ ନିର୍ମିତ
ସାଧକ ଏ ସବୁ କଥା ଜାଣିବା ଉଚିତ।
ତେଣୁ ଯମ ପ୍ରିୟ ଶିଷ୍ୟ ନଚିକେତା ଆଗେ
ଏ ଅଗ୍ନିର ହୋମ ବିଧି କହିଲେ ସରାଗେ।

Digitized by srujanika@gmail.com

''ବୃତ୍ତାକାରେ ଯଜ୍ଞ-ବେଦୀ ହୁଅଇ ପ୍ରସ୍ତୁତ,
ତିନିଶ ଷାଠିଏ ଇଟା ତହିଁ ବ୍ୟବହୃତ ।
ପ୍ରତି ଇଟା ଏକ ଡିଗ୍ରୀ ବୃତ୍ତ ଚାପ ପରି
ଏ ଯଜ୍ଞ ସମ୍ପନ୍ନ ହୁଏ ଏକ ବର୍ଷ ଧରି ।
ସେ ସମଗ୍ର ବୃତ୍ତଟିକୁ 'ବିଷ୍ଣୁ' କୁହାଯାଏ,
ପ୍ରତି ଇଷ୍ଟକ ବା ଇଟା 'ଦେବତା' ବୋଲାଏ ।''

ଯଜ୍ଞର ବର୍ଣ୍ଣନା ନଚିକେତା ଏକ ମନେ
ଶୁଣି ପୁଣି କହିଗଲେ ତାହାକୁ ତେସନେ ।
ଯମ ନଚିକେତାଙ୍କର ଦେଖି ଏକାଗ୍ରତା,
ପ୍ରୀତ ହୋଇ ମନେ ପୁଣି କହିଲେ ଏ କଥା –

ତମବ୍ରବୀତ୍ ପ୍ରୀୟମାଣୋ ମହାତ୍ମା
ବରଂ ତବେହାଦ୍ୟ ଦଦାମି ଭୂୟଃ ।
ତବୈବ ନାମ୍ନା ଭବିତାଽୟମଗ୍ନିଃ
ସୃଙ୍କାଂ ଚେମାମନେକରୂପାଂ ଗୃହାଣ ॥୧୬॥

ସଦାଶୟ ଯମରାଜ ପ୍ରୀତ ହୋଇ ମନେ,
କହିଲେ, ''ଅନେକ ବର ଦେଉଛି ପ୍ରସନ୍ନେ,
ବିଖ୍ୟାତ ହେବ ଏ ଅଗ୍ନି ତୁମରି ନାମରେ,
ମୁଣି ନିଅ ଏ ବିଚିତ୍ର ରତ୍ନମାଳା କରେ'' ॥୧୬॥

ଶିଷ୍ୟର ଯୋଗ୍ୟତା ଦେଖି ମୃତ୍ୟୁଲୋକ ପତି,
ଆଦରେ ଆରେକ ବର ତାହାକୁ ଦିଅନ୍ତି ।
ପୂର୍ବେ ତାଙ୍କ କହିଥିବା ତିନି ବର ଛାଡ଼ି
ସନ୍ତୋଷେ ଚତୁର୍ଥ ବର ଆଗେ ଦେଲେ ବାଢ଼ି ।
ଏପରି ଉଦାରଚେତା କାର୍ପଣ୍ୟ ରହିତ
ଅଧିକ ଦେବାକୁ ଯମ ହେଲେନି କୁଣ୍ଠିତ ।

ସେ କହିଲେ, ''ଏ ଯଜ୍ଞାଗ୍ନି ସାରା ଜଗତରେ
ଆଜିଠୁଁ ପ୍ରସିଦ୍ଧ ହେବ ତୋହରି ନାମରେ ।
''ନାଚିକେତ – ଅଗ୍ନି''ବୋଲି ସମସ୍ତେ କହିବେ,
ତୋର ଏକାଗ୍ରତା ନିଷ୍ଠା ମୁହଁରେ ଗାଇବେ ।

Digitized by srujanika@gmail.com

ପୁଣି ଦିଏ ନିଅ ଏହି, ହେ ଋଷି କୁମାର
ମୋ ତୃପ୍ତି ଜ୍ଞାପକ ଶବ୍ଦମୟୀ ରତ୍ନହାର ।''

ଛୁଇଁଲେନି କିନ୍ତୁ ନଚିକେତା ରତ୍ନହାର,
ଧନ ପ୍ରତି ଥିଲା ତାଙ୍କ ମନରେ ବିକାର ।

## ''ନାଚିକେତ – ଅଗ୍ନି'' ଚୟନର ଫଳ

**ତ୍ରିଣାଚିକେତସ୍ତ୍ରିଭିରେତ୍ୟ ସନ୍ଧିଂ**
**ତ୍ରିକର୍ମକୃତ୍ ତରତି ଜନ୍ମମୃତ୍ୟୁ ।**
**ବ୍ରହ୍ମଜଜ୍ଞଂ ଦେବମୀଡ୍ୟଂ ବିଦିତ୍ୱା**
**ନିଚାଯ୍ୟେମାଂ ଶାନ୍ତିମତ୍ୟନ୍ତମେତି ॥ ୧୭ ॥**

ନାଚିକେତ-ଅଗ୍ନିକୁ ଯେ ବ୍ୟକ୍ତି ତିନିବାର,
ପାରିଛି ଚୟନ କରି ଜୀବନେ ତାହାର,
ସେହି ତିନି ସହିତରୁ ଉପଦେଶ ଲଭି,
ସହଜରେ ତରିଯାଏ ସଂସାର ବାରିଧି ।
ବହ୍ମଜାତ ଏଇ ଅଗ୍ନିଦେବ ଜ୍ଞାନବାନ,
ନିତ୍ୟ ଭଜନୀୟ ଆଉ ଅଶେଷ ମହାନ ।
ତାଙ୍କୁ ଆତ୍ମ-ସ୍ୱରୂପରେ କଲେ ଅନୁଭବ
ଅତିଶୟ ସୁଖ ଶାନ୍ତି ହୁଅଇ ସମ୍ଭବ ॥ ୧୭ ॥

''ପୁତ୍ର, ଯେଉଁ ବ୍ୟକ୍ତି ହୋଇ ଶୁଦ୍ଧ ପୂତ ମନ
ନାଚିକେତ-ଅଗ୍ନି କରେ ତ୍ରିବାର ଚୟନ,
ସେ ତ୍ରିଣାଚିକେତ ବୋଲି ଜଗତେ ବିଦିତ;
ଅବା ଏହି ଅଗ୍ନି-ବିଦ୍ୟା ହୋଇ ଅବହିତ,
ଅଧ୍ୟୟନ ଅନୁଷ୍ଠାନ କରିବା ଜନରେ
କହନ୍ତି ତ୍ରିଣାଚିକେତ ବୋଲି ଜଗତରେ ।

କରିବାକୁ ନାଚିକେତ ଅଗ୍ନି ଅନୁଷ୍ଠାନ,
ଲୋଡ଼ା ମାତା ପିତା ଗୁରୁଙ୍କର ଶିକ୍ଷାଦାନ ।
ଅବା ବେଦ ସ୍ମୃତି, ଶିଷ୍ଟଜନ ଆଚରଣ
ବା ପ୍ରତ୍ୟକ୍ଷ, ଅନୁମାନ ଆଗମ ଗ୍ରହଣ ।

Digitized by srujanika@gmail.com

ଏ ମଣିଷ ଜନମର ପୂର୍ଣ୍ଣତା ସକାଶେ,
ତିନିସ୍ଥାନୁ ଶିକ୍ଷା ଲାଭ ଲୋଡ଼ା ଏ ଜଗତେ ।
ଜନକ ଜନନୀ କରି ତପ ଆଚରଣ
ସଂସାରକୁ ସୁସନ୍ତାନ କରନ୍ତି ଅର୍ପଣ ।
ଜନ୍ମ ଆଗୁଁ ସନ୍ତାନର ଶିକ୍ଷାର ପରିଧି
ମାତୃଗର୍ଭେ ଲଭୁଥାଏ ବୃଦ୍ଧି ଯଥାବିଧି ।
ସ୍ତନ୍ୟପାନେ ସତେ ଶିକ୍ଷା ହୁଅଇ ପ୍ରଚିତ,
କ୍ରମେ ତା' ଜୀବନ କ୍ଷେତ୍ରେ ହୁଏ ପ୍ରସାରିତ ।
ତା' ପରେ ପିତାଙ୍କ ପାଶୁଁ ହୁଏ ଶିକ୍ଷା ଲାଭ
ଜୀବନେ ପଡ଼ଇ ତା'ର ଅତୁଟ ପ୍ରଭାବ ।
ଗୁରୁ ବା ଆଚାର୍ଯ୍ୟ ପାଶୁଁ ତୃତୀୟ ପର୍ଯ୍ୟାୟେ
ଜୀବନର ମହାଶିକ୍ଷା ଲାଭ ହୋଇଥାଏ ।
ସମ୍ପୂର୍ଣ୍ଣ ହୋଇଲେ ଶିକ୍ଷା ରଖି ଏହି କ୍ରମ,
ସାଧକେ ଜୀବନେ କରି ଥାଆନ୍ତି ତ୍ରିକର୍ମ ।
ଯଜ୍ଞ ଦାନ ତପ – ଏହି ତ୍ରିକର୍ମ ଆଚରି
ସାର୍ଥକ କରନ୍ତି ନର ଜନମ ତାଙ୍କରି ।
ପରେ ଜନ୍ମ ମୃତ୍ୟୁ ଦଶା କରି ଅତିକ୍ରମ
ଜୀବନେ ଲଭନ୍ତି ଶାନ୍ତି ଆନନ୍ଦ ପରମ ॥

**ତ୍ରିଣାଚିକେତସ୍ତ୍ରୟମେତଦ୍ ବିଦିତ୍ୱା**
**ଯ ଏବଂ ବିଦ୍ୱାଂଶ୍ଚିନୁତେ ନାଚିକେତମ୍ ।**
**ସ ମୃତ୍ୟୁପାଶାନ୍ ପୁରତଃ ପ୍ରଣୋଦ୍ୟ**
**ଶୋକାତିଗୋ ମୋଦତେ ସ୍ୱର୍ଗଲୋକେ ॥ ୧୮ ॥**

ତ୍ରିଣାଚିକେତ ଯେ ଜନ ସୁଜ୍ଞାନୀ ପଣ୍ଡିତ
ଏ ଅଗ୍ନିର ତିନି ଅଙ୍ଗ ହୋଇ ଅବହିତ ।
ତାଙ୍କରି ଜୀବନ କାଳେ ହୋଇ ଦୃଢ଼ ମନ
ନାଚିକେତ-ଅଗ୍ନି କରି ଅଛନ୍ତି ଚୟନ ।
ସେ ମରଣ ଆଗୁଁ କାଟି ସଂସାର ବନ୍ଧନ
ଶୋକୁଁ ତରି ସ୍ୱର୍ଗେ ସୁଖ କରନ୍ତି ଅର୍ଜନ ॥ ୧୮ ॥

Digitized by srujanika@gmail.com

ନାଚିକେତ-ଅଗ୍ନି କଲେ. ତ୍ରିବାର ଚୟନ
ଯେଉଁ ଫଳ ମିଳେ ତାହା ଏଠାରେ ବର୍ଣ୍ଣନ ।
ଏ ଅଗ୍ନି ଇଷ୍ଟକ ସଂଖ୍ୟା, ସ୍ୱରୂପ ବେଭାର
ଜାଣି, ନାଚିକେତ ଯଜ୍ଞ କଲେ ତିନିବାର;

ଅବା ଯଜ୍ଞ ବିଷୟରେ ଲଭି ଯଥା ଜ୍ଞାନ,
ଆତ୍ମା ରୂପ ଭାବି ତାଙ୍କୁ ଯେ କରନ୍ତି ଧ୍ୟାନ,
ବିଧି ଜାଣି ଏହି ଯଜ୍ଞ ଯେହୁ ଆଚରନ୍ତି
ତାହାଙ୍କୁ ତ୍ରିଣାଚିକେତ ଜଗତେ କହନ୍ତି ।

ଏହି ନାଚିକେତ-ଯଜ୍ଞ ଅନୁଷ୍ଠାନକାରୀ
ମୃତ୍ୟୁ ଆଗୁଁ ସଂସାରର ବନ୍ଧନୁ ବାହାରି,
ଶୋକାତୀତ ହୋଇ ସ୍ୱର୍ଗେ ଲଭନ୍ତି ଆମୋଦ
ବିରାଟ ପୁରୁଷ ସହ କରି ଆତ୍ମବୋଧ ।

ମୃତ୍ୟୁ ଆଗୁଁ ମୃତ୍ୟୁ-ପାଶୁଁ ମୁକ୍ତ ହୁଏ ଜନ
ଏଇ ଶ୍ଳୋକେ ଏହିପରି ହୋଇଛି ବର୍ଣ୍ଣନ ।
ମୃତ୍ୟୁ ଅର୍ଥ ନୁହେଁ ଏଥି ପିଣ୍ଡୁ ପ୍ରାଣ ଶେଷ,
ଅଜ୍ଞାନ ଅଧର୍ମ ତାହା, ମୋହ ରାଗଦ୍ୱେଷ ।
ତ୍ରିଣାଚିକେତ ଯେ ହୋଇ ଏ ସବୁରୁ ମୁକ୍ତ
ଦୁଃଖାତୀତ ହୋଇ ଲଭେ ସରଗର ସୁଖ ।

ଏ ଅଗ୍ନିକୁ ନିଜ ଆତ୍ମା ରୂପେ କରି ଜ୍ଞାନ,
ଶାନ୍ତି ମୁକ୍ତିପ୍ରଦ ବୋଲି କରାଯାଏ ଧ୍ୟାନ ।
ଏ ଅଗ୍ନି ପ୍ରତ୍ୟେକ ପ୍ରାଣୀ ପ୍ରାଣ ଜ୍ୟୋତି ରୂପ
ବ୍ରହ୍ମଙ୍କର ଏ ପ୍ରଥମ ପ୍ରକାଶ ସ୍ୱରୂପ ।
ସେ ସର୍ବଜ୍ଞ, ବରଣୀୟ, ଜଗତ ପୂଜିତ
ଜଗତ ଆଶ୍ରୟ ବୋଲି ସର୍ବତ୍ର ବିଦିତ ।
ଏ ଅଗ୍ନିକୁ ଆତ୍ମା ରୂପେ କଲେ ଉପଲବ୍ଧି
ମୃତ୍ୟୁ କାଟି ତରେ ପ୍ରାଣୀ ସଂସାର-ଜଳଧି ।
ଅଧର୍ମ ଅଜ୍ଞାନ ରାଗ ଦ୍ୱେଷ ଅହଂକାର
ମୃତ୍ୟୁ ରୂପ ଅଟେ ଯେତେ କାମନା ବିକାର ।
ବଦ୍ଧ ହୋଇ ତହିଁ ଜୀବ ସଂସାର ବନ୍ଧନେ
ଜନ୍ମ ମୃତ୍ୟୁ ଚକ୍ରେ ଘୂରେ ଏ ମର୍ତ୍ତ୍ୟ ଭୁବନେ ।

Digitized by srujanika@gmail.com

ସାଧକ ସକଳ ଅହଂଭାବ କରି ନାଶ,
ଅଖିଳ ବିଶ୍ୱର ପ୍ରାଣ ରୂପେ ଯେ ପ୍ରକାଶ,
ସର୍ବଜୀବ ବୁଦ୍ଧି ସ୍ଥିତ ଅଗ୍ନିକୁ ନିଜର,
ଆତ୍ମା ରୂପେ ଉପଲବ୍ଧି କରି ନିରନ୍ତର,
ସକଳ ସଂସାର ଦୁଃଖ ଶୋକୁଁ ହୋଇପାର
ମୃତ୍ୟୁ ପରେ ସ୍ୱର୍ଗେ ସୁଖ ଲଭନ୍ତି ଅପାର ।

**ଏଷ ତେଽଗ୍ନିର୍ନଚିକେତଃ ସ୍ୱର୍ଗ୍ୟୋ**
**ଯମବୃଣୀଥା ଦ୍ୱିତୀୟେନ ବରେଣ ।**
**ଏତମଗ୍ନିଂ ତବୈବ ପ୍ରବକ୍ଷ୍ୟନ୍ତି ଜନାସ –**
**ସ୍ତୃତୀୟଂ ବରଂ ନଚିକେତୋ ବୃଣୀଷ୍ୱ ॥ ୧୯ ॥**

''ପୁତ୍ର ନଚିକେତା,'' ଯମ କହିଲେ ତା' ପରେ,
ତୁହି ଯା ମାଗିଲୁ ତୋର ଏ ଦ୍ୱିତୀୟ ବରେ,
ସେହି ସ୍ୱର୍ଗପ୍ରଦ ଅଗ୍ନି କଥା ତୋହ ପାଇଁ
ତୋହରି ଆଗରେ ସବୁ କହିଲି ବୁଝାଇ ।
ଏ ଅଗ୍ନିକୁ ତୋର ନାମେ କହିବେ ଜଗତେ,
ତୋହର ତୃତୀୟ ବର ଏବେ ମାଗ ମତେ'' ॥ ୧୯ ॥

ଶେଷ ବର ଗୋଟି ଏବେ ମାଗି ନେବା ପାଇଁ,
ନଚିକେତା ଆଗେ ଯମ କହନ୍ତି ଶୁଣାଇ ।
ପିତାପାଶେ ନଚିକେତା ଫେରି ଯିବା ଲାଗି
ଯମଙ୍କୁ ପ୍ରଥମ ବରେ ଆଗୁଁ ଥିଲେ ମାଗି ।
ସ୍ୱର୍ଗପ୍ରଦ ଅଗ୍ନିବର ମାଗି ଦ୍ୱିତୀୟରେ
ସକଳ କାମନା ସିଦ୍ଧ ହୋଇଛି କୌଶଳେ ।
ଇହଲୋକ ପରଲୋକ ସୁଖ ବେନି ବରେ
ସେହି ପାଇ ସାରିଅଛି ଅତି ଅକ୍ଳେଶରେ ।
ମାଗିବା ନିମନ୍ତେ ଆଉ ଅଛି ବା କଅଣ ?
ଭାବି ଯମରାଜ ହେଲେ କୁତୂହଳୀ ମନ ।
ମଣିଷର କି ଆନନ୍ଦ ବାକି ଅବା ଥାଏ,
ଯାହାକୁ ପାଇବା ପାଇଁ ଅପରେ ଅନାଏ ?

Digitized by srujanika@gmail.com

## ତୃତୀୟ ବର – ଆତ୍ମ ରହସ୍ୟ

**ଯେୟଂ ପ୍ରେତେ ବିଚିକିତ୍ସା ମନୁଷ୍ୟେ**
**ଅସ୍ତୀତ୍ୟେକେ ନାୟମସ୍ତୀତି ଚୈକେ ।**
**ଏତଦ୍ ବିଦ୍ୟାମନୁଶିଷ୍ଟସ୍ତ୍ୱୟାଽହଂ**
**ବରାଣାମେଷ ବରସ୍ତୃତୀୟଃ ॥୨୦॥**

"କିଏ କହେ ରହେ ଆତ୍ମା ମରଣର ପରେ,
ଆତ୍ମା ରହେ ନାହିଁ ପୁଣି କାହାର ମତରେ;
ଏଇ ଯେ ସଂଶୟ ହୁଏ ସଭିଙ୍କର ମନେ
ମୋ ଚିର ଅଥୟ ତାହା ଜାଣିବି କେମନେ ?
ମୋର ସବୁ ବର ମଧ୍ୟେ ଏଇଟି ତୃତୀୟ,
ଦିଅ ମୋତେ ଦୟାକରି ଏହି ପ୍ରାର୍ଥନୀୟ" ॥୨୦॥

ଇହଲୋକ ପରଲୋକ ସବୁ ସୁଖ ପାଇ
ନଚିକେତା ମନ ମଧ ଶାନ୍ତ ହେଲା ନାହିଁ ।
ସେ ଭାବିଲେ, ଯେତେ ସବୁ ସୁଖ କ୍ଷଣସ୍ଥାୟୀ
କେବଳ ଦୁଃଖକୁ ନିଏ ସେ ବାଟ କଢ଼ାଇ ।
ଯା ପାଇଛି କିଛି ନୁହେଁ ଇଚ୍ଛା ଅନୁରୂପ
ମୁଁ ଜାଣିବି ସେ ଅଜଣା ଆତ୍ମାଙ୍କ ସ୍ୱରୂପ ।

ମର୍ତ୍ତ୍ୟ ବା ସ୍ୱରଗ ସୁଖେ କିବା ପ୍ରୟୋଜନ,
ମୋ ସ୍ଥିତିର ନାହିଁ ଯହିଁ ସ୍ଥିରତା କଅଣ ।
ତେଣୁ ନିଜ ସ୍ୱରୂପକୁ ନ ଜାଣିବା ଯାଏଁ
ତୁଚ୍ଛା ଭୋଗ ସୁଖେ ଅବା କେଉଁ ଲାଭ ଥାଏ ?
ମୋଅର "ମୁଁ"କୁ ଯଦି ଜାଣି ହେଉନାହିଁ
ହଜାରେ ଜାଣିଲେ ତହିଁ କେଉଁ ଲାଭ ଥାଇ ?

ସଂଖ୍ୟା "ଏକ" ପରେ ଥାଏ ଯେତେ ଯେତେ ଶୂନ
'ଏକ' ଯୋଗୁଁ ବଢ଼ି ଯାଏ ସେ ସବୁର ଗୁଣ ।
ଏହି 'ଏକ' ସଂଖ୍ୟା ଗୋଟି ଆଗରେ ନ ଥିଲେ
ସବୁ ଶୂନ ହେବ, ମାଳେ ଶୂନ ବସାଇଲେ ।

Digitized by srujanika@gmail.com

ତେହ୍ନେ ଯେତେ ଭୋଗ ବସ୍ତୁ ଐଶ୍ୱର୍ଯ୍ୟ ସମ୍ପତ୍ତି
ଏ "ମୁଁ" ନ ଥିଲେ ହେବ ସବୁର କି ଗତି ?
ତେଣୁ ଏ "ମୁଁ" କୁ ଆଉ ତା' ସ୍ୱରୂପ କ'ଣ
ଜାଣିବା ହେଲାଣି ମୋର ଅତି ପ୍ରୟୋଜନ ।

ଜାଗଇ ସଭିଙ୍କ ମନେ ସନ୍ଦେହ ଏପରି
କି ଘଟଇ ମଣିଷଟି ଯେବେ ଯାଏ ମରି ।
ମଣିଷଟି ଗଲେ ମରି ମଢ଼ା ରହେ ପଡ଼ି
ମୁଣ୍ଡ କୋଡ଼ି ନିଜ ଲୋକେ ଛାଡ଼ିଥାନ୍ତି ରଡ଼ି ।
ଘର ବୋଲି ଅରଜିବ ଯେ ଯେତେ ପଦାର୍ଥ
ଘଟ ଛୁଟି ଗଲେ ତାକୁ ବୋଲିବେଟି ଭୂତ ।
ଘର ଘରଣୀଏ ଦେହ କିଳାଉଣ ଥିବେ
କୁଟୁମ୍ବ ବାଟମ୍ବ ଧରି ସେ ଶୁଦ୍ଧ ହୋଇବେ ।
କେ' ଫୋପାଡ଼ି ଦେବ, କେ' ପୋଡ଼ିବ ଜୁଇ ଜାଳି
ସେ ସମୟେ ଦୁଃଖ ସତେ ଛାଡ଼ଇ ବୋବାଳି ।
ଜୁଇ ପରେ ମଢ଼ା ଗୋଟି ନ ପୋଡ଼ି ଗଡ଼ିଲେ
କଞ୍ଚା କୋଚିଳାର ଡାଙ୍ଗ ଖେଞ୍ଚଣା ବାଡ଼ିରେ
ଖେଞ୍ଚୁଥିବେ ମାଲମାନେ ହୋଇ ନିରିଦୟ
ସେ କରୁଣ ଦୃଶ୍ୟେ କାର ଛାତି ହେବ ଥୟ ?
କିଏ ପଚାରିଲେ ତେବେ କହିବେ ବିକଳେ
'ପୁଅ ଚାଲିଗଲା' ଅବା 'ବାପା ଚାଲିଗଲେ ।'

ଯେଉଁ ପୁଅ ଦିହଟିର ସେବାରେ ଜନନୀ,
କଟାଇ ଦେଇଛି କେତେ ବିନିଦ୍ର ରଜନୀ,
ଯେଉଁ ଦେହଟିକୁ ବୁକେ ଜାକି କୋଳେ ଧରି,
ସ୍ନେହ ମମତାର ଝର ପଡୁଥିଲା ଝରି,
ସେ ଦେହ ସେମିତି ଅଛି, କହୁ ନାହିଁ କଥା,
କହୁନାହିଁ, 'ମୁଁ' 'ମୋର', କରୁନି ମମତା,
"ମୁଁ" "ମୋର" ଯେ କହୁଥିଲା, ଗଲା କାହିଁ ସିଏ ?
ସେ କି ନୁହଁ, ଦେହ ମନ ପ୍ରାଣ ବା ଇନ୍ଦ୍ରିୟେ
ଏ ଦେହ ନ ହେଲେ "ମୁଁ", ତେବେ "ମୁଁ" କିଏ ସେ ?
ମୋ "ମୁଁ" ସ୍ୱରୂପ କ'ଣ ନାହିଁ ଅବଶେଷେ ?

Digitized by srujanika@gmail.com

ଏ ବିଷୟେ କିଏ କେତେ ଭଳି କହେ କଥା,
ହେଲେ ଜଣା ନ ପଡ଼ଇ ତାହାରି ସତ୍ୟତା।
ଶରୀର ଇନ୍ଦ୍ରିୟ ମନ ବୁଦ୍ଧି ଅତିରିକ୍ତ
ଆତ୍ମା ନିତ୍ୟ ରହେ ବୋଲି କହଇ କେହି ତ।

ଆଉ କେ କହନ୍ତି-ଆତ୍ମା ଫାତ୍ମା କିଛି ନାହିଁ,
ଆଖିରେ ଆତ୍ମାକୁ କିଏ ଦେଖିଅଛି କାହିଁ?
ଏ ଦେହ ପାଉଁଶ ହେଲେ ଜଳି ଜୁଇ ପରେ,
ଲେଉଟି ଆସିଛି କାହିଁ ପୁଣି ଆଉ ଥରେ?
ତେଣୁ ଜୀଇ ଥିବା ତକ ରହିବା ସୁଖରେ
କି ଲାଭ ଗୋଡ଼ାଇ ଅବା ଆତ୍ମାଙ୍କ ପଛରେ?
ଏ ଦେହ ମହମବତୀ ପରାୟେ ମିଶ୍ରିତ,
ଜଳି ଗଲେ କେଉଁ ସତ୍ତା ନ ରହେ କିଞ୍ଚିତ।
ପଞ୍ଚଭୂତେ ପଞ୍ଚଭୂତ ମିଶିଯାଏ କ୍ଷଣେ,
ପବନ ପବନ ସାଥେ ମିଶଇ ଯେସନେ।

ଯେ ମଣିଷ ମରିଗଲା ସେ କହେନି କଥା,
ଜୀବିତ ମଣିଷ ପ୍ରାଣେ ଜାଗେ ତା'ର ବ୍ୟଥା।
ଯା' ସାଥେ କଟିଲା ଦିନ ବରଷ ବରଷ
କେତେ ହସ ଖୁସି କେତେ ଆତ୍ମୀୟ ପରଶ,
ସବୁ କ'ଣ ଛିଡ଼ିଗଲା ସବୁ ଦିନ ପାଇଁ
ଗଲା ପୁତ୍ର ଆଉ କ'ଣ ବାହୁଡ଼ିବ ନାହିଁ?
ଯିଏ ଚାଲିଗଲା ସିଏ ଅଛି ଅବା କାହିଁ,
ତାହା ପାଇଁ କାନ୍ଦି ପ୍ରାଣ କରେ ହାଇ ହାଇ।
ମାଆ କୋଳ ଛାଡ଼ି ତା'ର ଶିଶୁ ଚାଲିଗଲା
ମାଆ ମନ ଝୁରେ – ମୋର ଧନ ଅଛି ପରା।
ସ୍ତିରୀକୁ ତାହାର ସ୍ୱାମୀ ଛାଡ଼ି ଚାଲିଯାଏ,
କାହିଁ ସ୍ୱାମୀ ଛାଡ଼ି ସ୍ତିରୀ ଆଗରେ ପଳାଏ।
ସେମାନଙ୍କ ମନେ ଏକା ପ୍ରଶ୍ନ ଅନୁକ୍ଷଣ,
ଗଲା ପରେ ସେହି ଆଉ ଅଛି ନା କଅଣ?

Digitized by srujanika@gmail.com

ସିଏ ଅଛି ବୋଲି ଆମେ ଧରି ନେଉ ମନେ,
ତା' ଶ୍ରଦ୍ଧା ଜିନିଷ ଦେଉ ଶ୍ରାଦ୍ଧେ ସଯତନେ।
ପ୍ରଶ୍ନ ପ୍ରଶ୍ନ ଖାଲି ପ୍ରଶ୍ନ– ପ୍ରଶ୍ନେ ରହିଯାଏ
ଉତ୍ତର ତାହାର କିନ୍ତୁ କେହି ତ ନ ପାଏ।
ସଂଶୟ ସଭିଙ୍କ ପ୍ରାଣେ ଜାଗେ ସେଥିପାଇଁ
ମରିଗଲା ଯିଏ, ସିଏ ଅଛି ଅବା ନାହିଁ?

''ତେଣୁ ଏ ବିଷୟେ ଆମେ ପ୍ରତ୍ୟକ୍ଷ ଭାବରେ
ଅବା ଅନୁମାନେ ଜ୍ଞାନ ନ ଲଭୁ ଅନ୍ତରେ।
ତଥାପି ଏ ତତ୍ତ୍ୱ ଜ୍ଞାନ ନ ହୋଇଲେ ଜ୍ଞାତ
ବିଫଳ ଜୀବନ ଲକ୍ଷ୍ୟ, ବ୍ୟର୍ଥ ପୁରୁଷାର୍ଥ।
ଅତୀନ୍ଦ୍ରିୟ ଅନୁଭବୀ ଆପଣ କେବଳ,
ତେଣୁ ମୋ ଜିଜ୍ଞାସା କେବେ ନୋହିବ ବିଫଳ''।

କେତେ ମାତା ପିତା ସ୍ତିରୀ ଭଗିନୀ ସୋଦର
ଆଗରୁ ପଚାରିଛନ୍ତି ଯମେ ବହୁ ଥର।
ସବୁ ଶୁଣି ଯମ ଦେଇ ନାହାନ୍ତି ଉତ୍ତର,
ଉତ୍ତର ପାଇଁକି ଯେଣୁ ନ ଥାଏ କା' ତର।
ଯମେ ପ୍ରଶ୍ନ କରି କେହି ହୋଇ ନାହିଁ ଠିଆ
ଅବିଚ୍ଛିନ୍ନ ଭାବ ଗତି କରିଛି ଦୁନିଆ।
ମଣିଷ ଜୀବନ ଯାତ୍ରା ଚାଲିଛି ଚାଲିବ
ଯେତେ ବାଧା ଆସୁ ଯାତ୍ରା ଅଟକି ନ ଯିବ।
ସର୍ବେ ପ୍ରଶ୍ନ କରି ପୁଣି ଚାଲନ୍ତି ଆଗକୁ
ପ୍ରଶ୍ନଟି ଅମୀମାଂସିତ ରହଇ ଶେଷକୁ।
ତେଣୁ ଏଇ ପ୍ରଶ୍ନେ ଯମ ନ ଦିଅନ୍ତି କାନ
ହୋଇନାହିଁ ହେଉନାହିଁ ପ୍ରଶ୍ନ ସମାଧାନ।

ଆଜି ପଚାରନ୍ତି ନଚିକେତା ସେହିପରି
ତାଙ୍କ ନିଷ୍ଠା ଧୈର୍ଯ୍ୟ ଯମ ଜାଣିବେ କିପରି?
ସେ କି ପ୍ରଶ୍ନ କରି ପୁଣି ଚାଲିବେ ଆଗକୁ
ପରୀକ୍ଷା ନେବାକୁ ଯମ କହିଲେ ଶେଷକୁ ...

Digitized by srujanika@gmail.com

**ଦେବୈରତ୍ରାପି ବିଚିକିତ୍ସିତଂ ପୁରା**
**ନ ହି ସୁବିଜ୍ଞେୟମଣୁରେଷ ଧର୍ମଃ।**
**ଅନ୍ୟଂ ବରଂ ନଚିକେତୋ ବୃଣୀଷ୍ୱ**
**ମା ମୋପରୋତ୍ସୀରତି ମା ସୃଜୈନମ୍ ॥୨୧॥**

ଶୁଣ ନଚିକେତା, "ପୁରାକାଳେ ଏ ବିଷୟେ
ସଂଶୟ ବି ରହିଥିଲା ଦେବଙ୍କ ହୃଦୟେ।
କାରଣ ଏ ସୂକ୍ଷ୍ମ ତତ୍ତ୍ୱ ନିଛକ ଭାବରେ
ବୁଝା ନ ପଡ଼ଇ କେବେ ଅତି ସହଜରେ।
ତେଣୁ ମାଗ ଅନ୍ୟ ବର ଯାହା ତୋର ରୁଚି,
ପ୍ରିୟ ବୋଲି ତୋତେ ମୁହିଁ ବୁଝାଇ କହୁଚି।
ବାଧ୍ୟ କର ନାହିଁ ମୋତେ ଦେବାକୁ ଏ ବର
ଅଶେଷ କଲ୍ୟାଣ ଏଥୁଁ ହୋଇବ ତୋହର" ॥୨୧॥

ଯମରାଜ କହିବାର ତାତ୍ପର୍ଯ୍ୟ ତ ଏହି,
ସୂକ୍ଷ୍ମ ତତ୍ତ୍ୱ ସହଜରେ ନ ବୁଝନ୍ତି କେହି।

"ପ୍ରତ୍ୟକ୍ଷ ପ୍ରମାଣ ନାହିଁ ଯେଉଁ ଆମ୍ଭଙ୍କର,
ଯେ ନୁହନ୍ତି ବୁଦ୍ଧି ମନ ଇନ୍ଦ୍ରିୟ ଗୋଚର,
ସେହି ତତ୍ତ୍ୱ ଅତି ସୂକ୍ଷ୍ମ କେ କେହ୍ନେ ବୁଝିବ?
ଦ୍ରଷ୍ଟା ବିନା କିଏ ତାଙ୍କୁ ବୁଝାଇ ପାରିବ?
ଦେବତାଏ, ମଣିଷଠୁଁ ଯା'ବୁଦ୍ଧି ପତଳା
ଏ ବିଷୟେ ତାଙ୍କ ମନେ ସଂଶୟ ତ ଭରା।
ତୁହି ତ ମଣିଷ, ପୁଣି ସହଜେ ବାଳକ
ତୋତେ ଏହି ଜ୍ଞାନ ଦେଲେ ହେବ କି ସାର୍ଥକ।
ବୁଝାଇଲେ ଯେତେ ଯଦି ବୁଝି ନ ହୋଇବ,
ତେବେ ଅକାରଣେ ବର ନଷ୍ଟ ହୋଇଯିବ।"
ଏଥିପାଇଁ ଯମରାଜ କହିଲେ ବୁଝାଇ,
"ନଚିକେତା, ନିଅ ଏହି ବର ଲେଉଟାଇ।
ତା' ପ୍ରତିବଦଳେ ଅନ୍ୟ ଯେଉଁ ବର ପ୍ରିୟ,
ଆନନ୍ଦ ମନରେ ଧନ ତୁହି ମାଗିନିଅ।"

Digitized by srujanika@gmail.com

## ନଚିକେତା ଅଟଳ

**ଦେବୈରତ୍ରାପି ବିଚିକିତ୍ସିତଂ କିଲ**
**ତ୍ୱଂ ଚ ମୃତ୍ୟୋ ଯନ୍ନ ସୁଜ୍ଞେୟମାଥ ।**
**ବକ୍ତା ଚାସ୍ୟ ତ୍ୱାଦୃଗନ୍ୟୋ ନ ଲଭ୍ୟୋ**
**ନାନ୍ୟୋ ବରସ୍ତୁଲ୍ୟ ଏତସ୍ୟ କଶ୍ଚିତ୍ ॥୨୨॥**

ଯମଙ୍କର କଥା ଶୁଣି ଗୌତମ ନନ୍ଦନ
ସ୍ଥିର ଚିତ୍ତେ ପୁଣି ତାଙ୍କୁ କଲେ ନିବେଦନ –
"ହେ ମୃତ୍ୟୁ, ପୂର୍ବେ ଏହି ବିଷୟେ ସଂଶୟ,
କହୁଚ ଦେବଙ୍କ ହୃଦେ ଥିଲା ସୁନିଶ୍ଚୟ ।
ଆପଣ କହିଲେ, ଆତ୍ମତତ୍ତ୍ୱ ବିଷୟରେ,
ଏ ନୁହେଁ ସହଜ ବୋଧ୍ୟ କାହା ନିକଟରେ ।
ତେଣୁ ଏ ବିଷୟେ ମୁହିଁ ଆପଣଙ୍କ ପରି
ଆଉ ଜଣେ ଉପଦେଷ୍ଟା ପାଇବି କିପରି ?
ଆଉ ବି ଭାବୁଚି ମନେ ଏହି ବର ପରି,
ଅନ୍ୟ କେଉଁ ବର କେବେ ହେବ ନାହିଁ ସରି" ॥୨୨॥

ନୁହଇ ସହଜ ବୋଧଗମ୍ୟ ଆତ୍ମଜ୍ଞାନ
ଶୁଣିଲେ ବି ଯମ ମୁଖୁଁ ଏହି କଥାମାନ,
ତଥାପି ନିବୃତ୍ତ ନୋହି ସେ ବରରୁ ତିଳେ,
ନଚିକେତା ପୁଣି ଯମରାଜଙ୍କୁ କହିଲେ –

"ହେ ଯମ, ଆପଣ ଏବେ ଯେଣୁ କହୁଛନ୍ତି,
ଦୁର୍ବୋଧ୍ୟ ଏ ଆତ୍ମତତ୍ତ୍ୱ ଦୁର୍ବିଜ୍ଞେୟ ଅତି,
ଦେବତାଙ୍କ ମନେ ଏହି ବିଷୟେ ସଂଶୟ
ତେଣୁ ମୁଁ ଜାଣିବି ଏହି ତତ୍ତ୍ୱକୁ ନିଶ୍ଚୟ ।
ସହଜେ ଏ ତତ୍ତ୍ୱ ଯଦି ବୁଝା ପଡୁଥାନ୍ତା,
ମନରେ ସଂଶୟ କିଛି ରହୁ ନ ଥାଆନ୍ତା,
ତେବେ ଆପଣଙ୍କ ଠାରୁ ଏ ବର କଦାପି
ଆହେ ମୃତ୍ୟୁଦେବ, କେବେ ମୁଁ ମାଗି ନ ଥାନ୍ତି ।

Digitized by srujanika@gmail.com

ତା'ପରେ ଆପଣ ପରଲୋକ ଅଧୀଶ୍ୱର,
ଏ ତତ୍ତ୍ୱ ବିଷୟେ ବିଶାରଦ ନିରନ୍ତର,
ଆପଣଙ୍କ ପରି ତତ୍ତ୍ୱଦର୍ଶୀ ଜଣେ ଆଉ
ଯେତେ ଖୋଜିଲେ ବି ପାଇ ପାରିବି ବା କାହୁଁ?

ତେଣୁ ତବ ପାଶୁଁ ଆତ୍ମତତ୍ତ୍ୱ ଶିକ୍ଷା ପାଇଁ
ଏହି ଯେ ସୁଯୋଗ ଟିକି ମୁହିଁ ଅଛି ପାଇ,
ତାହା ତେଜିବାକୁ ମୋର ହେଉ ନାହିଁ ମନ,
ଏଥିରେ ମୁଁ ଅନ୍ୟ ବର ମାଗିବି କେସନ?
ଶେଷରେ ଯେ ବର ପାଇଁ ମୁଁ କରଇ ଅଳି
ଜଗତରେ ଆଉ ବର ନାହିଁ ତାହା ଭଳି।
ସକଳ ବରର ଫଳ ଯେଣୁ କ୍ଷଣସ୍ଥାୟୀ
ସେହିପରି ବରେ ମୋର ପ୍ରୟୋଜନ ନାହିଁ।"

## ଯମରାଜଙ୍କ ପ୍ରଲୋଭନ

ଶତାୟୁଷଃ ପୁତ୍ରପୌତ୍ରାନ୍ ବୃଣୀଷ୍ୱ
ବହୂନ୍ ପଶୂନ୍ ହସ୍ତିହିରଣ୍ୟମଶ୍ୱାନ୍ ।
ଭୂମେର୍ମହଦାୟତନଂ ବୃଣୀଷ୍ୱ
ସ୍ୱୟଂ ଚ ଜୀବ ଶରଦୋ ଯାବଦିଚ୍ଛସି ॥୨୩॥

ଉତ୍ତରେ କହିଲେ ଯମ, "ମାଗରେ ନନ୍ଦନ,
ଶତବର୍ଷ ଆୟୁ ଯୁକ୍ତ ପୁତ୍ର ପୌତ୍ରଗଣ;
ବହୁତ ସଂଖ୍ୟକ ଗାଈ ଗୋରୁ ମାଗ ବାପ,
ବହୁ ହସ୍ତୀ ଅଶ୍ୱ ଆଉ ସୁବର୍ଣ୍ଣ ଅମାପ;
ସୁବିସ୍ତାରୀ ଭୂମଣ୍ଡଳ, ଯାହା ଲୋଡ଼ା କୁହ,
ଯେତେ ବର୍ଷ ଇଚ୍ଛା ତୁ'ରେ ନିଜେ ବଞ୍ଚି ରୁହ" ॥ ୨୩॥

ଏବେ ଯମ ନିଜ ପ୍ରିୟ ଶିଷ୍ୟର ଯୋଗ୍ୟତା
ପରଖି ନେବାକୁ କହି ପ୍ରଲୋଭନ କଥା,
ଯାଚିଲେ ଅମାପ ବିତ୍ତ ପ୍ରଭୁତା ବଡ଼ିମା
ଭୋଗ ପାଇଁ ପୁଣି ଇଚ୍ଛା ମତ ଆୟୁ ସୀମା।

Digitized by srujanika@gmail.com

ଭୋଗରେ ବିତୃଷ୍ଣା ଭାବ ନ ଜାଗିଲେ ମନେ
ଶାଶ୍ୱତ ସତ୍ୟକୁ କିଏ ଲଭିବ କେସନେ ?
ସାଧକକୁ କରିବାକୁ ଆତ୍ମ ଦରଶନ
ବିବେକ ବୈରାଗ୍ୟ ବୁଦ୍ଧି ସବୁ ପ୍ରୟୋଜନ ।

ଜାଣିଲେ ବି ଆତ୍ମଜ୍ଞାନ ଦୁର୍ଜ୍ଞେୟ ବହୁତ
ତଥାପି ତ ନଚିକେତା ନ ହୋଇ ନିବୃତ୍ତ,
ସେହି ସେ ତୃତୀୟ ବରେ ଦୃଢ଼ କଲେ ମନ
ତେଣୁ ଯମ ଦେଖାଇଲେ ଭିନ୍ନ ପ୍ରଲୋଭନ ॥

**ଏତତ୍ତୁଲ୍ୟଂ ଯଦି ମନ୍ୟସେ ବରଂ**
**ବୃଣୀଷ୍ୱ ବିତ୍ତଂ ଚିରଜୀବିକାଂ ଚ ।**
**ମହାଭୂମୌ ନଚିକେତସ୍ତ୍ୱମେଧି**
**କାମାନାଂ ତ୍ୱାଂ କାମଭାଜଂ କରୋମି ॥ ୨୪ ॥**

"ଏହି ବର ପରି ଯଦି ଆଉ କିଛି ବର,
ଇଚ୍ଛା କରୁଅଛୁ ଯେବେ ମାଗରେ କୁମର;
ମାଗ ବିତ୍ତ ଧନ ରତ୍ନ, ସୁଦୀର୍ଘ ଜୀବନ
ସୁବିସ୍ତୀର୍ଣ୍ଣ ସାମ୍ରାଜ୍ୟରେ ଅବା ରାଜପଣ,
ଉଭୟ ପାର୍ଥିବ ଦିବ୍ୟ କାମନା ବିଳାସ
ଭୋଗକରି ମେଣ୍ଟାଅରେ ତୋ ମନ
ପିଆସ" ॥ ୨୪ ॥

ନିଜର ଲକ୍ଷ୍ୟରେ ସ୍ଥିର ରହୁଛି କି ନାହିଁ,
ନଚିକେତା ମନ ବଳ ପରଖିବା ପାଇଁ
ପୁଣି ଯାଚିଲେ ଯମ ଆଉ ଭୋଗ କେତେ
ନର ଓ ଅମର ସୁଖ ଥିଲା ଯାହା ଯେତେ ।
ତଥାପି ଟଳିଲା ନାହିଁ ନଚିକେତା ତିଳେ
ସ୍ଥିର ହୋଇ ରହିଥିଲା ନିଜ ବଚନରେ ।

ଅଜାଣତେ ନଚିକେତା ହୃଦ ଅନ୍ତରାଳେ,
କାମନାର ଲଘୁ କୀଟ ଲୁଚି ଥାଇପାରେ,

Digitized by srujanika@gmail.com

ତାହାକୁ ଜାଣିବା ପାଇଁ ମରଣ ଦେବତା,
ବୁଲେଇ ବୁଲେଇ ପୁଣି କହିଲେ ଏ କଥା –

**ଯେ ଯେ କାମା ଦୁର୍ଲଭା ମର୍ତ୍ତ୍ୟଲୋକେ**
**ସର୍ବାନ୍ କାମାଂଶ୍ଛନ୍ଦତଃ ପ୍ରାର୍ଥୟସ୍ୱ ।**
**ଇମା ରାମାଃ ସରଥାଃ ସତୂର୍ଯ୍ୟା**
**ନ ହୀଦୃଶା ଲମ୍ଭନୀୟାଃ ମନୁଷ୍ୟୈଃ ।**
**ଆଭିର୍ମତ୍ପ୍ରତ୍ତାଭିଃ ପରିଚାରୟସ୍ୱ**
**ନଚିକେତୋ ମରଣଂ ମାନୁପ୍ରାକ୍ଷୀ ॥୨୫॥**

"ଯେ ବିଳାସ ବସ୍ତୁରାଜି ମରତେ ସପନ,
ସ୍ୱଚ୍ଛନ୍ଦେ ତା' ମାଗି ପାର, ଗୌତମ ନନ୍ଦନ ।
ଏଇ ରଥାରୂଢ଼ା ହସ୍ତେ ବାଦ୍ୟଯନ୍ତ୍ର ଧରା
ଅଶେଷ ସୁଷମାମୟୀ ସ୍ୱର୍ଗର ଅପ୍ସରା,
କେତେବେଳେ ନ ମିଳନ୍ତି କାହିଁ ମର୍ତ୍ତ୍ୟଜନେ
ତାଙ୍କୁ ପାଇ ନିଜ ସେବା କରାଅ ଯତନେ ।
କିନ୍ତୁ ନଚିକେତା ତମେ ମନ କର ନାହିଁ,
ମୃତ୍ୟୁ ବିଷୟକ ପ୍ରଶ୍ନ ପଚାରିବା ପାଇଁ" ॥୨୫॥

କୌଣସି ପ୍ରକାର ଭୋଗ୍ୟ ବସ୍ତୁ ପ୍ରଲୋଭନ,
ପାରିଲାନି ଟଳାଇ ନଚିକେତା ମନ ।
ତେଣୁ ଯମ ସ୍ୱର୍ଗ-ଭୋଗ୍ୟ ବସ୍ତୁ କଥା କହି
ମନର ଦୃଢ଼ତା ତା'ର ପରଖନ୍ତି ରହି ।

ଯେ ସକଳ ଭୋଗ ବସ୍ତୁ ଏହି ମଣିଷର,
ଦୁର୍ଲଭ ମରତେ ମାତ୍ର ଭୁଞ୍ଜନ୍ତି ଅମର –
ଯେହ୍ନେ ରଥାରୂଢ଼ା ହସ୍ତେ ବାଦ୍ୟ ଯନ୍ତ୍ର ଧରା
ଅଶେଷ ସୁଷମାମୟୀ ସ୍ୱର୍ଗର ଅପ୍ସରା,
ଦେବତାମାନଙ୍କ ଚିତ୍ତ କରନ୍ତି ହରଣ,
ଯାହାଙ୍କୁ ପାଆନ୍ତି ନାହିଁ କେବେ ମର୍ତ୍ତ୍ୟଜନ,
ତାଙ୍କୁ ପାଇବାକୁ ନଚିକେତା କଲେ ମନ

Digitized by srujanika@gmail.com

'ସହଜରେ ଯମରାଜ କରିବେ ଅର୍ପଣ ।
କିନ୍ତୁ ମୃତ୍ୟୁ ପରେ ଆତ୍ମା କେଉଁ ଗତି ପାଏ,
ସେ ପ୍ରଶ୍ନ ଯେପରି ନଚିକେତା ନ ଉଠାଏ ।

ଶାରୀରିକ ମାନସିକ ଆଉ ଆଧ୍ୟାତ୍ମିକ
ବ୍ୟକ୍ତିତ୍ୱଟି ହୋଇଥିଲେ ପୂର୍ଣ୍ଣ ବିକଶିତ,
ତେବେ ଆତ୍ମଜ୍ଞାନ ଶିକ୍ଷା ଦିଆ ଯାଇପାରେ
ଏଇ ଥିଲା ଭିତ୍ତି ଭୂମି ଯମଙ୍କ ବିଚାରେ ।

ଅସଂଗତ ବାଦ୍ୟ ପରେ ସୁସ୍ୱର ସଙ୍ଗୀତ
ବଜାଇ ପାରିବେ ନାହିଁ କେହି କଦାଚିତ ॥

**ନଚିକେତାଙ୍କର ଅନାଗ୍ରହ**

ଶ୍ୱୋଭାବା ମର୍ତ୍ତ୍ୟସ୍ୟ ଯଦନ୍ତକୈତତ୍
ସର୍ବେନ୍ଦ୍ରିୟାଣାଂ ଜରୟନ୍ତି ତେଜଃ ।
ଅପି ସର୍ବଂ ଜୀବିତମଳ୍ପମେବ
ତବୈବ ବାହାସ୍ତବ ନୃତ୍ୟଗୀତେ ॥ ୨୬॥

''ଆହେ ଯମ'', ନଚିକେତା କହିଲେ ଉତ୍ତରେ,
''ଭୋଗ କରିବାକୁ ମୋତେ ଦିଅ ଯା' ଆଦରେ,
ସେ ଅସ୍ଥାୟୀ – ଆଜି ଅଛି, ନ ଥିବ କାଲିକି,
ସେ ପୁଣି ଇନ୍ଦ୍ରିୟ ଶକ୍ତି କ୍ଷୟ କରେ ନିକି ।
ଲମ୍ବା ପରମାୟୁ କହି ଦିଅ ମୋତେ ଯାହା,
ଏ ଅନନ୍ତ କାଳ ବକ୍ଷେ କେତେ ଅଳ୍ପ ତାହା ।
ତେଣୁ ରଥ ଅଶ୍ୱ ଆଦି ବାହକ ନିକର
ବାଦ୍ୟରତା ଅପ୍ସରାଙ୍କ ନୃତ୍ୟାଦି ଆସର,
ସେ ସବୁକୁ ନିଜ ପାଖେ ରଖନ୍ତୁ ଆପଣ,
ମୋର ସେ ପଦାର୍ଥେ କିଛି ନାହିଁ ପ୍ରୟୋଜନ'' ॥ ୨୬॥

ବହୁ ଲୋଭନୀୟ ବସ୍ତୁ ଦେବାକୁ ସରାଗେ
କହିଥିଲେ ଯମରାଜ ନଚିକେତା ଆଗେ ।

Digitized by srujanika@gmail.com

ଶତବର୍ଷ ଆୟୁଯୁକ୍ତ ପୁତ୍ର ପୌତ୍ରଗଣ,
ସୁବିଶାଳ ସାମାଜ୍ର୍ୟର ଅଧିପତି ପଣ,
ବନ୍ଧୁ ବିତ୍ତ ଅଶ୍ୱ ହସ୍ତୀ ରଥ ଅପସରା
ଭୋଗ ପାଇଁ ଲମ୍ବା ଆୟୁ ଯାଚିଥିଲେ ପରା।
କିନ୍ତୁ ନଚିକେତା ଚିତ୍ତ ରହିଥିଲା ସ୍ଥିର
ବିକ୍ଷୁବ୍ଧ ନ ହୋଇ ସିନ୍ଧୁ ଯେସନେ ଗମ୍ଭୀର।

ଯେ ସକାଶେ ଟଳିଲା ନାହିଁ ତାଙ୍କ ମନ
ଥିଲା ତା'ର ତିନିଗୋଟି ପ୍ରଧାନ କାରଣ।
ପ୍ରଥମେ ଐଶ୍ୱର୍ଯ୍ୟ ଭୋଗ ସବୁ କ୍ଷଣ ସ୍ଥାୟୀ
ଆଜି ଯାହା ଅଛି ରହି କାଲିକି ତା' ନାହିଁ।
ଥିଲେ ଏ ସଂସାରେ ଯେତେ ଯେତେ ନରପତି
ଥଯରେ ପୃଥିବୀ କିଏ ଭୋଗି ପାରିଛନ୍ତି ?
ପାଇଲା ଥୋଇଲା ଧନ କେ' କଲାଣି ଭୋଗ ?
ପ୍ରିୟ ତନୁଟିକି ନିତି ଖାଆଇ ତ ରୋଗ।
ଭୋଗିବା ମଣିଷ ଯଦି ନଶ୍ୱର ଭଙ୍ଗୁର
ସଂସାର ଭୋଗର ତେବେ ଥାଏ କେଉଁ ମୂଲ ?

ଦ୍ୱିତୀୟରେ ଏହି ଭୋଗ ପଦାର୍ଥ ସକଳ,
ମଣିଷର ଇନ୍ଦ୍ରିୟଙ୍କୁ କରନ୍ତି ଦୁର୍ବଳ।
ଏ ବିଷୟ ଭୋଗେ ପ୍ରାଣୀ ଧର୍ମ ବୀର୍ଯ୍ୟ ତେଜ
ଫୁଲ ମଉଳିଲା ପରି ହୁଅଇ ନିସ୍ତେଜ।
ସୁନା ପୁଟ ଦିଆ ଅଳଙ୍କାର ଯେଉଁପରି
ମଳିନ ପଡ଼ଇ ଅଳ୍ପକାଳେ, ଏ ସେପରି।

ଖାଇବାକୁ ରସଗୋଲା କେତେ ମିଠା ଲାଗେ,
ଆଦ୍ୟ ରସଗୋଲା ଖାଏ ମଣିଷ ସରାଗେ।
ପାଞ୍ଚୋଟି ଖାଇବା ପରେ ଆଉ ସେ ମିଷ୍ଟତା
କ୍ରମେ କମି କମି ଯାଏ, ସାଧାରଣ କଥା।
ଖାଇଲେ ଅଧିକ ଆଉ ହୁଏ ଦୁଃଖଦାୟୀ
ପ୍ରଥମର ଆକର୍ଷଣ କିଛି ରହେ ନାହିଁ।
ସୁଖଦାୟୀ ବିଷୟର ଦୁଃଖ ପରିଣତି
ଏପରି ବିବେକବନ୍ତେ ବିଚାର କରନ୍ତି।

Digitized by srujanika@gmail.com

ତୃତୀୟରେ ଯମଙ୍କର ଲମ୍ବା ଆୟୁ ଦାନ,
ମହାକାଳ ବକ୍ଷେ କଳାକାଇ ପରିମାଣ ।
କାଳର ଅନନ୍ତ ବକ୍ଷେ ବ୍ରହ୍ମାଙ୍କ ଜୀବନ
ଅତି ଅଳ୍ପ ବୋଲି ଯହିଁ ହୁଅଇ ଗଣନ,
ସେତେବେଳେ ମଣିଷର କଥା କିବା ଛାର,
ଲମ୍ବା ଆୟୁରେ ବି ପଡ଼େ ସମାପ୍ତିର ଗାର ।
ଷାଠିଏ ସତୁରୀ ଅବା ଶହେ ବରଷରେ
ମଣିଷର ଆୟୁ ସୀମା — ସେତିକିରେ ସରେ ।
ଅନ୍ତହୀନ ଏ ଅନନ୍ତ କାଳ ତୁଳନାରେ
ଶହେ କି ବିଶାଶେ ବର୍ଷ ଆସେ କି ଲେଖାରେ ?

ମରଲୋକେ ମଣିଷର ଜୀବନ କ୍ଷଣିକ
ସରଗରେ ସୀମା ତା'ର କେବଳ ଅଧିକ ।
ଅମୃତତ୍ୱ ବୋଲି ତାହା କଳ୍ପିତ ସେଠାରେ
ଟିକିଏ ଅଧିକ ବୋଲି କୁହାଯାଇ ପାରେ ।
ପୁଣ୍ୟ କ୍ଷୀଣେ ପୁଣି ମର୍ତ୍ତ୍ୟେ ପ୍ରାଣୀ ବାହୁଡ଼ଇ
ସ୍ୱର୍ଗ ସୁଖ ଅମରତ୍ୱ ସେ ଲାଗି ନୁହଁଇ ।
ସରଗେ କେବଳ ମାତ୍ର ଏହି ଅମରତା,
କଳ୍ପାନ୍ତେ ବିନାଶ ହେବା ନିଶ୍ଚିତ ଏ କଥା ॥

**ନ ବିତ୍ତେନ ତର୍ପଣୀୟୋ ମନୁଷ୍ୟୋ**
**ଲପ୍ସ୍ୟାମହେ ବିତ୍ତମଦ୍ରାକ୍ଷ୍ମ ଚେତ୍ ତ୍ୱା ।**
**ଜୀବିଷ୍ୟାମୋ ଯାବଦୀଶିଷ୍ୟସି ତ୍ୱଂ**
**ବରସ୍ତୁ ମେ ବରଣୀୟଃ ସ ଏବ ॥୨୭॥**

"ଧନ ଦଉଲତ ଅବା ବିତ୍ତ ବଇଭବ,
ମଣିଷକୁ ତୃପ୍ତି କେବେ ଦିଏ ନାହିଁ ଲବ ।
ଯଦି ଆପଣଙ୍କୁ କରି ପାରିଛି ଦର୍ଶନ
ତେବେ ତ ଅବଶ୍ୟ ଧନ ହୋଇବ ଅର୍ଜନ ।

Digitized by srujanika@gmail.com

ଆପଣ ହିଁ ଯେତେ କାଳ କରିବେ ଶାସନ,
ସେତେକାଳ ମୁଁ ଜୀବିତ ରହିବି ରାଜନ।
ପରନ୍ତୁ ପୂର୍ବୋକ୍ତ ସେହି ବରଟି ମୋହର
ଅତି ବରଣୀୟ ଜାଣ ଧର୍ମ ନରବର'' ॥୨୭॥

ଧନ ରତ୍ନେ ବହୁ ସୁଖ ସୁବିଧା ସୁଯୋଗ
ଏ ମଣିଷ ଜୀବନରେ କରିପାରେ ଭୋଗ।
କାମନାର ବସ୍ତୁରାଜି ପାଇବା ସକାଶେ
ସମସ୍ତେ ଇଚ୍ଛନ୍ତି ଧନ ରଖିବାକୁ ପାଶେ।

ଯମ ଯାଚିଥିବା ଯେତେ ଭୋଗ ସୁଖମାନ,
ସକାରଣେ ନଚିକେତା କଲେ ପ୍ରତ୍ୟାଖ୍ୟାନ।
ଅଧିକ କାରଣ ଦେଇ ପୁଣି କହୁଛନ୍ତି –
''ହେ ଯମ, ମଣିଷେ ଧନେ ତୃପ୍ତି ନ ଲଭନ୍ତି।
ପୁଣି ଯେଣୁ ପାଇଅଛି ମୁଁ ତବ ଦର୍ଶନ,
ଦାରିଦ୍ର୍ୟ ଓ ଅଳ୍ପାୟୁଷ ମୋ ପାଶେ କଅଣ ?

ଦୁଃଖର ମୁକୁଟ ପିନ୍ଧି ଆସେ ସୁଖ ଧନେ,
ଏହି ଦୁଃଖ-ମୁକୁଟକୁ ପିନ୍ଧିବି କେସନେ ?
ଆୟୁଷ ସମ୍ପତ୍ତି ତେଣୁ ମାଗିବି କିମ୍ପାଇଁ
ଆଉ ତିଳେ ପ୍ରଲୋଭିତ ମୋତେ କରନାହିଁ।
ଯମ ପଦେ ଯେତେ କାଳ ରହିବେ ଆପଣ
ବିତ୍ତ ଆୟୁ ହେବ ନାହିଁ ମୋ ଚିନ୍ତା କାରଣ।
ତଥାପି ମାଗୁଛି ମୁହିଁ ମୋର ପୂର୍ବ ବର,
ଦୟାକରି ଯମରାଜ ଆଶା ପୂର୍ଣ୍ଣ କର॥''

ଅଜୀର୍ଯ୍ୟତାମମୃତାନାମୁପେତ୍ୟ
ଜୀର୍ଯ୍ୟନ୍ମର୍ତ୍ତ୍ୟଃ କ୍ୱଧଃସ୍ଥଃ ପ୍ରଜାନନ୍।
ଅଭିଧ୍ୟାୟନ୍ ବର୍ଣ୍ଣରତିପ୍ରମୋଦାନ୍
ଅତିଦୀର୍ଘେ ଜୀବିତେ କୋ ରମେତ ॥୨୮॥

''ଜରାମୃତ୍ୟୁଶୀଳ କେଉଁ ନିମ୍ନ ପୃଥ୍ୱୀବାସୀ
ଅଜର ଅମର ଦେବଗଣ ପାଶେ ଆସି,

Digitized by srujanika@gmail.com

ଜାଣି ତାଙ୍କ ପାଖୁଁ ମିଳେ ଶ୍ରେଷ୍ଠ ସିଦ୍ଧି ଲାଭ,
ଜାଣି ଦେହ କ୍ରୀଡ଼ା ସୁଖ ଅନିତ୍ୟ ସ୍ୱଭାବ,
ବିଚାରି ମନରେ ମର୍ତ୍ତ୍ୟ ବ୍ୟର୍ଥ ବଇଭବ
ଲମ୍ବା ଆୟୁ ଲଭି କେହ୍ନେ ଲଭିବ ଆନନ୍ଦ?'' ॥୨୮॥

ଦେହ ଭୋଗ ପାଇଁ ଦେବାଙ୍ଗନା ପ୍ରଯୋଜନ,
ଟଳାଇ ପାରିଲାନି ନଚିକେତା ମନ।
ସେ କହିଲେ, ''ଯମରାଜ, ମୋ ନିଜ ବିଷୟେ
ଯେତିକି ହୋଇଛି ଜ୍ଞାନ କହୁଛି ବିନୟେ।

ମୁହିଁ ତ ପୃଥିବୀବାସୀ ଏ ମର ଦେହରେ
ଜରା ବ୍ୟାଧି ଶୋକ ଦୁଃଖ ସବୁ ଭୋଗ କରେ।
ଥରକୁ ଥର ମୁଁ ଜନ୍ମ ମୃତ୍ୟୁ ଚକ୍ରେ ପଡ଼ି,
ସହିବି ଅନନ୍ତ ଦୁଃଖ କାଳ କାଳ ଧରି।
ଆଉ ବି ମୁଁ ଜାଣେ ଏଇ ଅନିତ୍ୟ ସଂସାରେ
ଯେତେ ଭୋଗ ବିଳାସର ବସ୍ତୁ ଥାଇ ପାରେ
ସବୁ ତ ଅନିତ୍ୟ ଆଉ ଅଳିକ ଅସାର
ନ ପାରନ୍ତି କରି ଭବ ଚକ୍ରରୁ ଉଦ୍ଧାର।

ଭାଗ୍ୟବଶେ ମୋତେ ମିଳିଅଛନ୍ତି ଆପଣ,
ଦୟାବହି କରିଛନ୍ତି କୃପାର ଭାଜନ;
ଆପଣଙ୍କ ଠାରୁ କିଛି ଶ୍ରେଷ୍ଠ ବଇଭବ
ଲାଭ ହେବ— ଏହି ମୋର ଦୃଢ଼ ଅନୁଭବ।
ମୋତେ ବର ଦେବାପାଇଁ ଚାହାନ୍ତି ଆପଣ,
ବଡ଼ଲୋକମାନଙ୍କର ଏଇ ବଡ଼ ପଣ।
ତେଣୁ ମୁଁ କାହିଁକି ମାଗି ମିଥ୍ୟା ସୁଖ ଭୋଗ,
ଜାଣି ଜାଣି ହରାଇବି ଏଡ଼େ ବଡ଼ ଯୋଗ?
ପ୍ରାର୍ଥନା କରୁଛି ତେଣୁ ମୁଁ ଏପରି ବର
ଜରା ମୃତ୍ୟୁ ଦୁଃଖ ଯେହ୍ନେ କଟିବ ମୋହର।

କଅଣ ସଂସାର ସୁଖ ଯିଏ ଜାଣେ ନାହିଁ,
ସେ ଅଳ୍ପ ବିଳାସ ଭୋଗ ସୁଖେ ଭୁଏ ବାଇ।

Digitized by srujanika@gmail.com

ଅନିତ୍ୟର ଅସାରତା ଜ୍ଞାନ ବିଷୟରେ,
ଉପଲବ୍ଧି ମୋର ଯେଣୁ ହୋଇଛି ଅନ୍ତରେ,
ତେଣୁ ଭୋଗ୍ୟ ବସ୍ତୁ ଯାହା ଦିଅନ୍ତି ଆପଣ
କିଛି ମାତ୍ର ତହୁଁ କରି ପାରୁନି ଗ୍ରହଣ ।

ଆପଣ ଚାହାନ୍ତି ଦେବେ ସୁଦୀର୍ଘ ଜୀବନ,
ତହିଁରେ ବି ହେଉନାହିଁ ସନ୍ତୋଷ ମୋ ମନ ।
ମରଣ-ମନ୍ଦିରେ ତୂଳୀ ତଳପ ସଜାଇ
କେତେ ଦିନ ପାଇଁ ଅବା ମନ ହେବ ବାଇ ?
ଏ ଚିତ୍ର ବିଚିତ୍ର ନର ପ୍ରତିମା ସୁନ୍ଦର
ଦେଖିଲେ ଭିତର ଚିରି ଲାଗିବ ତ ଡର ।
ଝୁଣ୍ଟି ପଡ଼ିଗଲେ ତଳେ ଉଠି ନ ପାରଇ
ଝଡ଼ିଲା ପତ୍ର କି ବୃକ୍ଷେ ଲାଗିଅଛି କାହିଁ ?
କି ଟାଣ କରିବ କିଏ କହି ବା ମୋହର
ଟଳି ପଡ଼ିଗଲେ କେହି ନ ହେବେ ନିଜର ।
ତହିଁରେ ସଜାଇ ଠଣ ସୁନ୍ଦର ଏ ଦିହ,
ଖୁଆଇବା ତାକୁ ପ୍ରୀତି ସରାଗ ସିନିହ,
ନବ ନବ ଅଙ୍ଗ ଶୋଭା ବିଳାସ ବ୍ୟସନ
ସରଗ ଅଙ୍ଗନାଙ୍କର ମଧୁ ଆଲିଙ୍ଗନ,
ସବୁ ସାର ହୀନ ଜାଣି କେହ୍ନେ ଜ୍ଞାନୀ ଜନ
ଚାହିଁବ ଜୀଇବା ପାଇଁ ସୁଦୀର୍ଘ ଜୀବନ ?''

ଯସ୍ମିନ୍ନିଦଂ ବିଚିକିତ୍ସନ୍ତି ମୃତ୍ୟୋ
ଯତ୍ ସାମ୍ପରାୟେ ମହତି ବ୍ରୂହି ନସ୍ତତ୍ ।
ଯୋଽୟଂ ବରୋ ଗୂଢମନୁପ୍ରବିଷ୍ଟୋ
ନାନ୍ୟଂ ତସ୍ମାନ୍ନଚିକେତା ବୃଣୀତେ ॥୨୯॥

''ଆହେ ଯମରାଜ ଯେଉଁ ତତ୍ତ୍ୱ ବିଷୟରେ
ସଂଶୟ ଜାଗଇ ସବୁ ଲୋକଙ୍କ ମନରେ,
ଯେ ତତ୍ତ୍ୱ ଦିଅଇ ପରଲୋକର ଧାରଣା
ସେହି ତତ୍ତ୍ୱ ଏବେ ମୋତେ କହ ମହାମନା ।

Digitized by srujanika@gmail.com

ମୋର ମାଗିଥିବା ଏହି ତତ୍ତ୍ୱ ଗୂଢ଼ ଅତି –
ଗହନ ତ – ନାହିଁ ପାଏ ଚିନ୍ତାର ଶକତି ।
ମାଗି ନ ପାରଇ ନଚିକେତା ଭିନ୍ନ କଥା,
ଦିଅ ଆତ୍ମ ତତ୍ତ୍ୱ ଜ୍ଞାନ ହେ ମୃତ୍ୟୁ ଦେବତା'' ॥ ୨୯ ॥

ନିଜ ସଂକଳ୍ପରେ ରହି ଦୃଢ଼ ଅବିଚଳ
ନଚିକେତା ଶେଷ କଥା କହିଲେ ନିଚ୍ଛର ।
''ଅନିତ୍ୟ ଦରବେ ନାହିଁ ମୋ ମନ କିଞ୍ଚିତ,
କିଆଁ ଯମରାଜ ମୋତେ କର ପ୍ରଲୋଭିତ ।
ତବ ପାଶେ ମାଗୁଣି ମୋ ଆତ୍ମ-ଜ୍ଞାନ ପାଇଁ,
ଭିନ୍ନ କଥା କହି ମନ ଭୁଲାଅ କିମ୍ପାଇଁ ?

ମୃତ୍ୟୁ ଅନ୍ତେ ପରଲୋକେ ଆତ୍ମାର କି ଗତି ?
ଯେ ବିଷୟେ ଲୋକେ ମନେ ସନ୍ଦେହ କରନ୍ତି,
ସେହି ଜ୍ଞାନ ମଣିଷର ଅତି ପ୍ରୟୋଜନ
ଯେବେ ସେ କରଇ ପରଲୋକକୁ ଗମନ ।
ଯେ ତତ୍ତ୍ୱ ଅତ୍ୟନ୍ତ ଗୂଢ଼, ଅତୀବ ଗହନ,
ତାହାକୁ ଜାଣିବାପାଇଁ କରୁଅଛି ମନ ।
ଏଥୁଁ ଭିନ୍ନ ନଚିକେତା କିଛି ନ ମାଗଇ,
କେବଳହିଁ ଆତ୍ମ-ଜ୍ଞାନେ ସେ ଅଳି କରଇ'' ॥

॥ କଠୋପନିଷଦ ପ୍ରଥମ ଅଧାୟର ପ୍ରଥମ ବଲ୍ଲୀ ସମାପ୍ତ ॥

Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

## ଦ୍ୱିତୀୟ ବଲ୍ଲୀ

### ଶ୍ରେୟ ପ୍ରେୟ ବିବେକ

ଅନ୍ୟଚ୍ଛ୍ରେୟୋଽନ୍ୟଦୁତୈବ ପ୍ରେୟ–
ସ୍ତେ ଉଭେ ନାନାର୍ଥେ ପୁରୁଷଂ ସିନୀତଃ ।
ତୟୋଃ ଶ୍ରେୟ ଆଦଦାନସ୍ୟ ସାଧୁ
ଭବତି ହୀୟତେଽର୍ଥାଦ୍ୟ ଉ ପ୍ରେୟୋ ବୃଣୀତେ ॥୧॥

''ଶ୍ରେୟ ଭିନ୍ନ ପ୍ରେୟ ଭିନ୍ନ ନିଶ୍ଚିତ ଯେସନେ
ଏହି ବେନିଙ୍କର କାର୍ଯ୍ୟ ପୃଥକ ତେସନେ ।
ହୋଇଲେ ବି ଭିନ୍ନ ବେନିଙ୍କର ପ୍ରୟୋଜନ
ଉଭୟେ ତ ମଣିଷକୁ କରନ୍ତି ବନ୍ଧନ ।
ଏ ବେନିରୁ ଯେ ଶ୍ରେୟକୁ କରନ୍ତି ବରଣ
ତାହାଙ୍କର ହୋଇଥାଏ କଲ୍ୟାଣ ସାଧନ ।
ଆଉ ଯେଉଁମାନେ ପ୍ରେୟ ବରଣ କରନ୍ତି
ପ୍ରକୃତ ଲକ୍ଷ୍ୟରୁ ସେହୁ ବିଚ୍ୟୁତ ହୁଅନ୍ତି'' ॥୧॥

ଶିଷ୍ୟକୁ ପରୀକ୍ଷା କରି ସର୍ବତୋଭାବରେ
ଯମରାଜ ଯେବେ ଜାଣି ପାରିଲେ ଶେଷରେ,
ନଚିକେତା ହେବ ଯୋଗ୍ୟ ଜ୍ଞାନ ଅଧିକାରୀ
ତେଣୁ ତାକୁ ଆତ୍ମତତ୍ତ୍ୱ କହିଲେ ବିସ୍ତାରି ।
''ଶୁଣ ବାବୁ ନଚିକେତା ଶ୍ରେୟ ପ୍ରେୟ କଥା,
ଏ ଦୁଇର ପ୍ରୟୋଜନ, ଦୁଇର ଭିନ୍ନତା ।
ମଣିଷର ଦୁଇଗୋଟି ବିଷୟେ ନିରତେ
ହୃଦୟେ କାମନା ଲାଖି ରହଇ ଜଗତେ ।
ତହିଁରୁ ଗୋଟିଏ ଶ୍ରେୟ ଅନ୍ୟ ଗୋଟି ପ୍ରେୟ
ମଣିଷ ଜୀବନେ ସେ ତ ହୋଇଥାଏ ଧ୍ୟେୟ ।

Digitized by srujanika@gmail.com

ଆପାତ ମଧୁର ଯାହା ବୋଲାଏ ତା' ପ୍ରେୟ
ପରିଣାମେ ଶୁଭଙ୍କର ଫଳ ଦିଏ ଶ୍ରେୟ ।
ପ୍ରେୟ ଛାଡ଼ି ଶ୍ରେୟକୁ ଯେ ନ କରେ ବରଣ
ଆତ୍ମ-ଜ୍ଞାନ ଲଭିବାକୁ ସେ ନୁହେଁ ଭାଜନ ।

ଆମ ଇନ୍ଦ୍ରିୟର ଯାହା ସବୁ ପ୍ରିୟକର
ରୂପ ରସ ସ୍ପର୍ଶ ଶବ୍ଦ ଗନ୍ଧାଦି ନିକର,
ହୃଦ ପ୍ରୀତିକର ପ୍ରିୟ ପୁତ୍ର କଳତ୍ରାଦି
ପରଲୋକ ପ୍ରୀତିକର ସୁଖ ଓ ସ୍ୱର୍ଗାଦି,
ଚତୁର୍ବର୍ଗ ଫଳରୁ ତ ଧର୍ମ ଅର୍ଥ କାମ
ଏଇ ତିନି ଫଳ ହୁଏ ପ୍ରୀତିକର ଆମ ।

ତୁଚ୍ଛ ଭୋଗ ଦରବରେ ନ ରଖି ଆସକ୍ତି
ଆତ୍ମ-ଜ୍ଞାନେ ଯୁକ୍ତ କରି ଶୁଦ୍ଧ ବୁଦ୍ଧ ମତି
ଭବ ଜରା ମୃତ୍ୟୁ ଶୋକ ଦୁଃଖରୁ ମୁକତି
ଲଭିବାକୁ ଶ୍ରେୟ ପଥ ଜ୍ଞାନୀଏ କହନ୍ତି ।

ଶ୍ରେୟ ହେଉ ପ୍ରେୟ ହେଉ; ଗୋଟିକ ନିମନ୍ତେ
ମଣିଷ ସତତ କରେ ଯତନ ଜଗତେ ।
ତେଣୁ ଶ୍ରେୟ ପ୍ରେୟ ଦ୍ୱାରା ପ୍ରତ୍ୟେକ ଜଗତେ
ଥାଆନ୍ତି ଆବଦ୍ଧ ହୋଇ ପୁତ୍ର ଅବିରତେ ।
ସଂସାରେ ଯେ ଶ୍ରେୟ ପଥ କରନ୍ତି ଗ୍ରହଣ
ଜୀବନେ ତାଙ୍କରି ହୁଏ କଲ୍ୟାଣ ସାଧନ ।
ସେ ଜରା ମରଣ ଦୁଃଖ ଶୋକ ହୋଇପାର,
ଏ ଲୋକେ ଅମୃତ ସୁଖ ଲଭନ୍ତି ଅପାର ।
ଅନ୍ୟ ଦିଗେ ପ୍ରେୟ ପଥେ ରମନ୍ତି ଯେ ନର
ଅବଶ୍ୟ ଲଭନ୍ତି ସୁଖ ସମୃଦ୍ଧି ନିକର ।
କିନ୍ତୁ ପରମାର୍ଥ ପଥୁଁ ହୁଅଇ ପତନ
ଭୋଗନ୍ତି ଅନେକ ଦୁଃଖ ଜରା ଓ ମରଣ ।
ଜନମ ମରଣ ଚକ୍ରେ ସେହି ବାରମ୍ବାର
ପଡ଼ି ଦୁଃଖେ ଶୋକେ ଘାରି ହୁଅନ୍ତି ଅପାର ॥"

Digitized by srujanika@gmail.com

ଶ୍ରେୟଶ୍ଚ ପ୍ରେୟଶ୍ଚ ମନୁଷ୍ୟମେତ –
ସ୍ତୌ ସମ୍ପରୀତ୍ୟ ବିବିନକ୍ତି ଧୀରଃ ।
ଶ୍ରେୟୋ ହି ଧୀରୋଽଭି ପ୍ରେୟସୋ ବୃଣୀତେ
ପ୍ରେୟୋ ମନ୍ଦୋ ଯୋଗକ୍ଷେମାଦ୍ ବୃଣୀତେ ॥୨॥

''ହୋଇଲେ ବି ଶ୍ରେୟ ପ୍ରେୟ ବେନି ବିପରୀତ
ଉଭୟେ ମଣିଷ ପାଶେ ସଦା ଉପସ୍ଥିତ ।
ବିବେକୀ ପୁରୁଷ କରି ସମ୍ୟକ ବିଚାର
ଦୁହିଁକୁ ପୃଥକ କରି ଶ୍ରେୟ କରେ ସାର ।
ନ ପାଇବା ଦରବକୁ ପାଇବା ସକାଶେ,
ପାଇଥିବା ଦରବକୁ ସାଇତିବା ଆଶେ,
ଅଜ୍ଞାନୀ କରନ୍ତି ଏହି ପ୍ରେୟକୁ ବରଣ
ଯହୁଁ ସୁଖ ଶିରୀ ଭୋଗ ହୁଏ ଅରଜନ'' ॥୨॥

''ଶ୍ରେୟ ପ୍ରେୟ ପଥ ଯାହା ଆଗରୁ ବର୍ଣ୍ଣିତ,
ତାହା ଏ ମଣିଷ ଆଗେ ମୁକ୍ତ ସୁବିଦିତ ।
ଏ ମଣିଷ ଇଚ୍ଛାକଲେ ଶ୍ରେୟ ପଥ ଧରେ
ଆଉ ବା ଇଚ୍ଛାରେ କିଏ ପ୍ରେୟକୁ ଆଦରେ ।
ବହୁତ ବରନ୍ତି ଶ୍ରେୟ ଠାରୁ ପ୍ରେୟ ପଥ
ଏପରି ହୁଅଇ ମାତ୍ର ଅଜ୍ଞତା ବଶତଃ ।
ଶ୍ରେୟ ପ୍ରେୟ ବେନି ମନ ଆକାଙ୍କ୍ଷା ରୂପରେ
ନିଇତି ଥାଆନ୍ତି ଏଇ ମଣିଷ ଅନ୍ତରେ ।
ଶ୍ରେୟ ତ କଲ୍ୟାଣକର ପରିଣାମେ ସୁଖ,
ପ୍ରେୟ ଆଦ୍ୟେ ମନୋହର ଅନ୍ତେ ଆଣେ ଦୁଃଖ ।
ଉଭୟେ ମିଶ୍ରିତ ହୋଇ ମଣିଷର ପାଶେ
ଚିତ୍ତକୁ ବାଉଳା କରେ ବାପ ଅନାୟାସେ ।
ଆପାତ ମିଶ୍ରଣେ କେତେ କେତେ କା'ର ଭାଗ
ସହଜେ ପାରେନି କରି କେହି ଭାଗ ଭାଗ ।

ବୁଦ୍ଧି ଶୁଦ୍ଧ ସୁନିର୍ମଳ କାମନା ରହିତ
ହେଲେ ଅବା ଭାଗ ଭାଗ କରିବ କେହି ତ ।

Digitized by srujanika@gmail.com



ଯେହ୍ନେ ଭିନ୍ନ ପାତ୍ରେ ଚା' କଫି ଦୁଧ ମଦ
ଥିଲେ କେଉଁ ବ୍ୟକ୍ତି କରେ କାହାକୁ ପସନ୍ଦ ।
ପ୍ରେୟ ଭାବି ଯେ କରଇ ମଦକୁ ଆଦର
ଜାଣିବ ସେ ଅବିବେକୀ ଜ୍ଞାନ ହୀନ ନର ।
ଶ୍ରେୟ ଭାବି ଯେ କରଇ ମାତ୍ର ଦୁଧ ପାନ,
ଜାଣିବ ସେ ସୁବିବେକୀ ଧୀର ଜ୍ଞାନବାନ ।

ସେଥିପାଇଁ ଅବିବେକୀ ମନ୍ଦ ବୁଦ୍ଧି ଜନେ
ପ୍ରକୃତ ଶ୍ରେୟକୁ ଜାଣି ନ ପାରି ଜୀବନେ,
ପ୍ରେୟକୁ ବିଚାରି ଶ୍ରେୟ କରନ୍ତି ବରଣ
ବିତ୍ତ ଓ ବନିତା ଭୋଗେ କଟାଇ ଜୀବନ ।

ସମସ୍ତେ କହନ୍ତି ସୁଖ, କିନ୍ତୁ କେଉଁ ସୁଖ ?
ନିତ୍ୟ ନା ଅନିତ୍ୟ – ଯାହା ବୋହି ଆଣେ ଦୁଃଖ ।
ନିତ୍ୟ ଓ ଅନିତ୍ୟ ସୁଖେ ପାର୍ଥକ୍ୟ କିପରି
ସାଧାରଣ ଅଜ୍ଞ ଜନେ ନ ପାରନ୍ତି ଧରି ।

କିନ୍ତୁ ଜ୍ଞାନୀ ଶ୍ରେୟ ପ୍ରେୟ ବିବେଚନା କରି
ଉଭୟର ଦୋଷ ଗୁଣ ପାରିଥାନ୍ତି ଧରି ।
ପୃଥକ କରଇ ଯେହ୍ନେ ହଂସ କ୍ଷୀର ନୀର
ଶ୍ରେୟକୁ ପୃଥକ ତେହ୍ନେ କରିଥାନ୍ତି ଧୀର ।
ସେ ଜାଣନ୍ତି, ଆତ୍ମା କେବେ ନୁହଇ ଏ ଦିହ,
ଦେହ ଭୋଗ ସୁଖ ତେଣୁ ନ ଲାଗଇ ପ୍ରିୟ ।
ଆତ୍ମ ଲାଭେ ଯେଣୁ ସିଏ ସଦା ଦୃଢ଼ ବ୍ରତ,
ଭୋଗ ଦରବରୁ ତେଣୁ ହୁଅନ୍ତି ବିରତ ।''

ସ ତ୍ୱଂ ପ୍ରିୟାନ୍ ପ୍ରିୟରୂପାଂଶ୍ଚ କାମା–
ନଭିଧ୍ୟାୟନ୍ ନଚିକେତୋଽତ୍ୟସ୍ରାକ୍ଷୀଃ ।
ନୈତାଂ ସୃଙ୍କାଂ ବିତ୍ତମୟୀମବାପ୍ତୋ
ଯସ୍ୟାଂ ମଜ୍ଜନ୍ତି ବହବୋ ମନୁଷ୍ୟାଃ ॥୩॥

Digitized by srujanika@gmail.com

''ପ୍ରିୟ ନଚିକେତା, ତୁମେ ପ୍ରିୟ ପଦାର୍ଥର
ପୁଣି ପ୍ରିୟରୂପ କାମ୍ୟ ବସ୍ତୁ ନିଚୟର,
ଅସାରତା ଅନିତ୍ୟତା ବିଚାରି ମନରେ
ସବୁ ତ୍ୟାଗ କରି ଦେଲ ସମ୍ପୂର୍ଣ୍ଣ ଭାବରେ।
ଧନ ଦଉଲତମୟ ସଂସାର ପଥରେ
ଯହିଁରେ ମଜ୍ଜନ୍ତି ବହୁ ମଣିଷ ମଦରେ
ତାହାକୁ ବି ପୁତ୍ର ତୁମେ କରିନ ଗ୍ରହଣ
ବିଚାର ବୁଦ୍ଧିରେ କରି ଶ୍ରେୟକୁ ପୋଷଣ'' ।।୩।।

ଏହି ଶ୍ଳୋକେ ଯମରାଜ ଅତୁଳ ଆଦରେ
ପ୍ରିୟ ନଚିକେତାଙ୍କର ଗୁଣଗାନ କଲେ।
ତାଙ୍କର ବିଚାର ବୁଦ୍ଧି-ମରାକୁ ପ୍ରଶଂସି
ଅଶେଷ ହରଷ ଭରେ କହିଲେ ବିହସି --

''ଆରେ ପୁତ୍ର ନଚିକେତା, ତୁହି ଯେ ସେହି ତ,
ଯାହାକୁ ମୁଁ କରିଅଛି ବହୁ ପ୍ରଲୋଭିତ।
ଯେତେ ପ୍ରିୟ ପ୍ରିୟରୂପ କାମ୍ୟ ପଦାର୍ଥରେ
ତିଳେ ତୋର ଶ୍ରଦ୍ଧା ଜାତ ହୋଇନି ମନରେ।

ଯାଚିଲି ଶତାୟୁ ପୁତ୍ର ପୌତ୍ରାଦି ଅନେକ,
ସୁବିସ୍ତୀର୍ଣ୍ଣ ଭୂମଣ୍ଡଳ ଇଚ୍ଛାରେ ଯେତେକ,
ବହୁ ଆୟୁ ଦେଲି, ଦେଲି ରାଜ ସିଂହାସନ,
ଏଥିରେ ବି ତିଳେ ତୋର ବଳିଲାନି ମନ।
ଯାଚିଲି ମୁଁ ରତ୍ନହାର, ସ୍ୱର୍ଗ ଅପସରା,
ଭୋଗ କରିଥାନ୍ତୁ ଭୋଗ୍ୟ ଐଶ୍ୱର୍ଯ୍ୟ ପସରା,
ତଥାପି କାହିଁରେ ହେଲୁ ନାହିଁ ପ୍ରଲୋଭିତ
ବରଂ ନିଜ କଥାରେ ତୁ ଦୃଢ଼ କଲୁ ଚିତ୍ତ।

ବିତ୍ତ ଓ ବନିତା ଭୋଗେ ବହୁଲୋକ ବାଇ
ଭୋଗ ବିନା ତାଙ୍କୁ ଆଉ କିଛି ଦିଶେ ନାହିଁ।
ଧନ ଦଉଲତ ଲାଭ, ବୃଦ୍ଧି ସଂରକ୍ଷଣ,
ଏ ଭଳି ଆଦର୍ଶ କରି ଜୀବନେ ଗ୍ରହଣ,
ଭୋଗେ ବୁଡ଼ି ଏ ସଂସାରେ କାଟନ୍ତି ଜୀବନ
ଆଜି ଅଛି, କାଲିରେ ବା କେଉଁ ପ୍ରୟୋଜନ?

Digitized by srujanika@gmail.com

ଏପରି ସଂସାର ପଥ ନ କରି ଗ୍ରହଣ,
ବାପ, ଶ୍ରେୟ ପଥେ ତୁହି ଲଗାଇଲୁ ମନ।
ପ୍ରେୟ ଛାଡ଼ି ଶ୍ରେୟକୁ ତୁ କରିଲୁ ବରଣ
ତେଣୁ ଆତ୍ମ-ଜ୍ଞାନ ପାଇଁ ଯୋଗ୍ୟ ତୁ ନନ୍ଦନ।''

ଦୂରମେତେ ବିପରୀତେ ବିଷୂଚୀ
ଅବିଦ୍ୟା ଯା ଚ ବିଦ୍ୟେତି ଜ୍ଞାତା ।
ବିଦ୍ୟାଭୀପ୍ସିନଂ ନଚିକେତସଂ ମନ୍ୟେ
ନ ତ୍ୱା କାମା ବହବୋଽଲୋଲୁପନ୍ତ ॥୪॥

''ଏହି ଶ୍ରେୟ ପ୍ରେୟ ଦୁଇ କଥା ଜଗତରେ
ସୁବିଦିତ ବିଦ୍ୟା ଆଉ ଅବିଦ୍ୟା ନାମରେ।
ଜାଣିବ ଏ ଦୁଇ ଅତିଶୟ ବିପରୀତ
ପୁଣି ଭିନ୍ନ ଫଳଦାୟୀ ଅଟଇ ନିଶ୍ଚିତ।

ନଚିକେତା ମୁହିଁ ବିଚାରଇ ମୋର ମନେ
ତୁ ପ୍ରକୃତ ବିଦ୍ୟା ଅଭିଳାଷୀ ଏ ଭୁବନେ।
ବହୁ ଭୋଗ୍ୟ କାମ୍ୟ ରମ୍ୟ ବସ୍ତୁ ରତ୍ନମାଳି
ଶ୍ରେୟ ପଥୁଁ ପୁତ୍ର ତୋତେ ପାରିଲାନି ଟାଳି'' ॥୪॥

''ଯେଉଁମାନେ ଜ୍ଞାନବାନ ସୁବିବେକୀ ଜନ,
ଶ୍ରେୟ ପଥ ପାଇଁ ଇଚ୍ଛା କରନ୍ତି ପୋଷଣ।
ଅଜ୍ଞାନୀଏ ପ୍ରେୟ ପଥ କରନ୍ତି ବରଣ
କାଟନ୍ତି ବିଳାସ ଭୋଗେ ସମଗ୍ର ଜୀବନ।

ଏ ଦେହକୁ ଆତ୍ମା ବୋଲି ବିଚାରେ ଅଜ୍ଞାନୀ
ଦେହ ଭିନ୍ନ ଆତ୍ମା କଥା ନ ପାରଇ ଜାଣି।
ଭିନ୍ନ ଦେହେ ଭିନ୍ନ ଆତ୍ମା କରନ୍ତି ନିବାସ
ଅଜ୍ଞାନୀ ମନରେ ଥାଏ ଏପରି ବିଶ୍ୱାସ।

ଜ୍ଞାନୀଏ ଦେଖନ୍ତି ଏକ ଆତ୍ମା ଭିନ୍ନ ଘଟେ,
ଦେହ ମରେ ଆତ୍ମା କିନ୍ତୁ ସତତ ପ୍ରକଟେ।

Digitized by srujanika@gmail.com

ଘଟୁଁ ଘଟ ବ୍ଦଳଇ ଆତ୍ମା ନ ବଦଳେ,
ଏକ ଆତ୍ମା ଅବିନାଶୀ ବ୍ୟାପ୍ତ ସର୍ବସ୍ଥଳେ ।

କିନ୍ତୁ ଶ୍ରେୟ ପାଇଁ ସୁଖ ସମ୍ପତ୍ତି ବର୍ଜନ,
ତ୍ୟାଗ ଓ ବୈରାଗ୍ୟମୟ ଜୀବନ ଯାପନ,
ଏ ସବୁ କି ହୁଏ ଲୋଡ଼ା କଠୋର ନିୟମେ ?
ଏହି ପ୍ରଶ୍ନ ଉଠିଥାଏ ସଭିଙ୍କ ମରମେ ।

ପୁରୁଷାର୍ଥ ଲାଭ ପାଇଁ ହୁଏ ପ୍ରୟୋଜନ,
ତ୍ୟାଗ ସମନ୍ୱିତ ସାଧୁ ସାତ୍ତ୍ୱିକ ଜୀବନ ।
କିନ୍ତୁ ଏହି ତ୍ୟାଗ କେବେ ନୁହଇ ବାହ୍ୟିକ
ଏ ତ୍ୟାଗ ଆସକ୍ତି ତ୍ୟାଗ୍ ଆଉ ଆନ୍ତରିକ,
ବିଷୟେ ଆସକ୍ତ ହେବା, ବିଷୟାରେ ଲୋଭ
ଉପୁଜାଏ ମଣିଷର ହୃଦୟରେ କ୍ଷୋଭ ।
ତେଣୁ କେବେ ନ କରିବ ବିଷୟେ କାମନା
ଆପେ ସେ ବିଷୟ ଆସୁ, କେ କରୁନି ମନା ।
ବରଣୀୟ ପ୍ରାର୍ଥନୀୟ ନୁହଇ ବିଷୟ
ତ୍ୟାଗ ଅର୍ଥ ଅନାସକ୍ତ ହେବା ଅତିଶୟ ।
ବିଷୟରେ ବୁଡ଼ି ମଧ ଅନାସକ୍ତ ଜନ
ସହଜେ କରନ୍ତି ଲାଭ ଏ ତତ୍ତ୍ୱ ଦର୍ଶନ ।''

ନଚିକେତା ଉପାଖ୍ୟାନ ଦିଏ ଏ ସୂଚନା
ଭୋଗ କରି ପାର କିଛି ନ ରଖ୍ ବାସନା ।
ବହୁ ଭୋଗ୍ୟ ବସ୍ତୁ ଲୋଭ ଦେଖାଇଲେ ଯମ
ହେଲେ ନଚିକେତା ଚିତ୍ତ ନ ହେଲା ବିଭ୍ରମ ।
ଆତ୍ମ-ଜ୍ଞାନ ପାଇବାକୁ ଦୃଢ଼ ଥିଲା ପଣ
ତେଣୁ ଶ୍ରେୟ ପଥୁଁ ଚ୍ୟୁତ ହେଲା ନାହିଁ ମନ ।

ତାହା ବୋଲି ନଚିକେତା ଶ୍ରେୟ ପଥ ଲାଗି
ପାର୍ଥିବ ବିଷୟ ଭୋଗ ନ ଥିଲେ ତିଆଗି ।
ଯମରାଜଙ୍କୁ ତ ପୂର୍ବେ କହିଥିଲେ ସେହି,
ଧନ ଦଉଲତେ ପ୍ରୀତ ନ ହୁଅନ୍ତି କେହି ।

Digitized by srujanika@gmail.com

ଆପଣଙ୍କୁ ଯେତେବେଳେ କରିଛି ଦର୍ଶନ
ଅବଶ୍ୟ ମିଳିବ ମୋତେ ଯଥୋଚିତ ଧନ ।
ପୁଣି ଯମ ପଦେ ପ୍ରଭୁ ଥିବେ ଯେତେ ଦିନ
ଏ ସଂସାରେ ମୁହିଁ ବଞ୍ଚିଥିବି ସେତେଦିନ ।
କିନ୍ତୁ ଏ ସକଳ ମୋର ନୁହେଁ ବରଣୀୟ
ଆତ୍ମ-ତତ୍ତ୍ୱ କେବଳହିଁ ମୋର ପ୍ରାର୍ଥନୀୟ ।

ଆପେ ଆପେ ଆସେ ଯଦି ଧନ ଦଉଲତ
କେହି ତ କହିବେ ନାହିଁ କେ' ତହିଁ ଆସକ୍ତ ।
ଈଶୋପନିଷଦେ ଏହା ହୋଇଛି ସୂଚିତ
ଅନାସକ୍ତ ରହି ଭୋଗ ଭୁଞ୍ଜିବା ଉଚିତ ।
ପରୀକ୍ଷା କରିବା ପାଇଁ ନାନା ପ୍ରଲୋଭନ,
ନଚିକେତା ଆଗେ ଯମ କଲେ ଉତ୍ଥାପନ ।
ନ ଭୁଲି ସେ ପ୍ରଲୋଭନେ ହୋଇ ଏକ ଲକ୍ଷ୍ୟ
ନଚିକେତା ନେଲେ ବରି ଯେତେ ଶ୍ରେୟପଥ ।

ଆତ୍ମ-ଜ୍ଞାନ ମିଳେ, ଯାର ଦୃଢ଼ ଆତ୍ମ-ବଳ,
ଯଶ ପଉରୁଷ କାହିଁ ନ ଲଭେ ଦୁର୍ବଳ ॥

## ଅବିଦ୍ୟାଗ୍ରସ୍ତର ଦୁର୍ଦ୍ଦଶା

**ଅବିଦ୍ୟାୟାମନ୍ତରେ ବର୍ତ୍ତମାନାଃ**
**ସ୍ୱୟଂ ଧୀରାଃ ପଣ୍ଡିତଂମନ୍ୟମାନାଃ ।**
**ଦନ୍ଦ୍ରମ୍ୟମାଣାଃ ପରିୟନ୍ତି ମୂଢା**
**ଅନ୍ଧେନୈବ ନୀୟମାନା ଯଥାନ୍ଧାଃ ॥୫॥**

"ଅବିଦ୍ୟା ଅଜ୍ଞାନ-ଅନ୍ଧକାର ଗର୍ଭେ ଥାଇ
ନିଜକୁ ଯେ ବ୍ୟକ୍ତି ଧୀର ପଣ୍ଡିତ ବୋଲାଇ;
କୁଟିଳ ସ୍ୱଭାବ ସେହି ଅବିବେକୀ ଜନ,
ଲୋକୁଁ ଲୋକାନ୍ତରେ କରି ଥାଆଇ ଭ୍ରମଣ ।
ଅନ୍ଧକୁ କଢ଼ାଏ ପଥ ଅନ୍ଧ ଯେଉଁଭଳି
ଲକ୍ଷ୍ୟହୀନେ ସେ ଅନ୍ୟକୁ ଚଳାଏ ସେପରି" ॥୫॥

Digitized by srujanika@gmail.com

"ସେ ଯେଉଁ ସଂସାରୀ ଲୋକ ଅଜ୍ଞାନ ଅନ୍ଧାରେ
ଦାରା ସୁତ ପଶୁ ବିତ୍ତ ବନିତା ନିଶାରେ
ଘାରି ହୋଇ ନିଶି ଦିନ କଟାଏ ଜୀବନ,
ପୁଣି ଯାଗ ଯଜ୍ଞେ ସ୍ୱର୍ଗ ସୁଖେ କରି ମନ।
ସେହି ମୂଢ଼ ମତେ ଏଇ ସବୁ ଶ୍ରେୟ ପଥ
ନିଜକୁ ପଣ୍ଡିତ କହି ଦିଅଇ ଏ ମତ।
କିନ୍ତୁ ପୁତ୍ର ସେହି ଭ୍ରାନ୍ତ ପଥିକ ଅଜ୍ଞାନୀ
ଶାସ୍ତ୍ର କଥା ତିଳେ ହେଲେ ନ ପାରଇ ଜାଣି।
ସେ ନିଗୂଢ଼ ଶାସ୍ତ୍ର ବ୍ୟାଖ୍ୟା କରଇ ସବୁଠି–
ଯାଗ ଯଜ୍ଞେ ଭୋଗ ସୁଖ ନ ମିଳେ କେଉଁଠି।
ଅଗ୍ନିହୋତ୍ର ଯଜ୍ଞ କଲେ ନିତ୍ୟ ଅନୁଷ୍ଠାନ
ଇହ ପରଲୋକେ ସୁଖ ପାଏ ଯଜମାନ।

ଦେହ ଓ ଇନ୍ଦ୍ରିୟ ସାଥେ ନିଜକୁ ଜଡ଼ାଇ
ଯଜ୍ଞ କର୍ତ୍ତା ଭୋକ୍ତା ବୋଲି କରଇ ବଡ଼ାଇ।
କିନ୍ତୁ ପ୍ରକୃତରେ ଆତ୍ମା ଅଭୋକ୍ତା ଅକର୍ତ୍ତା
ଏ ପଣ୍ଡିତ ନ ଜାଣଇ ଏହି ଶାସ୍ତ୍ର କଥା।

ଅନ୍ଧକୁ କଢ଼ାଏ ପଥ ଯେସନେ ଅନ୍ଧେକ,
ସେପରି ସଂସାରେ ବାପ ଅଜ୍ଞାନୀ ଯେତେକ,
ଅନ୍ୟ ଅଜ୍ଞାନୀଙ୍କ ଦ୍ୱାରା ହୋଇ ପ୍ରଭାବିତ
କଅଣ ପ୍ରକୃତ ମାର୍ଗ ଜାଣନ୍ତି ନାହିଁ ତ।
କେବଳ ସେମାନେ ଭ୍ରମି ଲୋକୁଁ ଲୋକାନ୍ତରେ
ଲଭନ୍ତି ଅପାର ଦୁଃଖ କ୍ଳେଶ ଜୀବନରେ।"

ଅବୋଧ ବାଳକ ପାଖରେ ଦୁର୍ବୋଧ –

ନ ସାମ୍ପରାୟଃ ପ୍ରତିଭାତି ବାଳଂ
ପ୍ରମାଦ୍ୟନ୍ତଂ ବିତ୍ତମୋହେନ ମୂଢମ୍।
ଅୟଂ ଲୋକୋ ନାସ୍ତି ପର ଇତି ମାନୀ
ପୁନଃ ପୁନର୍ବଶମାପଦ୍ୟତେ ମେ ॥୬॥

Digitized by srujanika@gmail.com

"ବାଳକ ସମାନ ଜ୍ଞାନହୀନ ଯେଉଁ ବ୍ୟକ୍ତି,
ବିତ୍ତ ମୋହାଚ୍ଛନ୍ନ ଚିତ୍ତ ବିଷୟେ ଆସକ୍ତି,
ଏପରି ପ୍ରମାଦଗ୍ରସ୍ତ ଯେ ତାହା ନିକଟେ
ପରଲୋକ ଶାସ୍ତ୍ରଜ୍ଞାନ ତିଳେ ନ ପ୍ରକଟେ।
"ଅଛି ଇହଲୋକ, ପରଲୋକ ନୁହେ ସତ" –
ଏପରି ମାନିବାବାଲା ପୁରୁଷ ସତତ,
ଭୋଗି ଅସୁମାରୀ ଦୁଃଖ ଯନ୍ତ୍ରଣା ଜୀବନେ,
ବାରମ୍ବାର ଆସିଥାନ୍ତି ମୋହରି ବନ୍ଧନେ" ॥୬॥

"ବେଦ ଶାସ୍ତ୍ର ଅନୁଯାୟୀ ସାଧନ ପ୍ରଣାଳୀ
ଜନ୍ମାନ୍ତରେ ମଣିଷର ଭାଗ୍ୟ ଥାଏ ଚାଳି।
ମଣିଷ ଲଭଇ ଉଚ୍ଚ ଯୋନି ଏହା ଫଳେ
ଅବା ଦେବଲୋକ ପ୍ରାପ୍ତ ହୁଏ ଜନ୍ମାନ୍ତରେ।

କିନ୍ତୁ ବାଳବୁଦ୍ଧି ଯାର ସେହୁ କଦାଚନ,
ପ୍ରଣାଳୀ ନ ଜାଣି କରି ନ ପାରେ ସାଧନ।
ହିତାହିତ ଜ୍ଞାନ ଶୂନ୍ୟ ଯେ ସରଳ ମନା
ଏପରି ଲୋକଙ୍କୁ କେହି ନ କରେ ଗଣନା।
ଅମାର୍ଜିତ ଅସଂସ୍କୃତ ଯା' ଅନ୍ତଃକରଣ
ଶାସ୍ତ୍ର ଜ୍ଞାନ ହୀନ ମୂଢ଼ ଅବିବେକୀ ଗଣ,
ତାଙ୍କରି ବାଳକ-ବୁଦ୍ଧି ହୋଇଥାଏ ସଦା
ଶାସ୍ତ୍ରଜ୍ଞାନେ କେବେ ତାଙ୍କ ନ ହୁଏ ଶରଧା।
ଏପରି ଅନେକ ଲୋକ ସଂସାରେ ଅଛନ୍ତି
ଶିଶୁ ସମ ଯେ ବିଚାର ବୁଦ୍ଧି ହୀନ ଅତି।
ସେ ମୁଗ୍ଧ ହୁଅନ୍ତି ବାହ୍ୟ ସ୍ଥୂଳ ବସ୍ତୁ ଦେଖି
ସୂକ୍ଷ୍ମ ବିଷୟର ଚିନ୍ତା ମନରୁ ଉପେକ୍ଷି।
ମନୋହର ପଦାର୍ଥରେ ନିରତ ଆସକ୍ତି
ଚିନ୍ତା କରି ପାରନ୍ତିନି ପରିଣାମ ପ୍ରତି।
ଦୃଶ୍ୟମାନ ଜଗତକୁ ବିଚାରି ସମସ୍ତ
ବିଳାସ ବ୍ୟସନେ ବୁଡ଼ି ହୁଅନ୍ତି ଉନ୍ମତ୍ତ।
ବାଳା ବିତ୍ତ ମୋହାଚ୍ଛନ୍ନ ଚିତ୍ତେ ଅବିରତ
ଜୀବନେ ହୁଅନ୍ତି ସଦା ସେ ପ୍ରମାଦଗ୍ରସ୍ତ।

ସେମାନେ ଭାବନ୍ତି ଦାରା ସୁତ ପରିବାର
ଏହି ଇହଲୋକ ଅଛି, ଏଇ ତ ସଂସାର।

Digitized by srujanika@gmail.com

ଏହାକୁ ଛାଡ଼ିଲେ ଆଉ ପରଲୋକ କାହିଁ?
ଆଜି ଭୋଗ ଛାଡ଼ି ହେବ କେ କାଲିକି ବାଇ ?
ଏ ଦେହ-ସର୍ବସ୍ୱ ଲୋକେ ଦେହ ମଣି ସତ
ଚିପୁଡ଼ି ଜଗତ-ଲେମ୍ବୁ ଖାଆନ୍ତି ସମସ୍ତ ।

ପରଲୋକେ ସୁଖ ପାଇଁ ଶାସ୍ତ୍ରୀୟ ସାଧନ
କରିବାକୁ ଏହି ମୂଢ଼େ ନ ଦିଅନ୍ତି ମନ ।
ଏ ଜଗତ ଭୋଗେ ଯିଏ ଅବିରତ ବାଇ
ସିଏ ପରଲୋକ କଥା ଭାବିବ କିମ୍ପାଇଁ ?
ଅଂହକାର-ଦୀପ ହୃଦ-ଅଙ୍ଗନେ ଜଳାଇ
ପ୍ରଭୁ-କୃପା-ଚାନ୍ଦିନୀ କେ ପାଇଅଛି କାହିଁ?
ଏପରି ଅଜ୍ଞାନୀ ଲୋକେ ଥରକୁ ଯେ ଥର
ମୋର୍ କବଳକୁ ଆସି ଥାଆନ୍ତି ସତ୍ୱର ।

ଆତ୍ମ-ଜ୍ଞାନ ଲାଭ ପାଇଁ କହୁନି ଏ ଶ୍ଳୋକ,
କହେ ଶାସ୍ତ୍ର-ଜ୍ଞାନ, ଯାହା ଦିଏ ସ୍ୱର୍ଗଲୋକ ।
ମାଟିର ଏ ପୃଥିବୀରେ ଆମରି କଳ୍ପନା
''ସ୍ୱର୍ଗସୁଖ ଭୋଗ'' ଯାର ନ ଅଛି ତୁଳନା ।
ସେ ସୁଖ କିପରି ତାହା ମିଳଇ କେସନେ
ତାହା ମିଳେ ବାପ ଯେତେ ଶାସ୍ତ୍ରୀୟ ସାଧନେ ॥''

## ଆତ୍ମ-ଜ୍ଞାନ ଦୁର୍ଲଭ

**ଶ୍ରବଣାୟାପି ବହୁଭିର୍ଯୋ ନ ଲଭ୍ୟଃ**
**ଶୃଣ୍ୱନ୍ତୋଽପି ବହବୋ ଯଂ ନ ବିଦ୍ୟୁଃ ।**
**ଆଶ୍ଚର୍ଯୋ ବକ୍ତା କୁଶଳୋଽସ୍ୟ ଲବ୍ଧା —**
**ଆଶ୍ଚର୍ଯୋ ଜ୍ଞାତା କୁଶଳାନୁଶିଷ୍ଟଃ ॥୭॥**

''ଶୁଣିବା ପାଇଁକି ସବୁ ଲୋକଙ୍କୁ ସବୁଠିଁ
ଏହି ଆତ୍ମ-ତତ୍ତ୍ୱ ମିଳି ନ ଥାଏ ଯେଉଁଠି;
ଶୁଣିଲେ ବି ଯେଉଁ ତତ୍ତ୍ୱ କାହାଠୁଁ କେମିତି
ଜାଣି ନ ହୁଅଇ ଯାହା ବିଷୟରେ କିଛି;

Digitized by srujanika@gmail.com

ପୁଣି ତତ୍ତ୍ୱ-ସୁକୁଶଳ ବକ୍ତା ବାଚସ୍ପତି
ଏହି ଜଗତରେ ବାବୁ ଦୁର୍ଲ୍ଲଭ ଅଟନ୍ତି;
କେବଳ ନିପୁଣ କେହି ବିଦ୍ୟାର୍ଥୀ ସଂସାରେ
ଏହି ଆତ୍ମ-ତତ୍ତ୍ୱ ଜ୍ଞାନ ଲାଭ କରିପାରେ'' ॥୭॥

''ପରଲୋକ ତତ୍ତ୍ୱ ଅବା ଆତ୍ମ-ତତ୍ତ୍ୱ ଜ୍ଞାନ,
ଅଜ୍ଞାନୀଙ୍କ ପାଶେ ସଦା ଅବିଦିତ ଜାଣ।
ସଂସାରେ ବହୁତ ଲୋକ ଅଛନ୍ତି ଏମିତି
ପାର୍ଥିବ ଧନକୁ ପାଶେ ଥାଆନ୍ତି ସାଇତି।
ଦାରା ସୁତ ବିତ୍ତ ଯଶ ମାନ ଓ ବଡ଼ାଇ
ଭୋଗ ଅରଜନେ ସଦା ହୋଇଥାନ୍ତି ବାଇ।
ସଂସାର ଶରୀର ସାଥେ ଲଗାଇ ମମତା
ଦଣ୍ଡେ ହେଲେ ନ ଭାବନ୍ତି ପରଲୋକ କଥା।
ଏ ଦେହକୁ ଆତ୍ମା ମଣି କାଟନ୍ତି ଜୀବନ
ଆତ୍ମଜ୍ଞାନ ତାଙ୍କ ପାଇଁ କିବା ପ୍ରୟୋଜନ ?
ଏଇଠି ତ ଭୋଗ ପାଇଁ ଦିନ ହୁଏ ଗତ
ଆତ୍ମା କଥା ଶୁଣିବାକୁ କାହିଁ ଫୁରୁସତ ?
ଏପରି ବହୁତ ମୂର୍ଖ ଅବିବେକ ଜନେ
ଆତ୍ମାଙ୍କୁ ଜାଣିବା ଇଚ୍ଛା ନ ପୋଷନ୍ତି ମନେ।

ଆହୁରି ଆତ୍ମାଙ୍କ କଥା ଶୁଣି ବହୁ ଲୋକ
ପାଇ ନ ପାରନ୍ତି ତିଳେ ଆତ୍ମାଙ୍କ ଆଲୋକ।
ଏ ଜ୍ଞାନ ସକାଶେ ଲୋଡ଼ା ହୁଅଇ ସର୍ବଥା
ଉତ୍ତମ ବିଚାର ବୁଦ୍ଧି ଚିତ୍ତ ନିର୍ମଳତା।

ଆଉ ଅଛ କିଛି ଲୋକ କରି ଅଭିଳାଷ
ଆତ୍ମ-ଜ୍ଞାନ ଲଭିବାକୁ କରନ୍ତି ପ୍ରୟାସ।
ମାତ୍ରକ ପ୍ରକୃତ ଆତ୍ମ-ଜ୍ଞାନୀ ଗୁରୁ ବିନା,
ଆତ୍ମ-ଜ୍ଞାନ ପ୍ରାପ୍ତି ହୁଏ ବିଡ଼ମ୍ବନା ସିନା।
ଏହିସବୁ ଜନେ କରିଥାନ୍ତି ଅନୁଭବ
ଆତ୍ମ-ଜ୍ଞାନ ବକ୍ତା ଏଇ ସଂସାରେ ଦୁର୍ଲ୍ଲଭ।

Digitized by srujanika@gmail.com

ଯୋଗ୍ୟ ଆତ୍ମ-ଜ୍ଞାନୀ ଗୁରୁ ହେଲେ ବି ସୁଲଭ
ମାତ୍ରକ ଉତ୍ତମ ଶିଷ୍ୟ ହୁଅନ୍ତି ଦୁର୍ଲ୍ଲଭ ।
ତେଣୁ ଆତ୍ମ-ଜ୍ଞାନ ତତ୍ତ୍ୱ ହୋଇ ବିଡ଼ମ୍ବିତ,
ଅନ୍ଧାରେ ରହଇ ସଦା କାଳେ ଅବିଦିତ ।''

ବୁଝିବା କଠିନ ପୁଣି ମିଳିବା କଠିନ,
ପୁଣି ଯାହା ବୁଝାଇବା ଅଧିକ କଠିନ—
ସେ ଆତ୍ମ-ବିଦ୍ୟାକୁ ଯମ ସହଜ ଭାବରେ
ବୁଝାଇବା ପାଇଁ ମନେ ମନେ ଚିନ୍ତା କଲେ ।

ଏକାଗ୍ର ନ କଲେ ମନ ମୂନ ଚଇତନ
ଏ ଅବୋଧ ବିଦ୍ୟା ବୋଧ ହୋଇବ କେସନ ?
ତେଣୁ ବିଦ୍ୟା ଜଟିଳତା ବିଷୟେ ବହୁତ
କହି ଯମ ନିଜ ଶିଷ୍ୟେ କରାନ୍ତି ପ୍ରସ୍ତୁତ ॥ ୭ ॥

ନ ନରେଣାବରେଣ ପ୍ରୋକ୍ତ ଏଷ
ସୁବିଜ୍ଞେୟ ବହୁଧା ଚିନ୍ତ୍ୟମାନଃ ।
ଅନନ୍ୟ ପ୍ରୋକ୍ତେ ଗତିରତ୍ର ନାସ୍ତି
ଅଣୀୟାନ୍ ହ୍ୟତର୍କ୍ୟମଣୁପ୍ରମାଣାତ୍ ॥ ୮ ॥

''ନିକୃଷ୍ଟ ପ୍ରାକୃତ ବୁଦ୍ଧି ନର ଶିକ୍ଷା ପାଇ
କିଅବା ତରେ ଏ ଆତ୍ମାକୁ ଜାଣିପାରେ ନାହିଁ ।
ଯେହେତୁ ନାନାଦି ଲୋକେ ନାନାଦି ଭାବରେ,
ମତ ବ୍ୟକ୍ତ କରିଥାନ୍ତି ଆତ୍ମା ବିଷୟରେ ।
କିନ୍ତୁ ଯେ ଅଭେଦଦର୍ଶୀ ଶ୍ରେଷ୍ଠ ଜ୍ଞାନୀ ଲୋକ
ସେ ପାରନ୍ତି ଦେଇ ଏହି ଆତ୍ମ-ଜ୍ଞାନାଲୋକ ।
ଯେଣୁ ଆତ୍ମା ସୂକ୍ଷ୍ମ ଠାରୁ ସୂକ୍ଷ୍ମ ଅତିଶୟ
ତେଣୁ ସେ ନୁହନ୍ତି କେବେ ତର୍କର ବିଷୟ'' ॥ ୮ ॥

ଆତ୍ମା ସୁଦୁର୍ଲଭ ବୋଲି କହି ଜନ୍ତୁପତି,
ଏ ଶ୍ଳୋକେ ଅଧିକ ତତ୍ତ୍ୱ ତାହାରି ଥୁଅନ୍ତି ।

Digitized by srujanika@gmail.com



"ଆତ୍ମାଙ୍କ ବିଷୟେ ଜ୍ଞାନ ଦୁର୍ଲ୍ଲଭ ସଂସାରେ,
ପଣ୍ଡିତେ କହନ୍ତି ତାଙ୍କୁ ନାନାଦି ପ୍ରକାରେ।
"ଆତ୍ମା ଅଛି" କିଏ କହେ, "ନାହିଁ" କେ' କହଇ,
କେ' କହେ ସେ 'କର୍ତ୍ତା', କିଏ ଅକର୍ତ୍ତା ବୁଝଇ।
କେ' କହେ ସେ 'ଶୁଦ୍ଧ' ଆଉ 'ଅଶୁଦ୍ଧ' କା' ମତେ,
କେ' କେତେ ପ୍ରକାରେ କହେ ଆତ୍ମାଙ୍କୁ ଜଗତେ।
କେ' କହେ 'ସାକାର' କିଏ କହେ ନିରାକାର
କହିବା ଲୋକ ବି ଚିନ୍ତେ ନାନାଦି ପ୍ରକାର।
ଆତ୍ମଦର୍ଶୀ ଗୁରୁ ମାତ୍ର ଆତ୍ମାଙ୍କ ବିଷୟେ
ସକଳ ସଂଶୟ ଛିନ୍ନ କରନ୍ତି ନିଶ୍ଚୟେ।"

ପୂର୍ବେ ଏହି କଥା ହୃଦେ ଅନୁଭବ କରି
ନଚିକେତା କହିଥିଲେ ଯମଙ୍କୁ ଏପରି–
"ତେଣୁ ଏ ବିଷୟେ ମୁହିଁ ଆପଣଙ୍କ ପରି,
ଆଉ ଜଣେ ଯୋଗ୍ୟ ଗୁରୁ ପାଇବି କିପରି ?"
ଜଗତରେ ଆତ୍ମଦର୍ଶୀ ଆଚାର୍ଯ୍ୟ କେବଳ
ଆତ୍ମ-ଜ୍ଞାନ ଦେବା ପାଇଁ ହୁଅନ୍ତି ସଫଳ।

ଆମ ଏ ଇନ୍ଦ୍ରିୟେ ବାହ୍ୟ ଜଗତର ଜ୍ଞାନ
ଆମେ ଲାଭ କରିଥାଉଁ ଯଥା ପରିମାଣ।
ପୁଣି ଯେଉଁ ଚିନ୍ତା ହୁଏ ମନରେ ଉଦିତ
ତାହା ପରେ ଯୁକ୍ତି ତର୍କ ହୁଏ ଆଧାରିତ।
ଆମ ଏ ଇନ୍ଦ୍ରିୟେ ମନେ ଆମେ ନିରନ୍ତର
ସ୍ଥୂଳ ବିଷୟରେ ଜ୍ଞାନ ଲଭୁଛେ କେବଳ।
ଏହି ସ୍ଥୂଳ ବସ୍ତୁ ଆମ ତର୍କର ବିଷୟ
ଏଥିରୁ ପାର୍ଥିବ ଜ୍ଞାନ ହୁଅଇ ଉଦୟ।
କିନ୍ତୁ ଯା ଇନ୍ଦ୍ରିୟାତୀତ ଅଚିନ୍ତ୍ୟ ଯା ମନେ
ସେ ଆତ୍ମା ତର୍କରେ ଜଣା ପଡ଼ିବେ କେସନେ ?

ସବୁଠି ଅଭେଦଦର୍ଶୀ ଗୁରୁ ଉପଦେଶେ,
'ବ୍ରହ୍ମ ଆତ୍ମା ଏକ' ବୋଲି ଜଣାଯାଏ ଶେଷେ।
ଲଭିଲେ ଏପରି ଗୁରୁ ପାଶୁଁ ଆତ୍ମଜ୍ଞାନ
ଭେଦାଭେଦ ସକଳର ହୁଏ ଅବସାନ।

Digitized by srujanika@gmail.com

**ତର୍କେ ବହୁ ଦୂର –**

**ନୈଷା ତର୍କେଣ ମତିରାପନେୟା**
**ପ୍ରୋକ୍ତାନ୍ୟେନୈବ ସୁଜ୍ଞାନାୟ ପ୍ରେଷ୍ଠ ।**
**ଯାଂ ତ୍ୱମାପଃ ସତ୍ୟଧୃତିର୍ବତାସି**
**ତ୍ୱାଦୃଙ୍ନୋ ଭୂୟାନ୍ନଚିକେତଃ ପ୍ରଷ୍ଟା ॥ ୯ ॥**

''ଆରେ ନଚିକେତା, ପ୍ରିୟ ପୁତ୍ର, ସତ୍ୟବ୍ରତ,
ଯେ ସଦ୍‌ବୁଦ୍ଧିରାଜି ତୁହି ହୋଇଛୁ ପ୍ରାପତ
ନିଜ ବୁଦ୍ଧି ଚାତୁରୀରେ ତର୍କ ବିତର୍କରେ
କାହାକୁ ମିଳଇ ନାହିଁ ତାହା ସହଜରେ ।
କେବଳ ତ ଆତ୍ମଦର୍ଶୀ ଗୁରୁ ଉପଦେଶେ
ଏପରି ସଦ୍‌ବୁଦ୍ଧି ଜାତ ହୋଇଥାଏ ଶେଷେ ।
ସତ୍ୟକୁ ସମ୍ୟକ ରୂପେ ହୃଦୟେ ଧାରଣ
କରିବାକୁ ପୁତ୍ର ତୁ'ରେ ହୋଇଛୁ ଭାଜନ ।
ପ୍ରିୟ ନଚିକେତା, ପ୍ରଶ୍ନକର୍ତ୍ତା ତୋହପରି
ଆମକୁ ସତତ ମିଳୁ ଥାଆନ୍ତୁ ଯେପରି'' ॥ ୯ ॥

ସବୁ ଭୋଗ ଅଭିଳାଷ ମନୁ କରି ତ୍ୟାଗ
ନଚିକେତା ଆତ୍ମଜ୍ଞାନେ କଲେ ଅନୁରାଗ ।
ତାହାହିଁ ''ସଦ୍‌ବୁଦ୍ଧି'' ଯମରାଜଙ୍କ ମତରେ
ସୁଲଭ ନୁହଇ ଯାହା ସାଧାରଣ ନରେ ।
ବୁଦ୍ଧିର ବିଳାସେ ତର୍କେ ସଦ୍‌ବୁଦ୍ଧି ନୁହଁଇ
ଆତ୍ମଦର୍ଶୀ ଗୁରୁ ଉପଦେଶେ ତା' ଜନ୍ମଇ ।
ତର୍କ ବୁଦ୍ଧି ବଳେ ସିନା ପାର୍ଥିବ ପଦାର୍ଥ
ସମ୍ୟକ ଭାବରେ ଜଣା ଯାଇଥାଏ ମାତ୍ର ।
ସତ୍ୟ ଅନୁଭୂତି ମନ ବୁଦ୍ଧି ପରିସରେ
ହୁଏ ନାହିଁ; ତେଣୁ ଆତ୍ମା ଏ ସବୁ ଊର୍ଦ୍ଧ୍ୱରେ ।

ଆତ୍ମା ତ କରନ୍ତି ମନ ବୁଦ୍ଧିକୁ ଚେତନ
ଅଗ୍ନି ଯେହ୍ନେ ଥାଏ ଦେଇ ଲୁହାକୁ ଦହନ ।

Digitized by srujanika@gmail.com

ଯେଣୁ ଏହି ଆତ୍ମା ମନ ବୁଦ୍ଧିର ନିୟନ୍ତା
ବୁଦ୍ଧିକୁ କେସନେ ଏହି ଆତ୍ମା ବା ମିଳନ୍ତା ?
ମନ ବୁଦ୍ଧି ଆଦି ସବୁ ସାଧନ ସ୍ୱରୂପେ
ନିୟାମକ ଆତ୍ମାଙ୍କୁ ସେ ଜାଣିବେ କି ରୂପେ ?

ଆମ ଏ ଆଖିରେ ଆମେ ଦେଖୁଛୁ ଦୁନିଆ,
ଏ ଆଖି ନିଜକୁ ଦେଖି ନ ପାରୁଛି କିଆଁ ?
ଆମ ଥକା ଶରୀରକୁ ଆମରି କାନ୍ଧରେ
ବସାଇ କି ଆମେ ଚାଲି ପାରିବା ପାଦରେ ?
ସେପରି ଏ ବୁଦ୍ଧି ମନ ଆତ୍ମାଙ୍କୁ କିପରି
ତର୍କର ବିଷୟ ବସ୍ତୁ ପାରିବେ ବା କରି ?
ଏମାନେ ଆତ୍ମାଙ୍କ ଠାରୁ ତୁଟାଇ ସମ୍ପର୍କ,
ଆତ୍ମା ବିଷୟରେ ଯେବେ କରିବେ ବିତର୍କ,
ତେବେ ଜଡ଼ ପାଲଟିବେ, ହେବେ ଅଚେତନ
ଆତ୍ମ-ଉପଲବ୍ଧି ଆଉ କରିବେ କେସନ ?

କାର ଡ୍ରାଇଭର ଯେବେ ଗାଡ଼ିକୁ ଚଳାଏ,
ଗାଡ଼ି କ'ଣ ଛାଡ଼ି ତାକୁ ଆଗେ ଧାଇଁ ଯାଏ ?
ଡ୍ରାଇଭର ବିନା ଗାଡ଼ି ଚକ ନ ଚାଲଇ,
ତେହ୍ନେ ଆତ୍ମା ବିନା ବୁଦ୍ଧି କେସନେ ଚଳଇ ?
ସେ ପାଇଁ କହିଲେ ଯମ ତର୍କ ବିତର୍କରେ
ସଦ୍‌ବୁଦ୍ଧି ପ୍ରାପତ କେବେ ନ ହୁଏ ଅନ୍ତରେ ।
ଚିତ୍ତେ ମଳିନତା ଥିଲେ ସଦ୍‌ବୁଦ୍ଧି ନ ଆସେ,
ମେଘାଚ୍ଛନ୍ନ ନଭେ ଯେହ୍ନେ ଶଶି ନ ପ୍ରକାଶେ ।

## କର୍ମଫଳର ଅନିତ୍ୟତା

ଜାନାମ୍ୟହଂ ଶେବଧିରିତ୍ୟନିତ୍ୟଂ
ନ ହ୍ୟଧ୍ରୁବୈଃ ପ୍ରାପ୍ୟତେ ହି ଧ୍ରୁବଂ ତତ୍ ।
ତତୋ ମୟା ନାଚିକେତଶ୍ଚିତୋଽଗ୍ନି-
ରନିତ୍ୟୈର୍ଦ୍ରବ୍ୟୈଃ ପ୍ରାପ୍ତବାନସ୍ମି ନିତ୍ୟମ୍ ।। ୧୦ ।।

Digitized by srujanika@gmail.com

"ଜାଣେ ମୁଁ ଐଶ୍ୱର୍ଯ୍ୟ ରୂପ ଯେତେ ଯଜ୍ଞ ଫଳ,
ପୁତ୍ର ନଚିକେତା, ସବୁ ଅନିତ୍ୟ କେବଳ।
ଏପରି ଅନିତ୍ୟ ଯାଗ ଯଜ୍ଞାଦି ସେବନେ
ନିତ୍ୟ ଆତ୍ମ-ବସ୍ତୁକୁ କେ' ପାଇନି ଜୀବନେ।
ତଥାପି ଏ ସବୁ ଜାଣି ରେ ପ୍ରିୟ ନନ୍ଦନ,
"ନାଚିକେତ-ଅଗ୍ନି" ହେଲା ମୋ ଦ୍ୱାରା ଚୟନ।
ସେ ଅନିତ୍ୟ ବସ୍ତୁ ରାଜି କରି ଉପଯୋଗ,
ନିତ୍ୟ ଯମ ପଦ ପୁତ୍ର କରୁଅଛି ଭୋଗ ॥୧୦॥

ପ୍ରିୟ ଶିଷ୍ୟ ଗୁଣେ ହୋଇ ପ୍ରଶଂସା ମୁଖର
ଯମରାଜ କେତେ କଥା କହନ୍ତି ନିଜର।
ନିଜର ସାଧନା ପନ୍ଥା କରି ଆଲୋଚନା
ନଚିକେତାଙ୍କର ପଥ କରନ୍ତି ତୁଳନା।

କହିଲେ ସେ, "ଶୁଣ ଆରେ ଗୌତମ କୁମର,
ମୁଁ ଜାଣେ ଐଶ୍ୱର୍ଯ୍ୟ ରୂପ ଯେତେ କର୍ମ ଫଳ,
ସବୁ ତ ଅନିତ୍ୟ, ନୁହେଁ ନିତ୍ୟ ଫଳଦାୟୀ
ଅନିତ୍ୟ ଦରବେ ନିତ୍ୟ ଫଳ ମିଳେ ନାହିଁ।

କର୍ମଫଳ ରୂପୀ ଯେତେ ଐଶ୍ୱର୍ଯ୍ୟ ସମ୍ପଦ,
ପରିଣାମେ ନ ହୁଅଇ ସ୍ଥାୟୀ ଫଳପ୍ରଦ।

ଏପରି ଅନିତ୍ୟ ଯାଗ ଯଜ୍ଞାଦି ସେବନେ,
ନିତ୍ୟ ଆତ୍ମବସ୍ତୁକୁ କେ' ପାଇନି ଜୀବନେ।
ଏହା ଜାଣି ମଧ୍ୟ ସେହି ଅନିତ୍ୟ ଦରବେ
'ନାଚିକେତ–ଅଗ୍ନି' କଲି ଚୟନ ଆହବେ।
ପାଇଲି ଅପେକ୍ଷାକୃତ ନିତ୍ୟ ଯମ ପଦ,
କିନ୍ତୁ ତାହା ନୁହଇ ତ ପରମ ଆସ୍ପଦ।
ଧନ ରତ୍ନ ଯଜ୍ଞ ଦ୍ରବ୍ୟ ପୁଣି ଯଜ୍ଞ ଫଳ,
ମୁଁ ଜାଣଇ ଏ ସକଳ ଅନିତ୍ୟ କେବଳ।

ଯେ କୌଣସି କର୍ମ ଯାଗ ଯଜ୍ଞ ସମ୍ପାଦନେ,
ଭୌତିକ ପଦାର୍ଥ ଲାଗେ ସକଳ ସାଧନେ।
ପଦାର୍ଥର ଅନିତ୍ୟତା ଯୋଗୁଁ କର୍ମଫଳ,
ଅନିତ୍ୟ ହୁଅଇ ବୋଲି ଜାଣ ତୁ କୁମର।

Digitized by srujanika@gmail.com

ମାଟି ଢେଲାଟାରୁ ଏକ ଛୋଟ ସୁନାହାର
କେ' ତିଆରି କରିଲାଣି ଅବା କି ପ୍ରକାର ?
ଅଖଣ୍ଡ ଆନନ୍ଦ ପାଇଁ ହୁଏ ପ୍ରୟୋଜନ
ଶ୍ରେୟ ପଥେ ଶାସ୍ତ୍ର ମତ ଯଜ୍ଞ ସମ୍ପାଦନ ।

ବେଦେ ଇନ୍ଦ୍ର ଅଗ୍ନି ସୂର୍ଯ୍ୟ ଚନ୍ଦ୍ରାଦି ଦେବତା
ବ୍ରହ୍ମଙ୍କ ସଗୁଣ ରୂପେ ହୁଅନ୍ତି ଗଣନ୍ତା ।
ପ୍ରକୃତରେ ସ୍ୱର୍ଗେ ଏକ ଏକ ଏ ପଦବୀ
ବିଶେଷ ଯଜ୍ଞାଦି କରି ଜୀବ ଥାଏ ଲଭି ।
ମୁହିଁ 'ନାଚିକେତ-ଯଜ୍ଞ' କରି ଭୂଲୋକରେ
ସେପରି ପାଇଛି ଯମ ପଦବୀ ସ୍ୱର୍ଗରେ ।
କିନ୍ତୁ ଜାଣି ରଖ ଏହି ନିତ୍ୟ ଯମ ପଦ
ସାପେକ୍ଷିକ, ନୁହେଁ ନିତ୍ୟ ସ୍ଥାୟୀ ଫଳପ୍ରଦ ।
ଜୀବଲୋକ କ୍ଷଣ ଭଙ୍ଗୁରତା ତୁଳନାରେ
ପ୍ରଳୟ ଯାବତ ସ୍ଥିତି ନିତ୍ୟ ହୋଇପାରେ ।
ପୁତ୍ର ତୁ ବୈରାଗ୍ୟବାନ ମୋ ଠାରୁ ଅଧିକା,
ତୋତେ ଛୁଇଁଲାନି ଭୋଗ ଐଶ୍ୱର୍ଯ୍ୟ ଛିଟିକା ।
ବ୍ରହ୍ମାନନ୍ଦ ସରଗର ସୁଖ ତୁଳନାରେ
ସମାନ ନୁହେଁ ରେ ପୁତ୍ର କୌଣସି ପ୍ରକାରେ ।''

## ନଚିକେତାଙ୍କର ପ୍ରଶଂସା

**କାମସ୍ୟାପ୍ତିଂ ଜଗତଃ ପ୍ରତିଷ୍ଠାଂ**
**କ୍ରତୋରନନ୍ତ୍ୟମଭୟସ୍ୟ ପାରମ୍ ।**
**ସ୍ତୋମମହଦୁରୁଗାୟଂ ପ୍ରତିଷ୍ଠାଂ ଦୃଷ୍ଟ୍ୱା**
**ଧୃତ୍ୟା ଧୀରୋ ନଚିକେତୋଽତ୍ୟସ୍ରାକ୍ଷୀ ॥ ୧୧ ॥**

''ପୁତ୍ର ନଚିକେତା, ତୁହି ତୋର ଧୈର୍ଯ୍ୟ ବଳେ,
ସୁବୁଦ୍ଧି ସମ୍ପନ୍ନ ହୋଇ ଅଶେଷ ଭାବରେ,

Digitized by srujanika@gmail.com

କାମନାର ଅନ୍ତ, ବିଶ୍ୱଭୁବନ ଆଶ୍ରିତ;
ଯଜ୍ଞର ଅନନ୍ତ ଫଳ ରୂପେ ଯା' ବିଦିତ;
ସର୍ବ ଭୟ ନିବାରକ, ଯାହା ଭଜନୀୟ;
ଅଣିମାଦି ଐଶ୍ୱର୍ଯ୍ୟରେ ପୁଣି ମହନୀୟ;
ଯେ ପଦର ବହୁକାଳ ବ୍ୟାପି ଅବସ୍ଥିତି;
ସବୁ ଜାଣି ନିମିଷକେ ଠେଲିଲୁ କେମିତି?" ॥୧୧॥

ଏପରି ସୁବୁଦ୍ଧିମନ୍ତ ଶିଷ୍ୟ ଏକ ପାଇ
ଯମଙ୍କର ଆନନ୍ଦର ସୀମା ରହୁନାହିଁ।
ପ୍ରଶଂସି ଥରକୁ ଥର କହି ନାନା କଥା
ଅଜାଡ଼ି ପକାନ୍ତି ସତେ ବୁକୁର ମମତା।
କିପରି ଅସୀମ ତ୍ୟାଗ ନଚିକେତା କଲେ
କହୁଛନ୍ତି ସେଇ କଥା ଯମ କୁତୂହଳେ।

ପୂର୍ବ ଶ୍ଳୋକେ ଯମରାଜ ନଚିକେତା ଆଗେ
କହିଥିଲେ ନିଜ କଥା କେତେ ଅନୁରାଗେ।

'ନାଚିକେତ-ଅଗ୍ନି' କେହ୍ନେ ସେ କରି ଚୟନ
ପାଇଛନ୍ତି ସରଗରେ ଯମରାଜ ପଣ।
ସେ ତାଙ୍କ ଦ୍ୱିତୀୟ ବରେ ଏଇ 'ଅଗ୍ନି-ବିଦ୍ୟା'
ଚୟନର ବିଧି ସବୁ ଦେଇଥିଲେ ଶିକ୍ଷା।
ଏଇ ଅଗ୍ନିବିଦ୍ୟା ଫଳ ସ୍ୱରୂପେ ବୈରାଜ–
ପଦ ଯାଚିଥିଲେ ପରା ନିଜେ ଯମରାଜ।
କିନ୍ତୁ ନଚିକେତା ତାହା କରି ଦେଲେ ମନା
'ଆତ୍ମ-ଜ୍ଞାନେ' ଥିଲା ତାଙ୍କ ଏକାନ୍ତ କାମନା।

ସେ ଯେଉଁ 'ବୈରାଜ ପଦ' ଯାଚିଥିଲେ ଯମ,
କାମନାର ଅନ୍ତ ତହିଁ; ଅତି ଅନୁପମ।
ଏ ପଦ ପାଇଲେ ଥରେ ମଣିଷ ଅନ୍ତରେ
ଆଉ କିଛି କାମ୍ୟ ବସ୍ତୁ ନ ରହେ ଶେଷରେ।
ଏହି ସର୍ବ ଜଗତର ଆଶ୍ରୟ ବିଦିତ
ଯଜ୍ଞାଦିର ଫଳ ରୂପେ ଏହି ଅଭିହିତ।

Digitized by srujanika@gmail.com

ସଂସାରେ ଯା' ଥାଏ ଜରା ବ୍ୟାଧି ମୃତ୍ୟୁ ଭୟ
ଏଠାରେ ନ ଥାଏ କିଛି; ଏ ପଦ ଅଭୟ।
ଅଣିମାଦି ଐଶ୍ୱର୍ଯ୍ୟରେ ଏହି ପଦ ଭରା
ସକଳ ଲୋକରେ ତେଣୁ ଭଜନୀୟ ପରା।
ବହୁକାଳ ସ୍ଥାୟୀ ପୁଣି ପ୍ରତିଷ୍ଠା ତାହାର
ଏ ପଦ ପାଇଁକି ନାହିଁ ଆସକ୍ତି କାହାର ?

ସର୍ବ ଭୋଗ ସାର ଏଇ ବଇରାଜ ପଦେ
ଦେବାକୁ ଯାଚିଲେ ଯମ ପରମ ଆନନ୍ଦେ।
କିନ୍ତୁ ନଚିକେତା ଏହି ସୁଖ ଭୋଗ ପାଇଁ
ବିଚାର ବୁଦ୍ଧିରେ ତିଳେ ମନ ଦେଲେ ନାହିଁ।

ତେଣୁ ଯମରାଜ ହୋଇ କୁତୁହଳୀ ମନ,
ପ୍ରଶଂସି ଥରକୁ ଥର କହିଲେ ଏସନ –
"ପୁତ୍ର ନଚିକେତା, ତୁହି ତୋର ଧୈର୍ଯ୍ୟ ବଳେ,
ସୁବୁଦ୍ଧି ସମ୍ପନ୍ନ ହୋଇ ଅଶେଷ ଭାବରେ,
କାମନାର ଅନ୍ତ; ବିଶ୍ୱ-ଭୁବନ ଆଶ୍ରିତ;
ଯଜ୍ଞର ଅନନ୍ତ ଫଳ ରୂପେ ଯା' ବିଦିତ;
ସର୍ବ ଭୟ ନିବାରକ; ଯାହା ଭଜନୀୟ;
ଅଣିମାଦି ଐଶ୍ୱର୍ଯ୍ୟରେ ପୁଣି ମହନୀୟ;
ଯେ ପଦର ବହୁକାଳ ବ୍ୟାପି ଅବସ୍ଥିତି;
ସବୁ ଜାଣି ନିମିଷକେ ତେଜିଲୁ କେମିତି ?"

## ଆତ୍ମ-ଜ୍ଞାନର ଫଳ

ତଂ ଦୁର୍ଦର୍ଶଂ ଗୂଢମନୁପ୍ରବିଷ୍ଟଂ
ଗୁହାହିତଂ ଗହ୍ୱରେଷ୍ଠଂ ପୁରାଣମ୍।
ଅଧ୍ୟାତ୍ମଯୋଗାଧିଗମେନ ଦେବଂ
ମତ୍ୱା ଧୀରୋ ହର୍ଷଶୋକୌ ଜହାତି ॥୧୨॥

ଅତି କଷ୍ଟେ ଯାହାଙ୍କର ଦର୍ଶନ ମିଳଇ,
ଗୁପତେ ସେ ସର୍ବଭୂତ ହୃଦେ 'ଛନ୍ତି ରହି।

Digitized by srujanika@gmail.com

ଦୁର୍ଗମ ଇନ୍ଦ୍ରିୟାତୀତ ସ୍ଥାନ ଯେ ବିଦିତ
ବୁଦ୍ଧି ରୂପ ଗୁହାରେ ସେ ନିତ୍ୟ ଅବସ୍ଥିତ।
ପ୍ରକାଶମୟ ସେ ଆତ୍ମଦେବ ସନାତନ
ତାଙ୍କରି ଧ୍ୟାନରେ କରି ଅଭ୍ୟାସ ସାଧନ
ମନନ ଚିନ୍ତନ କରି ହୃଦେ ଅନୁକ୍ଷଣ,
ହର୍ଷ ଶୋକ ତ୍ୟାଗ କରିଥାନ୍ତି ଜ୍ଞାନୀଜନ ॥୧୨॥

ଯେ ହିରଣ୍ୟଗର୍ଭାବସ୍ଥା ସର୍ବ ଭୋଗ ସାର
ତେଜ୍ୟା କଲେ ନଚିକେତା ବିଚାରି ଅସାର।
ତାଆଠୁ ଅଧିକ କିସ ସାଧକ ଖୋଜଇ
ଏଇ ପ୍ରଶ୍ନ ଏବେ ସର୍ଭି ହୃଦୟେ ଉଠଇ।
କି ଅଧିକ ପ୍ରିୟ ଲକ୍ଷ୍ୟ ଅଛି ଅବା କାହିଁ
ଯା ଲାଭେ ମଣିଷ ଆଉ କିଛି ଖୋଜେ ନାହିଁ।
ତାହାରି ଉତ୍ତର ଦିଏ କଠୋପନିଷଦ
ଏହି ଶ୍ଲୋକ ଠାରୁ ତାହା ହୁଅଇ ଆରମ୍ଭ।

ଆଧ୍ୟାତ୍ମିକ ତତ୍ତ୍ୱ ଶେଷ ପରିଣତି କ'ଣ,
କିପରି ହୁଅଇ ପୁଣି ତାହାରି ସାଧନ,
ସରଳେ ସକଳ କଥା କହନ୍ତି ବୁଝାଇ
ଶିଷ୍ୟ ନଚିକେତା ପାଶେ ମୃତ୍ୟୁଲୋକ ସାଇଁ।

''ଯୋ ଆତ୍ମାଙ୍କୁ ଜାଣିବାକୁ ପ୍ରବ୍ର କଲୁ ମନ
ଅତି କଷ୍ଟେ ତାହାଙ୍କର ମିଳେ ଦରଶନ।
ଏ ଆତ୍ମା ପରମ ସତ୍ୟ ପୁରାତନ ଅତି,
ସେ ପାଇଁ ଆତ୍ମାଙ୍କୁ ପରା ''ପୁରାଣ'' କହନ୍ତି।
ମନ ବୁଦ୍ଧିଯୁକ୍ତ ଏଇ ଇନ୍ଦ୍ରିୟ-ଶରୀରେ
ନିରତେ ଚଳାନ୍ତି ଆତ୍ମା ଆପଣା ଶକ୍ତିରେ।
ଏ ଆତ୍ମା କସ୍ମିନ କାଳେ ଜନ୍ମ ନ ଲଭନ୍ତି
ସମ ଅବସ୍ଥାରେ ସବୁ ସମୟେ ରହନ୍ତି।
ଯେଉଁପରି ଘଟାକାଶ, ବ୍ୟାପ୍ତ ମହାକାଶ
ଏହି ଦୁଇ ସଦା ଏକ, ନିତ୍ୟ, ଅବିନାଶ।
ଘଟେ ରହୁ ଅବା ଘଟେ ନ ରହୁ ଆକାଶ
ଆକାଶ ସବୁଠି ବୋଲି ସଭିଙ୍କ ବିଶ୍ୱାସ।

Digitized by srujanika@gmail.com

ସେହିପରି ଆତ୍ମା ସବୁଠାରେ ସବୁକାଳେ
ରହିଛନ୍ତି, ତେଣୁ ସେ ତ ଅଜନ୍ମା ସଂସାରେ।
ଅଜନ୍ମାର ଜରା ମୃତ୍ୟୁ ଅବସ୍ଥା ତ ନାହିଁ,
ଆତ୍ମାଙ୍କୁ 'ପୁରାଣ' କୁହାଯାଏ ସେଥିପାଇଁ।

ସ୍ୱପ୍ରକାଶ ବସ୍ତୁ ସଦା ସମ ଭାବେ ସ୍ଥିତ
ପ୍ରକାଶ ବା ଅପ୍ରକାଶ କାରଣ ରହିତ।

ଜଡ଼ ସୃଷ୍ଟିରେ ଏ ଆତ୍ମା ଚେତନ ରୂପରେ
ସ୍ଥୂଳ କୋଷାବୃତ ବୋଲି ସଦା ଜଣା ପଡ଼େ।
କିନ୍ତୁ ପ୍ରକୃତରେ ସେ ତ ସର୍ବ ପ୍ରକାଶକ
ସେ ନିଖିଳ ଜଗତର ଅଟନ୍ତି ପ୍ରେରକ।
ଯେ ଆଖି ଜଗତ ରୂପ କରଇ ଗ୍ରହଣ
ନିଜକୁ ନ ପାରେ କରି ସେହି ଦରଶନ।
ଯେ ଆତ୍ମ-ଶକ୍ତିରେ ଆଖି ଦେଖେ ଏ ଭୁବନ
ସେ ଆଖି ଆତ୍ମାଙ୍କୁ ଦେଖି ପାରିବ କେସନ?
ଦର୍ଶନ ଇନ୍ଦ୍ରିୟେ ଆମେ ବସ୍ତୁ ଦେଖୁଁ ଯେହ୍ନେ,
ଆତ୍ମା ଦେଖା ନ ପଡ଼ନ୍ତି ନୟନରେ ତେହ୍ନେ।
ଆଖିରେ ଆତ୍ମାଙ୍କୁ ଯହିଁ ଦେଖି ନ ହୁଅନ୍ତ
ମନ ବୁଦ୍ଧି ଅବା ତାଙ୍କୁ କେସନେ ଜାଣନ୍ତ?
ଇନ୍ଦ୍ରିୟାଦି ଯାହା ଯୋଗୁଁ ସଦା ପ୍ରାଣବନ୍ତ
ସେହି ଇନ୍ଦ୍ରିୟରେ ତାଙ୍କୁ ଜାଣିବା କେମନ୍ତ?

ଆତ୍ମାଙ୍କ ସୂକ୍ଷ୍ମତା ଗୁଣ ବୁଝିବା ନିମନ୍ତେ
"ହୃଦ-ଗୁହା-ସ୍ଥିତ" ବୋଲି କହିଲି ମୁଁ ତତେ।
ସ୍ଥୂଳ ଅନ୍ନମୟ କୋଷ ମାଂସ ମଜ୍ଜା ଦିହ
ତହୁଁ ସୂକ୍ଷ୍ମ ପ୍ରାଣମୟ କୋଷ ଜାଣି ନିଅ।

ଦେହୁଁ ସୂକ୍ଷ୍ମ ପ୍ରାଣ କୋଷ ଅଧିକ ବ୍ୟାପକ
ତହୁଁ ସୂକ୍ଷ୍ମ ମନ, ଚିତ୍ତ ବୃତ୍ତି ଉତ୍ପାଦକ।
ମନ ଠାରୁ ସୂକ୍ଷ୍ମ ବୁଦ୍ଧି, ବୁଦ୍ଧିଠୁଁ ଅଧିକ
ସୂକ୍ଷ୍ମ ଯେ ଆନନ୍ଦମୟ କୋଷ ସର୍ବାଧିକ।

Digitized by srujanika@gmail.com

''ଆତ୍ମ-ତତ୍ତ୍ୱ'' ଯା ପରମ ସତ୍ୟକୁ ବୁଝାଏ
ଏ ସମ୍ପୂର୍ଣ୍ଣ ସୃଷ୍ଟି ପରା ତା' ଆଶ୍ରିତେ ଥାଏ।
ସେ ସର୍ବପ୍ରକାଶମୟ ଚୈତନ୍ୟ ରୂପରେ
ପଞ୍ଚକୋଷ ଅଭ୍ୟନ୍ତରେ ଜୀବନ ତ ଭରେ।
କରେ ନିୟମିତ ତାକୁ କରଇ ପ୍ରେରିତ
ତେଣୁ ସେ ଅତ୍ୟନ୍ତ ''ଗୂଢ଼'' ଅର୍ଥରେ କଥିତ।
ସେ ପାଇଁ କହିଲି ତୋତେ ଏଠାରେ ନିଶ୍ଚିତ
ଏ ଆତ୍ମା ଅନ୍ତରତମ ଗୁହାରେ ନିହିତ।
ବୁଦ୍ଧି ରୂପ ଗୁହା ମଧ୍ୟେ ସେ ସର୍ବଦା ସ୍ଥିତ
ଦୁର୍ଗମ ସେ ସ୍ଥାନ ଅତି ଇନ୍ଦ୍ରିୟ ଅତୀତ।
ବରଫର ଖଣ୍ଡ ଜଳ ବାଷ୍ପ ଯେଉଁ ଭଳି
ସୂକ୍ଷ୍ମାତିସୂକ୍ଷ୍ମ ଏ ଆତ୍ମା ଅଟନ୍ତି ସେପରି।

ସେ ଜଗତ ଅଭ୍ୟନ୍ତରେ ପ୍ରବେଶ ଗୁପତେ
ତେଣୁ ଜଣା ନ ପଡ଼ନ୍ତି କେବେ ନେତ୍ରପଥେ।
ବହୁ ଅନ୍ତଃସ୍ଥଳେ ଏକ ଅଦ୍ୱିତୀୟ ସତ୍ତା
ଚିନ୍ମୟ ସୂକ୍ଷ୍ମାତିସୂକ୍ଷ୍ମ ସେ ଆତ୍ମ-ଦେବତା।
ଦୃଷ୍ଟିପଥେ ଏହି ଆତ୍ମା ନ ହେଲେ ବି ଜ୍ଞାତ
ନିର୍ମଳ ବୁଦ୍ଧିରେ ମାତ୍ର ସେ ତ ପ୍ରତିଭାତ।
ଇନ୍ଦ୍ରିୟ ଓ ମନ କ୍ରିୟା ହେଲେ ସୁସଂଯତ,
ତହିଁରୁ ନିର୍ମଳ ବୁଦ୍ଧି ହୁଅଇ ଉଦ୍‌ଗତ।

ବିଷୟାଦି ମୋହେ ହତଚେତନ ମାନବ
ପକ୍ଷେ ଆତ୍ମ ଦରଶନ ଅତି ଅସମ୍ଭବ।
ଅନଳ ରହଇ କାଷ୍ଠେ ଗୁପତେ ଯେସନ
ଚରାଚରେ ଆତ୍ମା ତେହ୍ନେ ରହନ୍ତି ପ୍ରଚ୍ଛନ୍ନ।

ଶୁଦ୍ଧ ସତ୍ତ୍ୱ ନିଷ୍ଠାବାନ ବ୍ୟକ୍ତି ଶୁଦ୍ଧ ଜ୍ଞାନେ,
ପ୍ରକାଶନ୍ତି ସେ ଜ୍ୱଳନ୍ତ ଅନଳ ସମାନେ।
ଦଗ୍ଧଦାରୁ ବହିର୍ଗତ ଅଗ୍ନି ଯେଉଁପରି
ବିଦଗ୍ଧ ବୁଦ୍ଧିରେ ଆତ୍ମା ଝଳନ୍ତି ସେପରି।

Digitized by srujanika@gmail.com

ଦୁର୍ଜ୍ଞେୟ ଅଟନ୍ତି ଯଦି ଆତ୍ମା ଏହିପରି
ତେବେ ସେ ଆତ୍ମାଙ୍କୁ ଆମେ ଜାଣିବା କିପରି ?
ତାହାରି ଉତ୍ତର ଥୋଉଅଛି ତୋହ ପାଶେ
ତାହା ତ ଅଧ୍ୟାତ୍ମ ଯୋଗେ, ନିରତ ଅଭ୍ୟାସେ ।
ବିଷୟୁଁ ଫେରାଇ ଚିତ୍ତ ଆତ୍ମାଙ୍କ ଉପରେ
ଥାପିବା ଅଧ୍ୟାତ୍ମ୍ୟ ଯୋଗ ମୋଅରି ମତରେ ।
ଏ ଅଧ୍ୟାତ୍ମ ଯୋଗ କଲେ ନିରତେ ଅଭ୍ୟାସ
ତେବେ ତ ବୁଦ୍ଧିରେ ଆତ୍ମା ହୋଇବେ ପ୍ରକାଶ ।

ଏ ଯୋଗେ ଆତ୍ମାଙ୍କୁ ଲାଭ କରିଥିବା ଜନେ,
ହର୍ଷ ଶୋକ ପରିହାର କରନ୍ତି ଜୀବନେ ।
ସୁଖେ ଦୁଃଖେ ଚଞ୍ଚଳତା ନ ରହେ ତାଙ୍କରି
ମାନସେ ପ୍ରଶାନ୍ତି ସଦା ରହିଥାଏ ଭରି ।

**ଏତତ୍ ଶ୍ରୁତ୍ୱା ସଂପରିଗୃହ୍ୟ ମର୍ତ୍ତ୍ୟଃ**
**ପ୍ରବୃହ୍ୟ ଧର୍ମ୍ୟମଣୁମେତମାପ୍ୟ ।**
**ସ ମୋଦତେ ମୋଦନୀୟଂ ହି ଲବ୍ଧ୍ୱା**
**ବିବୃତଂ ସଦ୍ମ ନଚିକେତସଂ ମନ୍ୟେ ॥୧୩॥**

ପୁତ୍ରରେ ସଦ୍‌ଗୁରୁ ମୁଖୁଁ ଶୁଣି ଏ ବିଷୟ,
ହୃଦେ ଭଲ ଭାବେ ଧରି ଚିତ୍ତ କରି ଥୟ,
ଦେହାଦିରୁ ଭିନ୍ନ କରି ଏ ସୂକ୍ଷ୍ମ ଆତ୍ମାଙ୍କୁ
ଧର୍ମେ ଉପଲବ୍ଧି କରି ପାରିଲେ ତାହାଙ୍କୁ
ସେ ଆନନ୍ଦ ସ୍ୱରୂପଙ୍କୁ ଏ ମଣିଷ ପାଇ
ହୃଦୟେ ଆନନ୍ଦ ଅନୁଭବ କରିଥାଇ ॥୧୩॥

ଅନାତ୍ମ ବସ୍ତୁରୁ କରି ଆତ୍ମାଙ୍କୁ ପୃଥକ
ସାଧନା ଆରମ୍ଭ କରେ ଯେ କେହି ସାଧକ ।
ସେହି କଥା ଯମରାଜ କହନ୍ତି ଏଠାରେ—
"ଶୁଣୁ ବାପ ନଚିକେତା ଶ୍ରଦ୍ଧା ସହକାରେ ।

Digitized by srujanika@gmail.com

ହୋଇଲେ ବି ଏହି ଆତ୍ମା ନିତ୍ୟ ସ୍ୱପ୍ରକାଶ
ତଥାପି ଅଜ୍ଞାତ ହୋଇ ରହେ ସର୍ବି ପାଶ।
କାରଣ ଅନାତ୍ମ ବସ୍ତୁ ଛାଇ ଆତ୍ମା ପରେ
ଛାଇ ପରି ଅବାରିତ ଭାବେ ସଦା ପଡ଼େ।
ଜଡ଼ ଧର୍ମୀ ସଙ୍ଗେ ମିଶି ଏ ଆତ୍ମା ଚେତନ
ଜଡ଼ ବସ୍ତୁ ପରି ଜଣା ପଡ଼ଇ ଯେସନ।
ଆତ୍ମା ପରେ ଦେହ-ଧର୍ମ ହୋଇ ଆରୋପିତ
ଜଣା ପଡ଼େ ଦେହ ପରି ସେ ପରିବର୍ତ୍ତିତ।
ଦେହ ପରି ତା'ର ଆସେ ବାଲ୍ୟ ଯଉବନ
ଅସହାୟ ଜରାବସ୍ଥା ସହିତେ ମରଣ।
ତେଣୁ ଦୁଃଖୀ ହୋଇ ସିଏ ବସଇ ଅନାଇ
କେବେ ମୃତ୍ୟୁ ପହଞ୍ଚିବ, ଦୁର୍ଦ୍ଦିନ ତା' ପାଇଁ।
ମୃତ୍ୟୁକୁ ଅପେକ୍ଷା କରି ମରେ ପ୍ରତି କ୍ଷଣେ
ଅଜ୍ଞାନୁ ଏ ଜୀବ ଭୋଗେ ଯାତନା ଜୀବନେ।

ଦେହ ମନ ଇନ୍ଦ୍ରିୟାଦି ଉପାଧି ନିକର
ଆତ୍ମା ପରେ ଆରୋପନ୍ତି ସ୍ୱଧର୍ମ ତାଙ୍କର।
ଆତ୍ମାକୁ ଇନ୍ଦ୍ରିୟ ରୂପୀ ଉପାଧି ସକଳ
ଭାବନ୍ତି ଇନ୍ଦ୍ରିୟଧର୍ମୀ ବୋଲି ନିରନ୍ତର।
ମନ ରୂପ ଉପାଧି ଟି ତା' ଧର୍ମକୁ ନେଇ,
ଶୁଦ୍ଧ ଆତ୍ମା ସାଥେ ଯେବେ ଦିଅଇ ମିଶେଇ,
ତେବେ ଆତ୍ମା ସୁଖୀ ଦୁଃଖୀ ପରି ଜଣାଯାନ୍ତି;
ଏ ଉପାଧି ଧର୍ମେ ଆତ୍ମା କିନ୍ତୁ ନ ଥାଆନ୍ତି।
ଭ୍ରାନ୍ତ ଏ ମିଶ୍ରିତ ଜ୍ଞାନେ ଆମେ ହେଉ ବଣା
ଆତ୍ମାଙ୍କ ସ୍ୱରୂପ କିଛି ନ ପଡ଼ଇ ଜଣା।
ଏହି ଆତ୍ମ-ତତ୍ତ୍ୱ ଯାହା ସ୍ୱରୂପ ଆମର
ସମସ୍ତ ସଂସାର-ଧର୍ମ ଅତୀତ, ନିର୍ମଳ।
ନିଜକୁ ସଂସାର-ଧର୍ମୀ ରୂପେ ମନେ କରି
ଜନ୍ମ ମୃତ୍ୟୁ ଜରା ବ୍ୟାଧି ହେଉଛି ଆମରି।
ସଂସାର ଯାତନା ଭୋଗ କରି ନିରନ୍ତର
ହା ହୁତାଶେ ଜୀବନଟି କଟୁଛି ଆମର।

Digitized by srujanika@gmail.com

ନିଷ୍କୃତିର ପଥ ଖୋଜି ମଥା ଘୂରି ଯାଏ,
କିନ୍ତୁ କେହି ମୁକ୍ତି-ପଥ କେଉଁଠି ନ ପାଏ ।

ଅନାତ୍ମ ବସ୍ତୁରୁ ତେଣୁ ଆତ୍ମାଙ୍କୁ ପୃଥକ
କରିବାକୁ ମୁଁ ପ୍ରଥମେ କହୁଛି ଏତକ ।
ଚାଉଳରୁ ତଷ୍ଟୁ ଯେହ୍ନେ ହୁଅଇ ବାହାର,
ଏ ଅନାତ୍ମ ଆବରଣ ତେସନ ପ୍ରକାର ।
ଫିଟିକିରି ପାଶ୍ଶୁଁ ଜବା ଫୁଲ କାଢ଼ି ନେଲେ,
ବଦଳିବ ନାହିଁ ଫିଟିକିରି କେବେହେଲେ ।
ସ୍ୱାଭାବିକ ରଙ୍ଗ ତା'ର ଅତୁଟ ରହିବ
ଲାଲ ରଙ୍ଗ ଛାଇ ତାହା ପରୁ ହଟିଯିବ ।
ଫୁଲର ଲାଲିମା ସ୍ୱଚ୍ଛ ଫିଟିକିରି ପରେ
ପଡ଼ି ଯେ ପ୍ରତୀତି ହେଉଥିଲା ଏ ମନରେ
ତାହା ତୁଟିଗଲେ ହେବ ସତ୍ୟେ ଅନୁଭୂତି
ଆତ୍ମା ଝଟକିବେ ତେବେ, ଘୁଞ୍ଚିଲେ ପ୍ରକୃତି ।
ପ୍ରତୀତି ମାତ୍ରକେ ମିଥ୍ୟା ଭ୍ରମ ଓ ଅଜ୍ଞାନ
କଟିଗଲେ ଆତ୍ମା ହେବେ ସ୍ୱତଃ ଦୀପ୍ୟମାନ ।

ଆଲୋକ ଓ ଅନ୍ଧକାର ଯେହ୍ନେ ବିପରୀତ
ତେସନେ ଏ ଆତ୍ମା ଆଉ ଅନାତ୍ମା ନିଶ୍ଚିତ ।
କିନ୍ତୁ ଆମେ ଏତେ ମୋହଗ୍ରସ୍ତ ମଳମନା
ଏଇ କଥାଟିକୁ କରି ନ ପାରୁ ଧାରଣା ।
ଦେହ ମନ ଧର୍ମ ଶୁଦ୍ଧ ଆତ୍ମା ପରେ ଥାପି
ସୁଖୀ ଦୁଃଖୀ ହୋଇ ସଦା ରହୁଛୁ ତଥାପି ।

କଥାଟା ସହଜ ଜଣା ପଡ଼ିଲେ କି ହେବ
ଭିନ୍ନ ସଂସ୍କାରକୁ କ'ଣ କେବେ ଛାଡ଼ି ହେବ ?
ତେଣୁ ମୁଁ କହୁଛି ବାପ ଅଭ୍ୟାସ ହିଁ ବଳ,
ନିତ୍ୟାନିତ୍ୟ ବାଛିବାକୁ ବିବେକ ସମ୍ବଳ ।''

କେହ୍ନେ ଆତ୍ମ ଉପଲବ୍ଧି ହୃଦେ ହୋଇଥାଏ,
ଆତ୍ମା ମିଳିଥାନ୍ତି ଅବା ସେ କେଉଁ ଉପାୟେ,
ଏହି ସବୁ ପ୍ରଶ୍ନ ଯମ ନଚିକେତା ଆଗେ
ବୁଝାଇ କହନ୍ତି କେତେ ପ୍ରୀତି ଅନୁରାଗେ ।

Digitized by srujanika@gmail.com

''ପ୍ରିୟ ନଚିକେତା ଗୁରୁ ଉପଦେଶ ଲଭି,
ଶାସ୍ତ୍ର ପଢ଼ି ହୁଏ ନାହିଁ ଆତ୍ମ ଉପଲବ୍ଧି।
ଅସଂଶୟ ଅପରୋକ୍ଷ ଅନୁଭୂତି ଜ୍ଞାନେ
ସାଧକ କେବଳ ଏହି ଆତ୍ମାଙ୍କୁ ତ ଜାଣେ।

ଯିଏ ଯାହା ତାକୁ ସେଇ ରୂପରେ ଜାଣିବା,
ତିଳେ ବି ସଂଶୟ ମନେ ପ୍ରାଣେ ନ ରଖିବା,
ତାହା ଅପରୋକ୍ଷ ଜ୍ଞାନ, ତାହା ଅନୁଭୂତି
ମିଳଇ ପ୍ରତ୍ୟକ୍ଷ ଉପଲବ୍ଧିରୁ ସବୁଠି।
ଶାସ୍ତ୍ର ପଢ଼ି ଅବା ଲଭି ଗୁରୁ ଉପଦେଶ
କେବଳ ପରୋକ୍ଷ ଜ୍ଞାନ ହୁଅଇ ବିଶେଷ।
ସ୍ୱରୂପେ ପ୍ରତ୍ୟକ୍ଷ ଉପଲବ୍ଧି ହୁଏ ଯହିଁ
ଆତ୍ମ ଅନୁଭୂତି ମାତ୍ର ସେଇଠି ହୁଅଇ।

ବହୁ ଦିନ ଧରି ଥାଏ ଯେଉଁ ଅନୁଭବ
ସହଜେ ତୁଟିବା ତାହା ନୁହଇ ସମ୍ଭବ।
ଶାସ୍ତ୍ର କହେ, —''ଜନ୍ମ-ମୃତ୍ୟୁ ହୀନ ଆତ୍ମା ଏହି।''
ତଥାପି ବିଶ୍ୱାସ କରି ନ ପାରୁଛି କେହି।
ଦୃଢ଼ ମୂଳ ବିପରୀତ ସଂସ୍କାର ସକାଶେ
ନୁହଇ ବିଶ୍ୱାସନୀୟ ତାହା କାହା ପାଶେ।
ତେବେ ଅସଂଶିତ ହୋଇ ଆତ୍ମାଙ୍କୁ କିପରି,
ଜାଣିବାକୁ ହୋଇଥାଏ, କି ଉପାୟ କରି,
ସେ ସବୁ କହିବି ତୋତେ ପରେ ସୁବିସ୍ତାରି
ଏବେ କହୁଅଛି ଠିକେ ଠିକେ ଦୁଇ ଚାରି।

କରିବ ଆଚାର ଶୁଦ୍ଧି, ମନ ମୁହଁ ଏକ,
ସଂଯତ ଇନ୍ଦ୍ରିୟ ହେବ ଖଟେଇ ବିବେକ।
ଏକାଗ୍ର କରିବ ମନ ନିରତ ଅଭ୍ୟାସେ
ସମାଧିସ୍ଥ ନ ହେଲେ କି ଜ୍ଞାନ ପରକାଶେ ?

ଶୁଣିବ ଆତ୍ମାଙ୍କ କଥା କାନେ ବାରବାର,
ଶୁଣି ମନେ ମନେ ପୁଣି କରିବ ବିଚାର।
ଶୁଦ୍ଧ ବିଚାରରେ ଯେଉଁ ତତ୍ତ୍ୱ ମିଳିଯିବ
ପୁତ୍ର ସେ ତତ୍ତ୍ୱରେ ଚିତ୍ତ ଲଗାଇ ରଖିବ।

Digitized by srujanika@gmail.com

ଯେଉଁ ମନ ଦ୍ୱାରା ହେବ ଏ ସବୁ ସାଧନ
ସେହି ମନ ଶୁଦ୍ଧି ହେବା ଅତି ପ୍ରୟୋଜନ ।
ନ ହୋଇ ପାରିଲେ ମନ-ଯନ୍ତ୍ର ଉପଯୋଗୀ
କେ ହୋଇ ପାରିବ ବାପ କହ ଆତ୍ମଯୋଗୀ ?

ଏହି ଯେତେ ଯେତେ କଥା କହିଲ ଏଠାରେ
ଜାଣିବୁ ଏସବୁ ''ଧର୍ମ୍ୟ'' ମୋହରି ବିଚାରେ ।
ହୁଅଇ ଆତ୍ମାନୁଭୂତି ଧର୍ମରେ କେବଳ,
ଏ ଧର୍ମେ ହୁଅଇ ମନ ବୁଦ୍ଧି ସୁନିର୍ମଳ ।

'ଆମ' ଆଉ ''ଆତ୍ମ-ତତ୍ତ୍ୱ'' ମଧ୍ୟେ ଯେଉଁ ମନ
ଏବେ ପକାଇଛି ଏତେ ଭେଦ ଆବରଣ ।

ସେ ମନ ବିଶୁଦ୍ଧ ହେଲେ ଆଉ ଭେଦ ଜ୍ଞାନ
ମନରେ ନ ରହି ହେବ ସକଳ ସମାନ ।'
'ଅହଂ' ଆଉ 'ଆତ୍ମଜ୍ଞାନ' ହେବ ଏକାକାର
ରହି ନ ଥିବ ତ କିଛି ମନର ଆକାର ।''

ଏହି ଆତ୍ମ-ବସ୍ତୁ ଜ୍ଞାନୀ ପାଆନ୍ତି କିପରି,
ସେ ''ପାଇବା'' କଥାଟିକୁ ବିଶ୍ଳେଷଣ କରି
ଯମରାଜ 'ଆପ୍ୟ' ଶବ୍ଦ ଲଗାଇ କହନ୍ତି
''ଶୁଣ ବାପ ନଚିକେତା, ଶୁଦ୍ଧ-ବୁଦ୍ଧ-ମତି !
ଆତ୍ମା ଠାରୁ ଆମେ କେବେ ନୁହଇରେ ଭିନ୍ନ
ତେଣୁ ତାଙ୍କୁ ପାଇବାର କଥା ଅର୍ଥହୀନ ।
କେବଳ ଅନାତ୍ମ ବସ୍ତୁ ହୋଇଲେ ପୃଥକ
ସେ ତ ପ୍ରକାଶିବେ, ଯେଣୁ ସେ ଆତ୍ମ ଦ୍ୟୋତକ ।
ପୁତ୍ର ଏହି ଆତ୍ମ-ପ୍ରାପ୍ତି, ଯିଏ ନିତ୍ୟ ପ୍ରାପ୍ତ
ତାହାଙ୍କୁ ବାହାରେ କାହିଁ ଆମେ ଖୋଜିବା ତ ?

ଧାନ୍ନୁ ତୁଷ କାଢ଼ି ନେଲେ ଚାଉଳ ରହଇ
ହାତେ ଧାନ ଥିଲେ, ଥାଏ ସେ ଚାଉଳ ରହି ।
ଏଠାରେ ଚାଉଳ ନୁହେଁ ଅପ୍ରାପ୍ତ ଦରବ
ତଥାପି ଚାଉଳ ପ୍ରାପ୍ତି ଲାଗେ ଅସମ୍ଭବ ।

Digitized by srujanika@gmail.com

ତୁଷ ଆବରଣ ଯୋଗୁଁ ଆମର ନିକଟେ
ଚାଉଳ ଥାଇ ବି ଲାଗେ ନ ଅଛି ଯେମନ୍ତେ।
ତୁଷ କାଢ଼ି ନେଲେ ମିଳେ ଚାଉଳ ଯେପରି,
ଏଠାରେ ଆତ୍ମାଙ୍କ ପ୍ରାପ୍ତି ଅଟଇ ସେପରି।''

ତା'ପରେ ଆତ୍ମାଙ୍କ ଅପରୋକ୍ଷ ଅନୁଭୂତି
ବୁଝାଇବା ପାଇଁ ଯମ ଦେଇଥିଲେ ଦୃଷ୍ଟି।
''ଆନନ୍ଦ'', ଲୌକିକ ''ସୁଖ'', ଦୁଇ ଭିନ୍ନ କଥା
କିନ୍ତୁ କେ ବୁଝଇ ନାହିଁ କି ସେହି ଭିନ୍ନତା।
ଆନନ୍ଦ ସ୍ୱରୂପ ଆତ୍ମା ମୋଦନୀୟ ଅତି,
ଏ କଥାକୁ ଯମରାଜ ବୁଝାଇ କହନ୍ତି।

''ପୁତ୍ର, ଜାଣିଥିବୁ ଏଇ ସାଧାରଣ କଥା,
ଲୌକିକ ସୁଖର ଥାଏ କେତୋଟି ଅବସ୍ଥା।
ଆମ ପ୍ରିୟ ପଦାର୍ଥକୁ ଆମେ ଗଲେ ପାଇ
ଉଠଇ ମନେ ଯେ ବୃତ୍ତି, ତା' ସୁଖ ବୋଲାଇ।
ମାୟା କଳ୍ପିତ ଏ ସୁଖ ମୋହେ ଜର ଜର
ଆପଣା ପାଇଁକି ସଦା ହୁଅଇ ତତ୍ପର।
ନିଜେ ସର୍ବେସର୍ବା ହେବା ପାଇଁ ''ସୁଖ'' ଚାହେଁ,
ଏ 'ଆନନ୍ଦ' ଅନ୍ୟ ପାଇଁ ଅବିରତେ ଧାଏଁ।
'ସୁଖ' ଚାହେଁ ହେବା ପାଇଁ ବିଶ୍ୱ ପ୍ରଶାସକ,
'ଆନନ୍ଦ', ଦୁର୍ବଳ ଦୀନ ଦୁଃଖୀର ସେବକ।
'ସୁଖ' ସଙ୍କୁଚିତ ହୁଏ ଧୂଳି ମାଟି ଦେଖି
'ଆନନ୍ଦ' ଧୂଳିରେ ଗଡ଼େ ସକଳ ଉପେକ୍ଷି।
'ଆନନ୍ଦ' ନିଃସ୍ୱାର୍ଥପର,'ସୁଖ' ସ୍ୱାର୍ଥପର
ସୁଖକୁ ଜାଣିବୁ ବାବୁ ଦୁଃଖ ନାମାନ୍ତର।

''ଆନନ୍ଦ'' ଓ 'ଆତ୍ମତତ୍ତ୍ୱ' ଦୁଇ ବସ୍ତୁ ନୁହେଁ,
ଆନନ୍ଦ ସ୍ୱରୂପ ପରା ଅଦ୍ୱୈତ ସେ ଦୁହେଁ।
ମୋଦନୀୟ ମାନେ ପୁତ୍ର ଆନନ୍ଦ ସ୍ୱରୂପ,
'ଆତ୍ମା' ଓ 'ଆନନ୍ଦ' ସଦାବେଳେ ଏକ ରୂପ।
ଆତ୍ମଜ୍ଞ ଆନନ୍ଦମୟ, ଆନନ୍ଦର ମୂର୍ତ୍ତି
ଯାହାଙ୍କର ହେଉଥାଏ ସଦା ଆତ୍ମସ୍ଫୂର୍ତ୍ତି।

Digitized by srujanika@gmail.com

ମୁଁ ମନେ କରୁଛି ପୁତ୍ର ତୋହରି ନିମନ୍ତେ
ଆତ୍ମ-ଭବନର ଦ୍ୱାର ଖୋଲା ଅବିରତେ ।
ବାହ୍ୟ ଆବରଣ ବାଧା ନ ଅଛି ଯାହାରି
ସେହିତ ନିଶ୍ଚିତ ରୂପେ ବ୍ରହ୍ମ ଅଧିକାରୀ ।''

ଆରମ୍ଭୁଁ ଶିଷ୍ୟର କରି ଏତେ ପରଶଂସା,
ଯମ ରଖିଥିଲେ ମନେ ଏପରି ଭରସା,
ଅଚିରେ ଆତ୍ମଜ୍ଞ ହେବ ଏ ଶିଷ୍ୟ ତାଙ୍କରି
ସେ ପାଇଁ ଆନନ୍ଦେ ବୁକୁ ଉଠୁଥିଲା ଭରି ।

ନିଜ ପ୍ରଶଂସାରେ କିନ୍ତୁ ଗଉତମ-ସୁତ
ନଚିକେତା ହେଲେ ନାହିଁ ତିଳେ ଅଭିଭୂତ ।
ଶୁଣିଲେ ନିଜର ନିନ୍ଦା ଅଥବା ପ୍ରଶସ୍ତି
ପ୍ରକୃତ ସାଧକ କିଛି ଚିନ୍ତା ନ କରନ୍ତି ।
ତାଙ୍କର ତ ଥାଏ ଏକ ଚିନ୍ତା ଏକ ଧ୍ୟାନ
ତାଙ୍କ ଗୁହ୍ୟ ପ୍ରଶ୍ନ କେଉଁ ହେବ ସମାଧାନ ।
ଗୁରୁ ମୁଖ ବଚନକୁ ତେରି ଥାନ୍ତି କାନ
ମନ-ମୁନେ କରିବାକୁ ଜ୍ଞାନାମୃତ ପାନ ।
ପୂର୍ଣ୍ଣଜ୍ଞାନ ପାଇବାକୁ ଅଟଳ ମତିରେ
ଯମଙ୍କୁ ପୁଣି ପ୍ରଶ୍ନ ପଚାରି ବସିଲେ –

**ସର୍ବାତୀତ ବସ୍ତୁ ବିଷୟରେ ପ୍ରଶ୍ନ**

**ଅନ୍ୟତ୍ର ଧର୍ମାଦନ୍ୟତ୍ରାଧର୍ମାଦନ୍ୟତ୍ରାସ୍ମାତ୍ କୃତାକୃତାତ୍ ।**
**ଅନ୍ୟତ୍ର ଭୂତାଚ୍ଚ ଭବ୍ୟାଚ୍ଚ ଯତ୍ ତତ୍ ପଶ୍ୟସି ତଦ୍ ବଦ ॥ ୧୪ ॥**

''କହ ଯମରାଜ କହ କୃପା-ନିକେତନ,
ଧର୍ମ ଅଧର୍ମରୁ ଭିନ୍ନ ସେ ତତ୍ତ୍ୱ କଅଣ ?
କାର୍ଯ୍ୟ ଓ କାରଣ ଠାରୁ ଊର୍ଦ୍ଧ୍ୱେ ଯାହା ସ୍ଥିତ,
ଯେ ଅତୀତ ଭବିଷ୍ୟତ କାଳର ଅତୀତ ।
ସେହି ସତ୍ୟ ବସ୍ତୁ ତମେ ଜାଣିଅଛ ଯାହା,
ଦୟାକରି ଗୁରୁଦେବ କହ ମୋତେ ତାହା'' ॥ ୧୪ ॥

Digitized by srujanika@gmail.com

ଏ ଆତ୍ମା ରହେ କି ନାହିଁ ମରଣର ଅନ୍ତେ,
ନଚିକେତା ଏ ବିଷୟ ଜାଣିବା ନିମନ୍ତେ,
ପୂର୍ବରୁ ପଚାରି ଥିଲେ, ଏଥର ନିର୍ଭୟେ,
ପଚାରନ୍ତି ଆତ୍ମାଙ୍କର ସ୍ୱରୂପ ବିଷୟେ ।

ଧର୍ମାଧର୍ମୁଁ ଭିନ୍ନ କାର୍ଯ୍ୟ କାରଣୁ ପୃଥକ,
କାଳାତୀତ ଆତ୍ମାଙ୍କର ସ୍ୱରୂପ ସମ୍ୟକ,
ଜାଣିବାକୁ ଇଚ୍ଛା କରି ଗୌତମ ନନ୍ଦନ,
ବାଢ଼ିଲେ ଯମଙ୍କ ଆଗେ ନମ୍ର ନିବେଦନ ।

''ଧର୍ମ ତାହା, ଯାହା ଶାସ୍ତ୍ର ବିଧି ରୂପ କର୍ମ,
ନିଷିଦ୍ଧ କର୍ମକୁ କୁହା ହୁଅଇ ଅଧର୍ମ,
ଧର୍ମ କର୍ମେ ସ୍ୱର୍ଗ ସୁଖ ମିଳଇ ଶେଷରେ,
ଅଧର୍ମ ଆଚରି ପ୍ରାଣୀ ପଡ଼େ ନରକରେ ।
ଆତ୍ମ-ବସ୍ତୁ ହେବେ ନାହିଁ କେବଳ ତ ଧର୍ମ,
ସେପରି ହୋଇବେ ନାହିଁ କଦାପି ଅଧର୍ମ,
ଯେଣୁ ଆତ୍ମା ଏକ ଅଦ୍ୱିତୀୟ ସର୍ବମୟ
ସେ କେହ୍ନେ ହୋଇବେ ମାତ୍ର ଏକର ବିଷୟ ?
ଏଥିରେ ତାଙ୍କର ସର୍ବବ୍ୟାପକତା ଗୁଣ
ନିଶ୍ଚିତ ଭାବରେ ସିନା ହୋଇ ଯିବ କ୍ଷୁଣ୍ଣ ।
ପ୍ରକାଶ ଅସ୍ତିତ୍ୱ ଜାଣୁଥିଲେ ଅନ୍ଧକାର,
ମରଣ ନ ଥିଲେ ଏହି ଜୀବନ ଅସାର ।
ପ୍ରକାଶ ଦେଖଇ ସବୁ ଧର୍ମ ଓ ଅଧର୍ମ,
ସୁଖ ଦୁଃଖ ଲାଭ କ୍ଷତି, ଜନ୍ମ-ମୃତ୍ୟୁ କ୍ରମ ।

ରାସ୍ତା କଡ଼ ବତୀ କରେ ରାସ୍ତା ଆଲୋକିତ
ଯେ ଆସେ ତା' ତଳେ ସବୁ ହୁଏ ପ୍ରକାଶିତ ।
ଖୁଣ୍ଟ ବତୀ ଗୋଟି ମାତ୍ର ସାକ୍ଷୀ ରୂପେ ରହି
ତଳ ଚଳାଚଳ ସବୁ ପ୍ରକାଶ କରଇ,
ସାଧୁ ଦେଖି ସେ ପ୍ରକାଶ ଫୁଲି ଉଠେ ନାହିଁ,
ଅବା ଚୋର ଆସିଗଲେ ନ ଲୁଚଇ କାହିଁ ।

ବିପରୀତେ ବତୀର ତ ସମ ଆଚରଣ,
ପ୍ରକାଶ କରିବା ତେହ୍ନେ ଆତ୍ମାଙ୍କ ଲକ୍ଷଣ ।

Digitized by srujanika@gmail.com

ଚୈତନ୍ୟ ସ୍ୱରୂପ ଆତ୍ମା ରହି ହୃଦୟରେ
ଧର୍ମାଧର୍ମ ବିଚାରନ୍ତି ସଦ୍‌ବୁଦ୍ଧି ବଳରେ।
ଆତ୍ମ-ତତ୍ତ୍ୱ ତେଣୁ ଧର୍ମ ଅଧର୍ମୁ ପୃଥକ
ସାକ୍ଷୀ ରୂପେ ସେ କେବଳ ତା'ର ପ୍ରକାଶକ।
ସେ ଆତ୍ମାଙ୍କ ବିଷୟରେ ହେବା ପାଇଁ ବୋଧ,
ଦିଅ ଶିକ୍ଷା ଗୁରୁଦେବ, କରେ ଅନୁରୋଧ।

କାର୍ଯ୍ୟ ଓ କାରଣ ଊର୍ଦ୍ଧ୍ୱେ ଯେଉଁ ତତ୍ତ୍ୱ ଥାଏ
ତାହା ତମ ଠାରୁ ଜାଣିବାକୁ ମୁହିଁ ଚାହେଁ।
ପ୍ରତି କାର୍ଯ୍ୟ, କାରଣର ଅଟେ ବ୍ୟକ୍ତ ରୂପ
ସ୍ଥାନେ କାଳେ କାରଣଟି ଧରେ କାର୍ଯ୍ୟରୂପ।
ବିହନ ବୁଣିଲେ କ୍ଷେତେ ଗଛ ଉପୁଜଇ
ଗଛର କାରଣ ଏହି ବିହନ ଅଟଇ।
କାରଣର କାରଣକୁ ଖୋଜି ଖୋଜି ଯାଇ
ଶେଷେ ଚିନ୍ତା ଈଶ୍ୱରଙ୍କ ପାଖେ ଲାଖିଥାଇ।

ସେ ସ୍ୱୟଂଭୂ ତାଙ୍କର ତ ନ ଅଛି କାରଣ,
ସେହି ତ ପରମେଶ୍ୱର ଅନାଦି କାରଣ।
ଅନାଦି ହେଲେ ବି ସେହି ଜଗତ କାରଣ,
ତେଣୁ କାର୍ଯ୍ୟ ସାଥେ ତାଙ୍କ ରହୁଛି ବନ୍ଧନ।
ମୋହରି ତ ପ୍ରଶ୍ନ, କାର୍ଯ୍ୟ କାରଣୁ ପୃଥକ
ସେହି ଆତ୍ମ-ତତ୍ତ୍ୱ ଯାହା ସର୍ବ ପ୍ରକାଶକ।
ଏ ଆତ୍ମା ନୁହନ୍ତି ନିଜେ କାର୍ଯ୍ୟ ବା କାରଣ
କିନ୍ତୁ ସେ ତ ଉଭୟର ଜ୍ଞାତା ଅନୁକ୍ଷଣ।
ସେ ଆତ୍ମାଙ୍କ ବିଷୟରେ ହେବାପାଇଁ ବୋଧ
ଦିଅ ଶିକ୍ଷା ଗୁରୁଦେବ, କରେ ଅନୁରୋଧ।

ଅଖଣ୍ଡ ଓ ଅବିଭାଜ୍ୟ କାଳକୁ ତ ଆମେ
ବିଭକ୍ତ କରିଛୁ ତିନି ଭାଗେ ତିନି ନାମେ।
ଅତୀତ ଓ ଭବିଷ୍ୟତ ପୁଣି ବର୍ତ୍ତମାନ
ଦେଶ କାଳ ଊର୍ଦ୍ଧ୍ୱେ କିନ୍ତୁ ଆତ୍ମା ବିଦ୍ୟମାନ।
ସବୁକାଳେ ସବୁ ସ୍ଥାନେ ସବୁ ପଦାର୍ଥରେ
ଆତ୍ମା ବ୍ୟାପି ରହିଛନ୍ତି ସମାନ ଭାବରେ।

Digitized by srujanika@gmail.com

ଆତ୍ମାଙ୍କର ଦୁଇ ମୁଖ୍ୟ ବିଭାଗ କଥିତ
ଏକ ସର୍ବଗତ ଆନ ଏକ ସର୍ବାତୀତ ।
ଯିଏ ସର୍ବାତୀତ ପୁଣି ସେହି ସର୍ବଗତ
ତେଣୁ ଜଣା ଯାଆନ୍ତି କି ସେ ଆଶ୍ଚର୍ଯ୍ୟବତ ।
ସେ ଆତ୍ମାଙ୍କ ବିଷୟରେ ହେବା ପାଇଁ ବୋଧ
ଦିଅ ଶିକ୍ଷା ଗୁରୁଦେବ, କରେ ଅନୁରୋଧ ॥''

## ଓଁକାରୋପଦେଶ

**ସର୍ବେ ବେଦା ଯତ୍ ପଦମାମନନ୍ତି**
**ତପାଂସି ସର୍ବାଣି ଚ ଯଦ୍ ବଦନ୍ତି ।**
**ଯଦିଚ୍ଛନ୍ତୋ ବ୍ରହ୍ମଚର୍ଯ୍ୟଂ ଚରନ୍ତି**
**ତତ୍ତେ ପଦଂ ସଂଗ୍ରହେଣ ବ୍ରବୀମି – ଓଁ ଇତ୍ୟେତତ୍ ॥ ୧୫ ॥**

ଉତ୍ତରେ କହିଲେ ଯମ, ''ଶୁଣରେ ନନ୍ଦନ,
ଯାହାଙ୍କ ସ୍ୱରୂପ ବେଦ କରନ୍ତି କୀର୍ତ୍ତନ,
ଯାହାଙ୍କ ନିମନ୍ତେ ସବୁ ତପସ୍ୟା ସାଧନ
ଯାହାଙ୍କ ସକାଶେ ବ୍ରହ୍ମଚର୍ଯ୍ୟ ଆଚରଣ,
ସେ ବ୍ରହ୍ମଙ୍କ ତତ୍ତ୍ୱ ତୋତେ କହୁଚି ଚୁମ୍ବକେ,
''ଓଁ'' ପଦବାଚ୍ୟ ତାହା ବିଦିତ ମୂଳକେ ॥ ୧୫ ॥

''ବାବୁରେ ଦୁର୍ଜ୍ଞେୟ ଅତି ବ୍ରହ୍ମତତ୍ତ୍ୱ ପରା,
ସହଜ ବୁଦ୍ଧିରେ କେବେ ନ ପଡ଼ଇ ଧରା ।
ହଠାତ୍ ଏହାକୁ କଲେ ତୋ ଆଗେ ବର୍ଣ୍ଣନା
ହୁଏ ତ ତୋ ମନେ କରି ନ ପାରୁ ଧାରଣା ।
ତେଣୁ ଏ ଓଁକାର ତତ୍ତ୍ୱ ମୂଳରୁ କହୁଛି
ଏଥିରେ ସହଜ ବୋଧ ହେବ ମୁଁ ଭାବୁଛି ।

ଶୁଦ୍ଧ ବୁଦ୍ଧିରେ ଯେ ତତ୍ତ୍ୱ ହୁଏ ଉପଲବ୍ଧ
ଅଶୁଦ୍ଧ ମନେ ତା କେହ୍ନେ ହୋଇବ ସମ୍ଭବ ?
ମନ ଶୁଦ୍ଧି ପାଇଁ ବାପ ଗୌତମ ନନ୍ଦନ
ସହାୟକ ହେବ ଏହି ଓଁକାର ସାଧନ ।

Digitized by srujanika@gmail.com

ମଣିଷ ଜୀବନ ଲକ୍ଷ୍ୟ ଆତ୍ମ ଦରଶନ,
ବେଦ କରେ ଏଥିପାଇଁ ପଥ ପ୍ରଦର୍ଶନ।
ପୃଥକ ନୁହନ୍ତି ଆତ୍ମା ବ୍ରହ୍ମ କଦାଚନ,
ସବୁ ବେଦ କରିଥାନ୍ତି ତା' ପ୍ରତିପାଦନ।
କେନ୍ଦ୍ରକୁ ପରିଧି ସାଥେ ମିଶାଇବା ପାଇଁ,
ଯେତେ ସବୁ ସିଧା ରେଖା ଲମ୍ବି ଯାଇ ଥାଇ,
କୌଣସିଟି ନୁହେ ଯେହ୍ନେ ସମାନ ଅନ୍ତର
ତେହ୍ନେ ଭିନ୍ନ ମାର୍ଗୀ ଉପନିଷଦ ସକଳ।
କିନ୍ତୁ ପରିଧିରୁ ଆସି ରେଖା ସମୁଦାୟେ,
ଏକ କେନ୍ଦ୍ର ବିନ୍ଦୁ ପରେ ଯେହ୍ନେ ମିଶିଥାଏ,
ଏକ ଶତ ଆଠ ଉପନିଷଦ ସେପରି
ଏକ ଆତ୍ମ-ତତ୍ତ୍ୱ ପଥ ଦେଖାନ୍ତି ଯେପରି।

କେବଳ ଅନାତ୍ମ ବସ୍ତୁ ବାହ୍ୟ ଆବରଣ,
ଆତ୍ମାଙ୍କୁ ନିରତେ କରିଥାନ୍ତି ଆଚ୍ଛାଦନ,
ଏ ଆବରଣକୁ ଦୂରେ ହଟାଇବା ପାଇଁ
ତପସ୍ୟାଦି ବ୍ରହ୍ମଚର୍ଯ୍ୟ କରାଯାଇ ଥାଇ।

ବ୍ରହ୍ମଙ୍କ ପ୍ରତୀକ ଓଁ ଅତି ସଂକ୍ଷେପରେ,
କହିଅଛି ନଚିକେତା ତୋହରି ଆଗରେ।

'ଅ' 'ଉ' 'ମ' ତିନି ବର୍ଣ୍ଣ ସମ୍ମିଳନେ
ଉତ୍ପନ୍ନ ହୋଇଛି ଓଁ ଋଷିଙ୍କ ଚିନ୍ତନେ।
ଏ ଅକ୍ଷର ସୃଷ୍ଟି ସ୍ଥିତି ଲୟର ପ୍ରତୀକ
ବୁଝାଏ ଜାଗ୍ରତ ସ୍ୱପ୍ନ ସୁଷୁପ୍ତି ଅଧିକ।
ନିର୍ଗୁଣ ଅବ୍ୟକ୍ତ ନିରାକାରଙ୍କ ଅର୍ଚ୍ଚନା
କିଏ ବା କିପରି କରିପାରିବ କଳ୍ପନା ?
ସେ ପାଇଁ ପ୍ରଥମ ରୂପ ହେଲା ବ୍ରହ୍ମଙ୍କର
ଏହି ଓଁ କାର ରୂପୀ ବ୍ରହ୍ମ ଏକାକ୍ଷର।

ଯେତେ ସବୁ ବର୍ଣ୍ଣମାଳା ଏ ଓଁକାର ଜାତ,
ଧ୍ୱନିର ଅସ୍ଫୁଟ ରୂପ ଓଁକାର ବିଖ୍ୟାତ।

Digitized by srujanika@gmail.com

ଜଗତର ଆଦି ଯେହ୍ନେ ବ୍ରହ୍ମ ନିରାକାର
ସକଳ ଧ୍ୱନିର ଆଦି ଓଁ ସେ ପ୍ରକାର ।
ଧ୍ୱନିର ବିସ୍ତୃତି ହେଲା ଶବ୍ଦ, ଭାବ ଆଦି
ଭାବରୁ ଉତ୍ପନ୍ନ ବସ୍ତୁ ଜଗତ ଇତ୍ୟାଦି ।
ଏହି ହେଲା ଧାରା, – ସୂକ୍ଷ୍ମ ସ୍ଥୂଳ ଅନୁକ୍ରମେ
ଜଗତ-କୁସୁମ ଫୁଟି ଅଛି ମନୋରମେ ।
ତ୍ରିମାତ୍ରା ଓଁ କାର ମଧ୍ୟେ ଅର୍ଦ୍ଧ ମାତ୍ରା ସ୍ଥିତ
ସେ ସ୍ଫୋଟ, ଅନଭିବ୍ୟକ୍ତ ସତ୍ତା ସୁବିଦିତ ।
ବ୍ରହ୍ମଙ୍କ ଅନଭିବ୍ୟକ୍ତ ସ୍ୱରୂପଟି ଓଁ,
ବାପ, ଶବ୍ଦ-ବ୍ରହ୍ମ ସେହି ଜାଣିବୁ ମରମ ॥

**ଏତଦ୍ଧ୍ୟେବାକ୍ଷରଂ ବ୍ରହ୍ମ ଏତଦ୍ଧ୍ୟେବାକ୍ଷରଂ ପରମ୍ ।**
**ଏତଦ୍ଧ୍ୟେବାକ୍ଷରଂ ଜ୍ଞାତ୍ୱା ଯୋ ଯଦିଚ୍ଛତି ତସ୍ୟ ତତ୍ ॥ ୧୬॥**

ଅପର ବ୍ରହ୍ମ ସ୍ୱରୂପେ ଖ୍ୟାତ ଏ ଅକ୍ଷର
ଏହି ସେହି ପରବ୍ରହ୍ମ ସ୍ୱରୂପ ଆବର ।
ପରବ୍ରହ୍ମ ବା ଅପର ବ୍ରହ୍ମରୂପେ ଜାଣି,
ଓଁକାରର ଉପାସନା କରନ୍ତି ଯେ ଜ୍ଞାନୀ,
ତାଙ୍କର ତଦନୁସାରେ ହୁଏ ଫଳ ଲାଭ
ଏକାକ୍ଷର ଅର୍ଚ୍ଚନାର ଅଦ୍ଭୁତ ପ୍ରଭାବ ॥ ୧୬ ॥

ଓଁକାର ଉପାସନା-ତତ୍ତ୍ୱ ଏ ମନ୍ତ୍ରରେ
କହନ୍ତି ଗୁରୁଜୀ ନଚିକେତାଙ୍କ ଆଗରେ ।
"ଆଗରୁ କହିଛି ପୁତ୍ର ଏ ଓଁ ଅକ୍ଷର
ସେ ପରମ ସତ୍ୟଙ୍କର ପ୍ରତୀକ କେବଳ ।
ବିଷ୍ଣୁଙ୍କ ପ୍ରତୀକ ଭାବି ବିଷ୍ଣୁ ଭକ୍ତ ଜନେ,
ଖଟୁଳିରେ ଶାଳଗ୍ରାମ ପୂଜନ୍ତି ଯେସନେ,
ରାଜ ମୁକୁଟରେ ରାଜଶକ୍ତି ଭରା ପରି
ଶିବଲିଙ୍ଗ, ଶିବ-ତତ୍ତ୍ୱ ପ୍ରତୀକ ଯେପରି
ପରବ୍ରହ୍ମ ବା ଅପରବ୍ରହ୍ମ ଉଭୟର
ପ୍ରତୀକ ଜାଣିବୁ ବାପ ଏ ଓଁ ଅକ୍ଷର ।

ପର ଓ ଅପର ଭେଦେ ବ୍ରହ୍ମ କଣ ଦୁଇ-
ଭାବି ମନେ ବାବୁ ଭ୍ରମି ହେଉଥିବୁ ତୁହି ।

Digitized by srujanika@gmail.com

କିନ୍ତୁ ପ୍ରକୃତରେ ବ୍ରହ୍ମ ପୃଥକ ନୁହନ୍ତି
ଏକ ବ୍ରହ୍ମ ଦୁଇ ରୂପେ ସଦା ପ୍ରକାଶନ୍ତି ।
ଜଳ ବାଷ୍ପ ଦୁଇ ଭିନ୍ନ ଅବସ୍ଥା ଯେସନେ
ପର ଓ ଅପର ଦୁଇ, ବ୍ରହ୍ମର ତେସନେ ।
ପରଠୁଁ ଅପେକ୍ଷାକୃତ ସ୍ଥୂଳ ଯେ ଅପର
ପର ହିଁ ତ ବ୍ରହ୍ମ ମାତ୍ର ଅପର ଈଶ୍ୱର ।

ବ୍ରହ୍ମ ଅଜ ନିରାକର ନିର୍ଗୁଣ ବ୍ୟାପକ
ଈଶ୍ୱର ସସୀମ ଶାନ୍ତ ପ୍ରୀତି ପ୍ରଦାୟକ ।
ଅନନ୍ତ ସାଗର ଜଳ ପାତ୍ରର ଭିତରେ
ଶାନ୍ତ ଓ ସୀମିତ ରୂପ କାନ୍ତି ଯେହ୍ନେ ଧରେ ;
ସୁନାମୁଣ୍ଡା ଅଳଙ୍କାର ଅଟଇ ଯେସନେ,
ଏ ବ୍ରହ୍ମ ଈଶ୍ୱର ବାପ ଅଟନ୍ତି ତେସନେ ।

ପରବ୍ରହ୍ମ କେବଳ ତ ଜ୍ଞାତବ୍ୟ ଅଟନ୍ତି
ତାଙ୍କୁ କେହି କେତେବେଳେ ପାଇ ନ ପାରନ୍ତି ।
ମାତ୍ରକ ଅପରବ୍ରହ୍ମେ କରାଯାଏ ଲାଭ
ସୃଷ୍ଟି ସ୍ଥିତି ଲୟକାରୀ ଯେ ଭିନ୍ନ ସ୍ୱଭାବ ।

ପରବ୍ରହ୍ମ ଯିଏ ଆମ ସ୍ୱରୂପ ଅଟନ୍ତି
ତାହାଙ୍କୁ ପାଏନା କେହି ମାତ୍ରକ ଜାଣନ୍ତି ।
କିନ୍ତୁ ହୃଦେ ଅନୁଭବ ତାଙ୍କରି ହୁଅଇ
ମନ କ୍ରମ ବଚନେ କେ ତାଙ୍କୁ ନ ଲଭଇ ।
ସୃଷ୍ଟି ସ୍ଥିତି ଲୟକାରୀ ଯେ ପରମେଶ୍ୱର
ହୋଇ ପାରିବେ କି ସେହି ସ୍ୱରୂପ ଆମର ?

ନିଜ ସ୍ୱରୂପଠୁଁ ଭିନ୍ନ ଯେହୁ ଏ ଜଗତେ
ତାହାଙ୍କୁ କେବଳ ଲାଭ କରନ୍ତି ସମସ୍ତେ ।
ସେବା ପୂଜା ଆରାଧନା ଉପାସନା କରି
ଭକ୍ତ ପ୍ରଭୁ ସାନ୍ନିଧତା ଲଭନ୍ତି ଯେପରି ।
ହସି ଖେଳି ନାଚି କୁଦି ନାନା ଗୀତ ଗାଇ
ଭକ୍ତ ଲଭେ ଭଗବାନ ସାନ୍ନିଧ ବଢ଼ାଇ ।

Digitized by srujanika@gmail.com



ପୁଣି କେବେ କେବେ ଅବା ପ୍ରଭୁ ସ୍ୱରୂପତା
ଲଭଇ ଭକତ ଜନ ଭୁଲି ନିଜ ସତ୍ତା ।
ନିଜକୁ ପାଶୋରି ପୂର୍ବେ ବ୍ରଜ ନାରୀ ଗଣେ
କୃଷ୍ଣ ସ୍ୱରୂପତା ଭାବ ଲଭିଲେ ଯେସନେ
'ମୁଁ କୃଷ୍ଣ' 'ମୁଁ କୃଷ୍ଣ' କହି ଅପର ଗୋପୀରେ
ଚୁମ୍ୱ ଆଲିଙ୍ଗନ ଦେଉଥିଲେ କି ପ୍ରୀତିରେ ।
ଅପର ବ୍ରହ୍ମ-ହିରଣ୍ୟଗର୍ଭ ଅବସ୍ଥାରେ
ସାଧକ ଲଭଇ ଆତ୍ମସ୍ଫୂର୍ତ୍ତି ଏକାଧାରେ ।

ସ୍ୱରୂପ ଜାଣିଲେ ବାପ ଅଜ୍ଞାନ ତୁଟଇ,
ଜୀବ ଜନ୍ମ-ମୃତ୍ୟୁ ଦୁଃଖ ଆଉ ନ ଭୋଗଇ ।
ପାଇବା ଜାଣିବା ଦୁଇ କଥା ଏଇଠାରେ
ଭିନ୍ନ ନୁହେଁ ବୋଲି ବାବୁ ବୁଝିବୁ ବିଚାରେ ।
ଅପ୍ରାପ୍ତ ପଦାର୍ଥ ସିନା ହୁଅଇ ପ୍ରାପତ
ଯାହା ପ୍ରାପ୍ତ, ତାହା ଆଉ ପାଇବା କେମନ୍ତ ?
କେବଳ ହୁଅଇ ତାର ଅନୁଭବ ଯାହା
ମନରେ ତୁ ବାବୁ ଧରି ରଖିଥିବୁ ତାହା ।
ଏକ ବସ୍ତୁ ଭିନ୍ନ ରୂପେ ଦିଶିଲେ ନୟନେ
ବସ୍ତୁ ଭିନ୍ନ ଭିନ୍ନ ବୋଲି କହିବା କେସନେ ?

ଆଉ ଏକ କଥା ପୁତ୍ର ରଖିବୁ ତୁ ମନେ,
ଟାଣ-ଇଚ୍ଛା ପରିପୂର୍ଣ୍ଣ ହୁଅଇ ତତ୍‌କ୍ଷଣେ ।
ଯେପରି ଭାବନା ଆମେ କରିଥାଉଁ ମନେ
ସେହିପରି ଆମେ ହୋଇ ଥାଉଁ ତ ଜୀବନେ ।
ଇଚ୍ଛାରେ ଲାଗଇ ଯେବେ ସଂକଳ୍ପର ପକ୍ଷ
ନିମିଷକେ ହୁଏ ପୂର୍ଣ୍ଣ ସେହି ମନୋରଥ ।
ପୁତ୍ର ଅସଂଶୟ ଚିତ୍ତେ ଓଁକାର ସାଧନା
ପୂର୍ଣ୍ଣ କରେ ସାଧକର ସକଳ କାମନା ॥

**ଏତଦାଲମ୍ବନଂ ଶ୍ରେଷ୍ଠମେତଦାଲମ୍ବନଂ ପରମ୍ ।**
**ଏତଦାଲମ୍ବନଂ ଜ୍ଞାତ୍ୱା ବ୍ରହ୍ମଲୋକେ ମହୀୟତେ ॥ ୧୭ ॥**

Digitized by srujanika@gmail.com

ଅପର ବ୍ରହ୍ମଙ୍କ ପ୍ରାପ୍ତି ସାଧନ ପଥରେ
ଓଁ କାରୋପାସନା ଶ୍ରେଷ୍ଠ ପଥ ମୋ ମତରେ ।
ପୁଣି ପରବ୍ରହ୍ମ ଜ୍ଞାନ ପାଇଁ ଯେ ସାଧନା
ପରମ ସାଧନ ତହିଁ ଓଁକାରୋପାସନା ।
ପରାପର ବେନି ବ୍ରହ୍ମ ସାଧନ ସ୍ୱରୂପ,
ଓଁ କାରୋପାସନା ଜାଣ, ଅତି ଅପରୂପ ।
ଏହି ଉପାୟକୁ ଯେଉଁ ସାଧକ ଜାଣଇ
ବ୍ରହ୍ମଲୋକେ ସେ କେବଳ ପୂଜିତ ହୁଅଇ । ୧୭ ।

ବ୍ରହ୍ମଙ୍କୁ ଲଭିବା ପାଇଁ ଓଁକାରୋପାସନା
ସର୍ବଶ୍ରେଷ୍ଠ ବୋଲି କରାଯାଏ ବିବେଚନା ।
ଅରୂପ ଅଲେଖ ନିରିଗୁଣ ନିରାକାର –
ବ୍ରହ୍ମ ଦରଶନ ତହିଁ ହେବ କି ପ୍ରକାର ?

ସହଜ ନୁହଇ ଯେହ୍ନେ ତପ ଆଚରଣ
ସେପରି ସହଜ ନୁହେଁ ରାଜ ଦରଶନ ।
ରାଜାଙ୍କ ବିଶ୍ୱାସୀ ଭୃତ୍ୟେ କିନ୍ତୁ ଯେଉଁ ଜନ
ସେବଇ ଅନ୍ତରୁ ଭୁଲି ନିଜ ବଡ଼ ପଣ,
ସେ କେବଳ ସେହି ଭୃତ୍ୟ ସହାୟତା ଫଳେ
ରାଜ ଦରଶନ ଲଭେ ଅତି ସହଜରେ ।
ତେସନେ ବ୍ରହ୍ମଙ୍କ ଚିହ୍ନ ଏ ଓଁ ଅକ୍ଷରେ,
ଉପାସନା କଲେ ବ୍ରହ୍ମ ମିଳନ୍ତି ସତ୍ୱରେ ।
ବ୍ରହ୍ମଙ୍କ ପ୍ରତୀକ ଯେଣୁ ଓଁକାର ଅଟଇ
ତେଣୁ ପୁତ୍ର ବ୍ରହ୍ମ ପାଶେ ସେ ଘେନି ଚଳଇ ।

ନିଜକୁ ଜଗତ ରୂପେ ପ୍ରକାଶିବା ପାଇଁ,
ବ୍ରହ୍ମଙ୍କର ଯେ ଅବ୍ୟକ୍ତ ସ୍ଥିତି ପୁତ୍ର ଥାଇ,
ତାହା ହିଁ ତ ଓଁ ବୋଲି ଶାସ୍ତ୍ରେ ସୁବିଦିତ
ତେଣୁ ଏ କରାଏ ବ୍ରହ୍ମ ପ୍ରାପ୍ତି ସୁନିଶ୍ଚିତ ।

ଏ ସାଧନେ ବ୍ରହ୍ମ ଲୋକେ ଦୁଇ ମହିମାରେ
ସାଧକ ମହିମାନ୍ୱିତ ନିଜେ ହୋଇପାରେ ।

Digitized by srujanika@gmail.com

ଏକ ମହିମାରେ ପରବ୍ରହ୍ମ ଅନୁଭୂତି,
ଆନଟି ଅପର ବ୍ରହ୍ମ ପ୍ରାପ୍ତିର ବିଭୂତି।
ପରବ୍ରହ୍ମଙ୍କୁ ରେ ବାବୁ କେ ସିନା ଜାଣିବ
କିନ୍ତୁ ତାଙ୍କୁ କେହି କେବେ ଲଭି ନପାରିବ।
ତେସନେ ଅପରବ୍ରହ୍ମ ହୁଅନ୍ତି ପ୍ରାପତ
ଧରି ଏହି ଓଁ କାର ଉପାସନା ପଥ।
ଅପରବ୍ରହ୍ମ ବା ପରବ୍ରହ୍ମ ସ୍ୱରୂପତା
ପ୍ରାପ୍ତ ହୋଇ ବ୍ରହ୍ମ ଲୋକେ ମିଳଇ ମାନ୍ୟତା।

**ହିରଣ୍ୟଗର୍ଭ**

କେ'ହିରଣ୍ୟଗର୍ଭ', ତାଙ୍କ ସ୍ୱରୂପ କିପରି,
ନଚିକେତା ଶୁଣ ମନ ମୁନ ଏକ କରି।
ଜଗତର ଆଦ୍ୟ ପରିପ୍ରକାଶର ସ୍ଥିତି
ବ୍ରହ୍ମଙ୍କ ହିରଣ୍ୟଗର୍ଭ ସ୍ୱରୂପ ଯେମିତି।

ଏହି ସ୍ଥିତି ବ୍ରହ୍ମଙ୍କର ଅବ୍ୟକ୍ତ ଅବସ୍ଥା,
ଫୁଟି ନଥାଏ ତ ତହିଁ କିଛି ବିଚିତ୍ରତା।
ତାଙ୍କ ମନେ ସୃଷ୍ଟି ଇଚ୍ଛା ହୁଏ ଯେବେ ଜାତ୍,
ସେ ଇଚ୍ଛାରୁ ପୁଣି ସୃଷ୍ଟି ହୁଏ ଆତଯାତ,
ସେହି ସୃଷ୍ଟି ମୁଖ ଅବା ସୃଷ୍ଟି ଦ୍ୱାରଦେଶ
ବୋଲାଏ ହିରଣ୍ୟଗର୍ଭ ଅବସ୍ଥା ବିଶେଷ।
'ମନଃସ୍ଥିତ' ସତ୍ତାର ସେ ପ୍ରଭାମୟ ଗର୍ଭ,
ପୁତ୍ରରେ ଜାଣିବୁ ତୁହିଁ ସେ ହିରଣ୍ୟଗର୍ଭ।

ଗର୍ଭସ୍ଥ ସନ୍ତାନ ଯେବେ ଲଭିଥାଏ ପରେ
ତାର ସ୍ଥୂଳ ଦେହ ଅଙ୍ଗପ୍ରତ୍ୟଙ୍ଗ ନିଜରେ,
ସେପରି ହିରଣ୍ୟଗର୍ଭ ସେ ଆଦ୍ୟ ଅବସ୍ଥା
ଯହିଁ ବ୍ରହ୍ମ ବିବର୍ତ୍ତିତ ଜଗତ ବ୍ୟବସ୍ଥା।
ସୃଷ୍ଟିର ପ୍ରାକ୍କାଳେ ଜଗତର ଯେଉଁ ରୂପ
ସେହି ତ ହିରଣ୍ୟଗର୍ଭ, ସେ ଉଷା ସ୍ୱରୂପ।

ଏ ହିରଣ୍ୟଗର୍ଭ ଠାରୁ ଶ୍ରେଷ୍ଠ ପରବ୍ରହ୍ମ,
ସେହି ନାରାୟଣ ପୁଣି ସେ ସତ୍ୟପରମ।

Digitized by srujanika@gmail.com

ଏ ହିରଣ୍ୟଗର୍ଭୋପ୍ରରି ସ୍ଥାନ ନାରାୟଣ
ସେ ଅଖିଳ ବ୍ରହ୍ମାଣ୍ଡର ଅନାଦିକାରଣ ।

ବ୍ରହ୍ମାଣ୍ଡରେ ସର୍ବଲୋକ ସପ୍ତଦ୍ୱୀପା ପୃଥ୍ୱୀ
ଭୂଃ ଭୁବଃ ସ୍ୱର୍ଲୋକ ସବୁ ହୋଇଛନ୍ତି ।
ଡିମ୍ୱାକାର ବ୍ରହ୍ମାଣ୍ଡରୁ ଜଗତ ପ୍ରକାଶେ
ଡିମ୍ୱଫୁଟି ଯେହ୍ନେ ପକ୍ଷୀ ଛୁଆ ଛୁଟି ଆସେ ।

## ଆତ୍ମସ୍ୱରୂପ ନିରୂପଣ

ନ ଜାୟତେ ମ୍ରିୟତେ ବା ବିପଶ୍ଚିନ୍–
ନାୟଂ କୁତଶ୍ଚିନ୍ନ ବଭୂବ କଶ୍ଚିତ୍ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ॥ ୧୮ ॥

'ଜନ୍ମ ନ ହୁଅଛି ଆତ୍ମା ଅବା ନ ମରନ୍ତି
କିଛି କେଉଁଥିରୁ ତାଙ୍କ ନ ହୁଏ ଉତ୍ପତ୍ତି ।
ଆତ୍ମାଙ୍କ ଠୁଁ ମଧ୍ୟ କିଛି ନ ହୁଅଇ ଜାତ
ସେ ବିକାରହୀନ ହୋଇ ସଦା ଆତଯାତ ।
ସେ ନିତ୍ୟ ଶାଶ୍ୱତ ସେହି ଅଟନ୍ତି ପୁରାଣ
ଦେହ ନାଶେ ଆତ୍ମା ହତ ନ ହୁଅନ୍ତି ଜାଣ ।୧୮।

''ଧର୍ମ ଆଉ ଅଧର୍ମର ପରେ ଯେ ରହନ୍ତି,
ଯେ କାହାରି କାର୍ଯ୍ୟ ଅବା କାରଣ ନୁହନ୍ତି,
ଭୂତ ଭବ୍ୟ କାଳ ଯାରେ ନ ପାରଇ ଛୁଇଁ
ସେ ତତ୍ତ୍ୱ ଜାଣିବା ପାଇଁ ଇଚ୍ଛା କଲୁ ତୁହିଁ ।
ସାକ୍ଷୀରୂପେ ପୁତ୍ର ଆମ ସର୍ଭି ହୃଦୟରେ,
ବିରାଜିତ ଯେଉଁ ଆତ୍ମା ଚୈତନ୍ୟ ରୂପରେ,
ତାହାଙ୍କୁ ଜାଣିବା ପାଇଁ ମନେ କଲୁ ବ୍ରତ
ଅଚିରେ ପୂରିବ ବାବୁ ତୋର ମନୋରଥ ।
ପ୍ରଥମେ ପରମ ତତ୍ତ୍ୱ ପ୍ରତୀକ ରୂପରେ

Digitized by srujanika@gmail.com

ଓଁ କାର ବିଷୟେ କହିଅଛି ତୋ ଆଗରେ ।
ଏବେ ତ ଇନ୍ଦ୍ରିୟ ମନ ବୁଦ୍ଧିର ଶରୀରେ
ରହୁଥିବା ଆତ୍ମା କଥା ଶୁଣ ମନ ସ୍ଥିରେ ।

ଜନ୍ମ ହୁଅନ୍ତିନି ଏଇ ଆତ୍ମା କଦାଚନ
ଅଥବା ତାଙ୍କର ନାହିଁ କେଉଁଠି ମରଣ ।
ନାଶ ହେଉଥିବା ଯେତେ ଅନିତ୍ୟ ପଦାର୍ଥ
ଷଡ଼ଭାବ ବିକାରକୁ ହୋଇଥାନ୍ତି ପ୍ରାପ୍ତ ।
ଜନ୍ମ ସ୍ଥିତି ବୃଦ୍ଧି ବ୍ୟାଧି କ୍ଷୟ ଓ ମରଣ
ଜାତ ପଦାର୍ଥର ଷଡ଼ବିକାର ଏସନ ।
ଆତ୍ମାଙ୍କ ଜନମ ମୃତ୍ୟୁ ଭାବ ଯେଣୁ ନାହିଁ
ଅପର ବିକାର ସବୁ ରହିବ କିମ୍ପାଇଁ ?
ବିକାର ରହିତ ଆତ୍ମା ସଦା ନିର୍ବିକାର
ସେ ଶାଶ୍ୱତ ସନାତନ ନିତ୍ୟ ଅଣାକାର ।

ଏ ଆତ୍ମା ଅଜନ୍ମା ବାବୁ ମରଣ ରହିତ
ଶରୀର ଜନ୍ମଇ ପୁଣି ମରଇ ନିଶ୍ଚିତ ।
କୁମ୍ଭାର ଗଢ଼ଇ ଘଟ, ହୁଏ ଘଟୋତ୍ପତ୍ତି
ତୁମେ ଲକ୍ଷ୍ୟ କର ବାବୁ ଘଟାକାଶ ପ୍ରତି ।
ଘଟର ଆକାଶ ଥିଲା ପ୍ରଥମେ ବାହାରେ
ସେ ଘଟେ ରହିଲା– କିଏ ଗଢ଼ିବ ତାହାରେ ?
ଘଟର ବିନାଶ ହୁଏ, ଯେଣୁ ତାହା ଜାତ,
ଆକାଶ ତ ସବୁ ସ୍ଥାନେ କାଳେ ଆତଯାତ ।

ସେପରି ଆତ୍ମାଙ୍କ ନାହିଁ ଉତ୍ପତ୍ତି ବା ନାଶ,
ସେ ସଦ୍ ସ୍ୱରୂପ, ନିତ୍ୟ, ସେ ସ୍ୱୟଂ ପ୍ରକାଶ
ଜୀବାତ୍ମା ତାହାରି ନିତ୍ୟ ଅବିଦ୍ୟା କାରଣେ
ତାଦାତ୍ମ୍ୟ କରଇ ତାର ଦେହ ବୁଦ୍ଧି ମନେ ।
ଘଟ ଗଢ଼ି କେ' ଆକାଶ ଘଟରେ ନ ଭରେ
ଘଟ ଗଢ଼ାଯାଏ ବ୍ୟାପ୍ତ ଆକାଶ ଭିତରେ ।
ସେହିପରି ସର୍ବବ୍ୟାପ୍ତ ଆତ୍ମାଙ୍କ ଭିତରେ
ଆତ୍ମା ସାଥେ ଏ ଶରୀର ଜନ୍ମ ଲାଭ କରେ ।

Digitized by srujanika@gmail.com

ଚୈତନ୍ୟ ସ୍ୱରୂପ ଆତ୍ମା ଶରୀର ଭିତରେ,
ବ୍ୟାପ୍ତ ହୋଇ ରହିଅଛି ତେଣୁ ନିରନ୍ତରେ ।
ଅଛ ନିତ୍ୟ ସନାତନ ଏ ଆତ୍ମା ପୁରାଣ
ସେ ଚିର ନବୀନ ପୁଣି ସେ ବିଭୁ ମହାନ୍ ।

''ବିପଶ୍ଚିତ'' ଶବ୍ଦ ଗୋଟି ବାବୁ ଏ ମନ୍ତ୍ରରେ
ଅଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଜାଣ ତୁ ମନରେ ।
ନିଜକୁ ଯେ ବ୍ରହ୍ମ ରୂପେ କରିଅଛି ଜ୍ଞାନ
ସେହି ବିପଶ୍ଚିତ ବାବୁ ସେହି ଜ୍ଞାନବାନ ।
ଅଜ୍ଞାନର ଆବରଣ ନାହିଁ ଯା ନୟନେ
ଜନ୍ମ ମୃତ୍ୟୁହୀନ ବୋଲି ଭାବେ ଯେହୁ ମନେ,
ଷଡ୍‌ଭାବ ବିକାର ହୀନ ନିଜକୁ ଯେ ଜାଣି,
ସେହି ବିପଶ୍ଚିତ ପୁତ୍ର ସେହି ଆତ୍ମଜ୍ଞାନୀ ।
କାରଣରୁ କାର୍ଯ୍ୟ ରୂପେ ଯାହା ଉତପନ୍ନ
କାଳବଶେ ସେ ସବୁର ହୁଏ ବିନାଶନ ।
କେଉଁ କାରଣରୁ ନୁହେଁ ଆତ୍ମାଙ୍କ ଉପୁଜି
ସେ ତ ସବୁ କାରଣର କାରଣ ଅଟନ୍ତି ।
ଏ ଆତ୍ମାଙ୍କ ଠାରୁ କିଛି ନ ହୁଅଇ ଜାତ
ନିର୍ବିକାର ହୋଇ ସଦା ସେ ତ ଆତଯାତ ।

ଦୁଧର ବିକାର ହେଲେ ହୋଇଥାଏ ଦହି,
ଏ ଆତ୍ମାରୁ କିନ୍ତୁ କିଛି ଜାତ ନ ହୁଅଇ ।
ଆତ୍ମାଙ୍କ ବିକାର ଅବା ପରିଣାମ ନାହିଁ,
ତେଣୁ ଆତ୍ମା ଏକ ରୂପ ସବୁବେଳ ପାଇଁ ।
ତାଙ୍କର ତ ନାହିଁ ହ୍ରାସ ବୃଦ୍ଧି ଅବା କ୍ଷୟ
ସମଭାବାପନ୍ନ ସଦା ଶାଶ୍ୱତ ଅକ୍ଷୟ ।
ପୁରାତନ ହୋଇ ମଧ୍ୟ ସେ ଚିର ନବୀନ,
ସ୍ଥାନେ କାଳେ ସେ ରହନ୍ତି ହୋଇ ଅମଳିନ ।
ଦେହ ନାଶ ଯାଏ, ନାହିଁ ଆତ୍ମାଙ୍କର ନାଶ
ସେ ତ ସନାତନ ଧ୍ରୁବ ନିତ୍ୟ ଅବିନାଶ ।
ବ୍ୟାପ୍ତ ଏ ଆକାଶ ଯେହ୍ନେ ନ ହୁଅଇ ହତ,
ତେହ୍ନେ ଆତ୍ମା ନ ହୁଅନ୍ତି କାହିଁରେ ନିହତ ।

Digitized by srujanika@gmail.com

ଆତ୍ମା ଭିନ୍ନ ଅନ୍ୟ କିଛି ବସ୍ତୁ ଆଉ ନାହିଁ
ଚରାଚରେ ଜଳେ ସ୍ଥଳେ ବ୍ୟାପ୍ତ ସବୁଠାଇଁ।
ପୁତ୍ରରେ ତୁ ଦୃଢ଼ମନା ହୁଅ ଏଇମିତି
ବ୍ରହ୍ମ ବିନା ଆଉ ନାହିଁ କାହାରି ତ ସ୍ଥିତି।

ଏ ଆତ୍ମା ମରେନି, ଦେହ ଆମରି ମରୁଚି
ଏ କଥାକୁ ଦୋହରାଇ ମୁଁ ତୋତେ କହୁଛି।
କହିବାର କାରଣ ତୁ ବୁଝରେ ନନ୍ଦନ
ତାହା, ଥାଏ ଯେଣୁ ଦୃଢ଼ ସଂସ୍କାର ବନ୍ଧନ।
ସର୍ବି ମନେ ଦୃଢ଼ ମୂଳ ଧାରଣା ରହୁଚି,–
ଦେହ ସାଥେ ଆମ ଜନ୍ମ ମରଣ ହେଉଛି।
ଅଭିନ୍ନ ନୁହନ୍ତି ଦେହ ଆତ୍ମା କଦାଚନ
ଦେହ ସାଥେ ଆତ୍ମାଙ୍କର ନହୁଏ ମରଣ।

ଘରେ ମୁଁ ରହୁଚି ବୋଲି ମୁଁ ନୁହଁଇ ଘର
ଘର ଭାଙ୍ଗିଗଲେ ନାଶ ନହୁଏ ମୋହର।
ଗାଡ଼ିରେ ଯାଉଛି ବୋଲି ମୁଁ ଗାଡ଼ି ନୁହଁଇ
ଗାଡ଼ି ସିନା ମୋତେ ନବା ଆଣିବା କରଇ।
ଦେହ ବଦଳଇ ସଦା କିନ୍ତୁ ଆତ୍ମା ସ୍ଥିର
ଦେହ ସୁଖ ଦୁଃଖେ ସେହି ନୁହନ୍ତି ଅସ୍ଥିର।

ଦେହ ମନ ଧର୍ମ ସବୁ ଥାପି ଆତ୍ମା ପରେ
ଆମେ ସବୁ ସୁଖୀ ଦୁଃଖୀ ହେଉଛୁଁ ମିଛରେ।
ଆମେ ଯାହା ନୋହୁ, ତାହା ମନରେ ବିଚାରି
ନିଜକୁ ସୀମିତ ଭାବି ଦୁଃଖେ ହେଉ ଘାରି।
ନିଜଠି ଉପାଧି ଧର୍ମ କରି ଆରୋପଣ
ଅଯଥା ଜୀବନ ବ୍ୟାପୀ ଭୋଗୁଛୁ କଷଣ।
ଏ ସତ୍ୟକୁ ମନେ ଦୃଢ଼ କରିବାର ପାଇଁ
କହୁଅଛି ତେଣୁ ସେହି କଥା ଦୋହରାଇ।
ବାରମ୍ବାର ଶୁଣି ଯେହ୍ନେ ଶୁଆ ପଢ଼େ ପାଠ
ସଂସ୍କାର ପୋଛିବା ପାଇଁ ତେଣୁ ଏହି ବାଟ।

Digitized by srujanika@gmail.com



ଆତ୍ମା ଏହିପରି ବୋଲି ନିର୍ଦ୍ଦିଷ୍ଟ ରୂପରେ
କେ କହି ପାରେନା ପୁତ୍ର ଏ ସାରା ସଂସାରେ ।
ନେତି ନେତି କହି ବେଦ କେବଳ ସୂଚାଏ
କିନ୍ତୁ ଆତ୍ମ-ସୂତ୍ର ବାପ କେହି ତ ନପାଏ ।
କାମୁଡ଼ିବା ପାଇଁ ନିଜ ଲାଙ୍ଗୁକୁ କୁକୁର
କ୍ରମାଗତ ଭାବେ ଘୂରି ହୁଅଇ ଆତୁର ।
କିନ୍ତୁ ଲାଙ୍ଗୁକୁ ସେ ଧରି ନପାରେ ଯେସନେ
କେ'ପାରିନି ଧରି ଆତ୍ମ-ତତ୍ତ୍ୱକୁ ତେସନେ ।
କେ' ସୂର୍ଯ୍ୟଙ୍କୁ ଦେଖାଇବ ପ୍ରଦୀପ ଜଳାଇ ?
ସୂର୍ଯ୍ୟାଲୋକେ ଦୀପାଲୋକ ମ୍ଳାନ ପଡ଼ିଥାଇ ।
ଯେ ଆତ୍ମ-ପ୍ରକାଶେ ସାରା ସୃଷ୍ଟି ପ୍ରକାଶିତ
ସେହି ଆତ୍ମା କି ପ୍ରକାଶେ ହୋଇବେ ବିଦିତ ?
ଯାହାଙ୍କ ତେଜରେ ସୂର୍ଯ୍ୟ ଚନ୍ଦ୍ର ତାରାପନ୍ତି
ବିଦ୍ୟୁତ ସମୂହ ନଭ ଦେଶେ ଝଟକନ୍ତି ।
ସେ ଅବା ତାହାଙ୍କୁ କେଉଁ କରିବେ ପ୍ରକାଶ ?
ଆତ୍ମ-ତତ୍ତ୍ୱ ସର୍ବମୟ, ସେ ସ୍ୱୟଂ ପ୍ରକାଶ ।

**ଆତ୍ମା ହତ୍ୟା କରନ୍ତି ନି କି ହତ ହୁଅନ୍ତି ନି**

**ହନ୍ତା ଚେନ୍ ମନ୍ୟତେ ହନ୍ତୁଂ ହତଶ୍ଚେନ୍ ମନ୍ୟତେ ହତମ୍ ।**
**ଉଭୌ ତୌ ନ ବିଜାନୀତୋ ନାୟଂ ହନ୍ତି ନ ହନ୍ୟତେ ॥୧୯॥**

ହତ୍ୟାକାରୀ ଯଦି କରେ ମନରେ ପୋଷଣ
ମୁଁ ନିଶ୍ଚିତ ଭାବେ ତାକୁ କରିବି ନିଧନ,
ଅଥବା ନିହତ ବ୍ୟକ୍ତି ଯଦି ଭାବେ ମନେ,
ମୁହିଁ ତାହା ଦ୍ୱାରା ହତ ହୋଇଛି ଜୀବନେ,
ତେବେ ସେ ଉଭୟେ ଜାଣି ନାହାନ୍ତି ଏ ତତ୍ତ୍ୱ,
ହତ୍ୟା ନ କରନ୍ତି ଆତ୍ମା, ନ ହୁଅନ୍ତି ହତ । ୧୯ ।

Digitized by srujanika@gmail.com

ପ୍ରଥମରେ ତୁ ପୂର୍ବ ଶ୍ଳୋକେ ଯାହା ଥିଲୁ ଶୁଣି
ସେ କଥାକୁ ଆଉ ଥରେ କହୁଅଛି ପୁଣି।
ଦେହ ଆତ୍ମା ଏକ ବୋଲି ଅଜ୍ଞାନୀ ଭାବଇ
ଦେହ ସାଥେ ଜନ୍ମି ଦେହ ସହିତେ ମରଇ।

ହତ୍ୟାକାରୀ କେହି ଯଦି ମନରେ ବିଚାରେ
ତା' ଆତ୍ମା ହନନ କରେ ଅପର ଆତ୍ମାରେ;
ହତ ବ୍ୟକ୍ତି ଭାବିଲେ ତା' ଆତ୍ମା ହେଲା ହତ
ତେବେ ବେନି ଜନଙ୍କର ଏହା ଭ୍ରାନ୍ତ ମତ।
ଉଭୟେ ଜାଣନ୍ତି ନାହିଁ ଆତ୍ମାଙ୍କ ବିଷୟ
ଆତ୍ମାଙ୍କ ଉତ୍ପତ୍ତି ନାହିଁ, ନ ଅଛି ବିଲୟ।
କର୍ତ୍ତା କର୍ମ ଭାବ କିଛି ନାହିଁ ଆତ୍ମାଙ୍କର
ଏଠାରେ ହନନ କ୍ରିୟା ପ୍ରତୀକ କେବଳ।
କର୍ତ୍ତା କର୍ମକ୍ରିୟା ଧର୍ମ ରହିତ ତ ସେହି
ସବୁ କ୍ରିୟା ବିକ୍ରିୟାର ଊର୍ଦ୍ଧ୍ୱେ ସେ ଅଦେହୀ।

ନିର୍ବିକାର ଆତ୍ମାଙ୍କର ଏହି ବିଶେଷତ୍ୱ
ତାଙ୍କର କର୍ତ୍ତୃତ୍ୱ ନାହିଁ, ନାହିଁ ବି କର୍ମତ୍ୱ।
ସେ ଜ୍ଞାନ ସ୍ୱରୂପ ଶୁଦ୍ଧ ସେ ପ୍ରକାଶମୟ
ତାଙ୍କ ଠାଇଁ ନାହିଁ ଜନ୍ମ ମରଣର ଭୟ।
ଅଜ୍ଞାନର ବଶ ଯେବେ ଏ ଜୀବ ହୁଅଇ
ଦେହ ବା ଶରୀରଟିକୁ ଆତ୍ମା ବିଚାରଇ।
'ଏ ଦେହଟି 'ମୁଁ ଅଟଇ ନିଜେ' ବୋଲି ଜାଣି
ଦେହକୁ ବିଚାରେ ଆତ୍ମା କେବଳ ଅଜ୍ଞାନୀ।
ଦେହର ବା ପ୍ରକୃତିର କାର୍ଯ୍ୟକୁ ସେ ବ୍ୟକ୍ତି
ଆତ୍ମାଙ୍କର କାର୍ଯ୍ୟ ବୋଲି ମନେ ବିଚାରନ୍ତି।
ସେ ପାଇଁ କର୍ତ୍ତୃତ୍ୱବୋଧ ମନେ ଉପୁଜଇ
ଆତ୍ମାଙ୍କ ସ୍ୱରୂପ କିନ୍ତୁ ସେ ରୂପ ନୁହଇଁ।
ଆତ୍ମା ଅନାସକ୍ତ, ନାହିଁ କର୍ତ୍ତୃତ୍ୱାଭିମାନ
ସେପରି କର୍ମତ୍ୱ ନାହିଁ ବୋଲି କର ଜ୍ଞାନ।
ଦେହ ହତ ହୁଏ ସିନା ଆତ୍ମା ଅବିନାଶୀ
କିଏ ବା କିପରି ତାଙ୍କୁ ପାରିବ ବିନାଶି?

Digitized by srujanika@gmail.com

ଦେହେ ଆତ୍ମବୁଦ୍ଧି ହେତୁ ଦେହର ପତନେ
ନିଜେ ହତ ହେଲି ବୋଲି ବିଚାରନ୍ତି ମନେ ।
ଆତ୍ମା ଅବିକାରୀ ଯେଣୁ ଆକାଶ ପରାୟେ
କର୍ତ୍ତା କର୍ମ ଭାବ ତହିଁ କିଛି ତ ନ ଥାଏ ।

ଏହାଶୁଣି ମନେ ତୋର ନୋହୁ ଏ ଧାରଣା
ଏବେ ଉପୁଜିବ ମର୍ତ୍ତ୍ୟେ ନାନା ଦୁର୍ଘଟଣା ।
ସମାଜରେ ଯିବେ ବ୍ୟାପି ହତ୍ୟାକାରୀ ଦଳ,
ଆଇନ ତା ବାଟେ ଥିବ ନିରେଖି ସକଳ ।
ଛାଡିଲେ ଅଜ୍ଞାନୀ ମନେ ସ୍ୱଭାବ ସଂସ୍କାର
ସେ ନିଜେ ପାଲଟି ଯିବ ସୁନା ତଲୱାର ।
ହିଂସା ଦ୍ୱେଷ କର୍ତ୍ତା କର୍ମ ଭାବ ଗଲେ ମରି
ସେ ଦେଖିବ ଆତ୍ମମୟ ଏ ଜଗତ ଭରି ।

ଆମ ଆତ୍ମ-ଅମରତା ଅଜ୍ଞତା ସକାଶେ,
କୁସଂସ୍କାର ମାଳ ଡାକି ଅଛି ଚଉପାଶେ ।
ଅଜ୍ଞାନର ଆବରଣ ହେଲେ ତିରୋହିତ
ଆତ୍ମାଙ୍କ ସ୍ୱରୂପ ଆପେ ହେବ ଉଦ୍‌ଭାସିତ ।
ଏଥିପାଇଁ ଯାଗ ଯଜ୍ଞ କର୍ମ ଅନୁଷ୍ଠାନ
କିଛି ଲୋଡ଼ା ହୁଏ ନାହିଁ, କି କେଉଁ ବିଧାନ ।
ଆତ୍ମା ନିତ୍ୟ ପ୍ରାପ୍ତ, ତାଙ୍କୁ କ୍ରିୟା ଅନୁଷ୍ଠାନେ
ଲାଭ କରାଯାଏ ନାହିଁ, କେବେ କେଉଁଠାନେ ।
ସେ ନୁହନ୍ତି ଜାତ, ତେଣୁ ବିକାର ରହିତ
ସ୍ୱମହିମା ବଳେ ସେ ତ ହୃଦ ସ୍ଥଳେ ସ୍ଥିତ ।

ଆମ ଭ୍ରାନ୍ତି ମାତ୍ର ଆମ ଭୟର କାରଣ
ଆତ୍ମ-ସ୍ୱରୂପରେ ଯେଣୁ ଦୃଢ଼ ନୁହେଁ ମନ ।
ପଶୁଦୋଳେ କଳାମୁଖା ଦେଖି କଳା ଭୂତ
ନ ଜାଣିବା ପିଲା ଡରି କାନ୍ଦଇ ବହୁତ ।
କିନ୍ତୁ ଯେ, ଜାଣିଚି, ସେ ତ ଭାବଇ ମନରେ
ପରିଆ ଗଉଡ଼ ଅଛି ଭୂତ ମୁଖା ତଳେ ।
ତେଣୁ ସେ ନ ଡ଼ରି କରେ ଅନ୍ତରେ ମଉଜ,
ସେହିପରି ନଚିକେତା ଜଗତକୁ ବୁଝ ।

Digitized by srujanika@gmail.com

ଜଗତ ଯେମିତି ଅଛି ଥାଉ ସେହିପରି
କେବଳ ନ ରହୁ ମିଥ୍ୟା ପ୍ରତୀତି ଆମରି ।
ଚିତ୍ରେ ଅଭିନୟେ ନାନା ଦୃଶ୍ୟ ନାନା ରସ
ଯେପରି ଦର୍ଶକ ମନ ନ କରେ ବିବଶ ।
କାରଣ ଦର୍ଶକ ଜାଣେ ସବୁ ଅଭିନୟ
ଚିତ୍ତ ବିନୋଦନେ କାହିଁ ଭ୍ରାନ୍ତି ଆଉ ଭୟ ?
ତେହ୍ନେ ଜଗତକୁ ଦେଖି କିଆଁ ଯିବା ଡରି
ଅଭିନୟ ରଙ୍ଗସ୍ଥଳୀ ଜଗତ ଯେପରି ।
ଆତ୍ମାଙ୍କ ପ୍ରକୃତ ରୂପ ଜାଣିଗଲେ ଥରେ
ହତ ବା ନିହତ ଭୟ ନ ରହେ ଅନ୍ତରେ ।

**ଅଣୋରଣୀୟାନ୍ ମହତୋ ମହୀୟାନ୍**
**ଆତ୍ମାଽସ୍ୟ ଜନ୍ତୋର୍ନିହିତୋ ଗୁହାୟାମ୍ ।**
**ତମକ୍ରତୁଃ ପଶ୍ୟତି ବୀତଶୋକୋ**
**ଧାତୁପ୍ରସାଦାନ୍ମହିମାନମାତ୍ମନଃ ॥ ୨୦ ॥**

ସୂକ୍ଷ୍ମ ଅଣୁଠାରୁ ଆତ୍ମା ଆଉ ସୂକ୍ଷ୍ମତର,
ମହତଠାରୁ ସେ ପୁଣି ଆଉ ମହତ୍ତର ।
ଏ ଆତ୍ମା ଜୀବାତ୍ମା ରୂପେ ହୋଇ ଅଭିହିତ
ଜୀବ ହୃଦ ଅଭ୍ୟନ୍ତରେ ଗୁହ୍ୟେ ବିରାଜିତ ।

ନିଷ୍କାମ ବିଗତ ଦୁଃଖ ପୁରୁଷ କେବଳ
ଲଭି ମନ ଇନ୍ଦ୍ରିୟର ପ୍ରସନ୍ନତା ଫଳ,
ଶୁଦ୍ଧ ଚିତ୍ତେ ସେ ଆତ୍ମାଙ୍କ ମହିମା ଅପାର
ହୃଦୟେ କରନ୍ତି ଉପଲବ୍ଧି ବାରବାର । ୨୦ ।

ଶୁଣ ନଚିକେତା ଶୁଣ ଆତ୍ମାଙ୍କ ବିଷୟ
ତାଙ୍କ ସ୍ୱରୂପ କେ କରି ପାରି ନାହିଁ ଥୟ ।
ଏଥିରେ ବା ତାଙ୍କୁ କିଏ ପାରିବ ବୁଝାଇ
ତେଣୁ ନାନା ଢଙ୍ଗେ ତାଙ୍କୁ କୁହା ଯାଇ ଥାଇ ।

Digitized by srujanika@gmail.com

ସୂକ୍ଷ୍ମ ଅଣୁ ଠାରୁ ଆତ୍ମା ଆଉ ସୂକ୍ଷ୍ମତର
ମହତ ଠାରୁ ସେ ପୁଣି ଆଉ ମହତ୍ତର ।
ଆତ୍ମାଙ୍କ ସୂକ୍ଷ୍ମତା ଆଉ ତାଙ୍କ ବ୍ୟାପକତା
ବୁଝାଇବା ପାଇଁ କୁହା ଯାଇଛି ଏକଥା ।
ସେ ଅଣୁ ନୁହନ୍ତି ଅବା ନୁହନ୍ତି ମହତ
ସେ ତ ଏକ, ନିରାକର, ସେ ସର୍ବବ୍ୟାପକ ।
ଏହି ଆତ୍ମା ବ୍ୟାପି କୋଟି ବ୍ରହ୍ମାଣ୍ଡ ମଣ୍ଡଳ
ଚରାଚର ରୂପେ ମାତ୍ର ହୁଅନ୍ତି ଗୋଚର ।
ଅଣୁ ବା ବୃହଦ୍ ବସ୍ତୁ ଅଛି ବିଶ୍ୱେ ଯାହା
ଆତ୍ମାଙ୍କ ସତ୍ତାରେ ମାତ୍ର ସତ୍ତାବାନ ତାହା ।
ଅଦୃଶ୍ୟ ଅବ୍ୟକ୍ତ ଆତ୍ମ-ସତ୍ତାଙ୍କ ଉପରେ
ଜଗତ କଳ୍ପନା ମାତ୍ର ଜାଗଇ ମନରେ ।
ଯେ ପରିବର୍ତ୍ତନଶୀଳ ଭଙ୍ଗୁର ଅନିତ୍ୟ
ଅପରିବର୍ତ୍ତିତ ସ୍ଥିର ସତ୍ତାରେ ସେ ସ୍ଥିତ ।
ଏ ସ୍ଥିର ସତ୍ତାକୁ ବାବୁ "ଆତ୍ମା" କୁହାଯାଏ
ସେହି ସଦା ସ୍ଥିର, ଚିତ୍ର ପରଦା ପରାୟେ ।
'ସତ୍ତା' ଆଉ 'ଅଛି' ଶବ୍ଦ ବେନି ସମାର୍ଥକ
'ସତ୍ତା' ବସ୍ତୁ ଧର୍ମ ନୁହେଁ– ସ୍ୱରୂପ ବୋଧକ ।
ଆଗନ୍ତୁକ ଧର୍ମ ଅଟେ ଯେତେ ନାମ ରୂପ
ସଭି ତଳେ ଏକ ନିତ୍ୟ ଶାଶ୍ୱତ ସ୍ୱରୂପ ।
ତେଣୁ ଅଣୁଠାରୁ ଅଣୁତର ସେ କଥିତ,
ମହତ ଠୁଁ ମହତର ପୁଉଣି ସେହି ତ ।

## 'ଆତ୍ମା' ମାନେ କଅଣ ?

ଯେ ଅଣୁଠୁଁ ଅଣୁ ଆଉ ମହତ୍ତୁ ମହତ
ସେ ରହନ୍ତି, କେହ୍ନେ ହୃଦ-ଗୁହା ଅନ୍ତର୍ଗତ ?
ସେ ଜନ୍ତୁ ବା ଜୀବ ଆତ୍ମା ବୋଲି ସୁବିଦିତ,
ତୁ କହୁଚୁ ଆତ୍ମା, ଆଉ କହୁଛି ମୁହିଁ ତ
ସମସ୍ତେ କହନ୍ତି ଆତ୍ମା, କିନ୍ତୁ ରେ ନନ୍ଦନ
ଭାବୁଛୁ କି କେବେ ମନେ ଏ 'ଆତ୍ମା' କଅଣ ?

Digitized by srujanika@gmail.com

ଯିଏ ଯେତେ ସବୁ ବସ୍ତୁ ଅବସ୍ଥା ଭିତରେ,
ଓତଃପ୍ରୋତ ଭାବେ ରହି ଅଛନ୍ତି ସକଳେ।
ଯେସନେ ଉଭୟ ପାଖ ସୂତ୍ରଣେ ବସନ,
ଓତଃପ୍ରୋତ ରହିଥାଇ ରେ ପ୍ରିୟ ନନ୍ଦନ,
ସୂତା ବିନା ବସ୍ତ୍ର ହୁଏ ନାହିଁ ଯେଉଁପରି
ଆତ୍ମା ବିନା ନାହିଁ କିଛି ଜଗତ ସେପରି।
ସେହି ଆତ୍ମା ବୋଲି ଜାଣି ରଖ ନିଃସନ୍ଦେହେ,
ସେପରି ଅଛନ୍ତି ଆମ ଆତ୍ମା ଆମ ଦେହେ।
ଆମେ ଶ୍ରୋତା, ବକ୍ତା, ଜ୍ଞାତା, ମନ୍ତା ବା ପଣ୍ଡିତ
ନାନା ଧର୍ମେ ନାନା ରୂପେ ଆମେ ପରିଚିତ।
ଏହାରି ପଛରେ ଯେଉଁ ସତ୍ତା ସର୍ବରୂପେ
ପରିବ୍ୟାପ୍ତ ହୋଇଅଛି ସେ ଆତ୍ମା ସ୍ୱରୂପେ।
ଆମେ ବଦଳିବା ସାଥେ ପ୍ରତି ଅବସ୍ଥାରେ
ଯିଏ ଅନୁସ୍ୟୂତ ହୋଇ ଅଛନ୍ତି ତାହାରେ,
ଆତ୍ମା ସେହି ଜାଣିବୁରେ ପ୍ରିୟ ନଚିକେତା
ଯା'ପାଇଁ ହୁଅଇ ଆମ ନାନା ଅଭିଜ୍ଞତା।
ଯେ ମୁଁ ବାଳକ ଯୁବା ବୃଦ୍ଧ ହୋଇଥାଏ
ସେ ମୁଁକୁ ଅବା କିଏ ପ୍ରକାଶ କରାଏ ?
ସେହି ତ ଆମରି ଆତ୍ମା, ଆମରି ସ୍ୱସତ୍ତା
ଯିଏ ଦେଖେ ଚାହେଁ ଜାଣେ ଆମ ସବୁକଥା।

## କେଉଁଠି ସେ ମିଳନ୍ତି

ସତ୍ୟ ସ୍ୱପ୍ରକାଶ ରୂପେ ଯିଏ ବିଦ୍ୟମାନ
ଜୀବ ହୃଦ-ଗୁହା ସେହି ଆତ୍ମାଙ୍କ ଆସ୍ଥାନ।
ସେଇଠି ଖୋଜିଲେ ତାଙ୍କୁ ମିଳଇ ସନ୍ଧାନ
ଆତ୍ମ ଅନୁଭୂତି ପାଇଁ ହୃଦେ କଲେ ଧ୍ୟାନ।
ଶ୍ରବଣ ମନନ ତଥା ନିଦିଧ୍ୟାସନରେ
ଆତ୍ମ-ଉପଲବ୍ଧି ସିନା ହୁଏ ହୃଦୟରେ।

ଗାଈଠୁ ମିଳଇ ଦୁଧ କିଏ ନ ଜାଣଇ,
କିନ୍ତୁ ଦୁଧ ପାଇଁ କିଏ ଲାଞ୍ଜ ଚିପୁଡ଼ଇ ?

Digitized by srujanika@gmail.com

ଦୁଧ ଦୁହାଁଯାଏ ଯେହ୍ନେ ପହ୍ନାରୁ କେବଳ
ଆତ୍ମା ପ୍ରକାଶନ୍ତି ତେହ୍ନେ ଜୀବ ହୃଦସ୍ଥଳ।
ସେଥିପାଇଁ କହିଲି ମୁଁ ରେ ପ୍ରିୟ କୁମର
ପ୍ରତି ଜୀବ ହୃଦ-ଗୁହା ଆତ୍ମାଙ୍କର ଘର।

## କିଏ ତାଙ୍କୁ ପାଇ ପାରିବ

କେବଳ କାମନା ହୀନ ବୀତଶୋକ ଜନ,
ଏ ଆତ୍ମାଙ୍କୁ ହୃଦେ କରିପାରନ୍ତି ଦର୍ଶନ।
କାମନାର ଅତୃପ୍ତିରେ ଦୁଃଖ ଶୋକରାଶି
ଚିଦାକାଶେ ଭେଳା ଭେଳା ଯାଇଥାଏ ଭାସି।

କାମନା ରହିତ ଚିତ୍ତ ସଦା ସୁନିର୍ମଳ,
ସୁନିର୍ମଳ ଚିତ୍ତେ ଆତ୍ମା ଦିଶନ୍ତି କେବଳ।
ଯହିଁ ସୁନିର୍ମଳ ଚିତ୍ତ ତହିଁ ବୁଦ୍ଧି ମନ
ଇନ୍ଦ୍ରିୟାଦି ସଦାବେଳେ ରହନ୍ତି ପ୍ରସନ୍ନ।
ସଂକଳ୍ପ ବିକଳ୍ପ ହୀନ ଅନାବିଳ ମନେ
ବହୁମୁଖୀ ବୃତ୍ତିରାଜି ଉଠିବ କେସନେ ?
କେବଳ ଏପରି ନିରିମଳ ମନ ଯାର
ଅନାୟାସେ ହୁଏ ଆତ୍ମ-ଦରଶନ ତାର।
କାମନାଦି ମନୋଧର୍ମ ଅନାବୃତ୍ତ ମନ
କରିଥାଏ ରେ ନନ୍ଦନ ଆତ୍ମ ଦରଶନ।
ସେହି ମନେ ଚିନ୍ତେ ହେଲେ ଅସୁଖର ଛାଇ
ଜାଣିରଖ କାଳେ କାଳେ ଜମା ପଡ଼େ ନାହିଁ।
ଅବିନାଶୀ ଅନାବୃତ ନିଜକୁ ଅକ୍ଷୟ,
ଜାଣିଗଲେ ରହିବ କି ଦୁଃଖ ଶୋକ ଭୟ ?

## ତାଙ୍କୁ ଜାଣିବ କେମିତି

ଆତ୍ମାଙ୍କୁ ଜାଣିବା କେହ୍ନେ କେଉଁ ଉପାୟରେ
ସେ ବିଷୟ ମନେ ରଖ ବାବୁ ହୃଦୟରେ।
ତୃଷାର୍ତ୍ତ ପଥିକ ଦେଖି ପୋଖରୀର ଜଳ,
ଛାଇ ହୋଇ ଯାଇଅଛି ଘୋର ଝାଞ୍ଜି ଦଳ।

Digitized by srujanika@gmail.com

ହାତରେ ଆଡ଼େଇ ଦଳ ସେ ଯେପରି ତହିଁ,
ପୋଖରୀ ନିର୍ମଳ ଜଳ ଆଗ୍ରହେ ପିଅଇ,
ତେହ୍ନେ ମନୁଁ ବାହ୍ୟ ଚିନ୍ତା ଭାବନା ଆଡ଼େଇ
ନିଜକୁ ଦେଖଇ ଆତ୍ମ-ସାଧକ ଯେ କେହି।

ଆଉ ଏକ ଗୁଣେ ଆତ୍ମା ହୁଅନ୍ତି କଥିତ
କେ ଡାକିବ ତାଙ୍କୁ ସେ ତ ସ୍ୱୟଂ ପ୍ରକାଶିତ।
ଏ ଆଖିର ଆଖି ସେହି, କର୍ଣ୍ଣର ତ କର୍ଣ୍ଣ
ମନରେ ଜାଣିବା କେହ୍ନେ ସେ ମନର ମନ
ଆଡ଼େଇ ଆଡ଼େଇ ସବୁ ଆମେ ଯେବେ ଯାଉ
ଆମର ସ୍ୱରୂପ ଆତ୍ମା-ଜାଣିବାକୁ ପାଉ।

ଯେ ସାମଗ୍ରୀ ଧରି ତାଙ୍କୁ ଖୋଜିବାକୁ ଯିବା,
ସେଥିରେ ତ ଆମେ ସେହି ଆତ୍ମାଙ୍କୁ ଦେଖିବା ;
ନାନା ରୂପେ ନାମେ ଆମେ ହୋଇ ଥାଉଁ ବଣା
ଆମକୁ ସେ ପାଇଁ ଆତ୍ମା ନ ପଡ଼ନ୍ତି ଜଣା।

ଚରାଚର ବିଶ୍ୱେ ନାହିଁ ଏପରି ପଦାର୍ଥ
ଯହିଁ 'ମୁଁ' ନାହିଁ, ହୁଏ ନାହିଁ ଆତଯାତ।
ବହୁ ମଧ୍ୟେ ନିଜକୁ ତ ହଜାଇଛେ ଆମେ
ଜଗତର ଅସୁମାରୀ ରୂପେ ଆଉ ନାମେ।

ଗଛ ଦେଖି ଦେଖି ଯେହ୍ନେ ଭୁଲୁ ବନସ୍ତକୁ
ବସ୍ତୁ ଦେଖି ତେହ୍ନେ ଭୁଲୁ ଏ ଆତ୍ମ-ତତ୍ତ୍ୱକୁ॥
ବସ୍ତୁ ଦେଖୁଁ, ମାତ୍ର ଏଇ ଆତ୍ମା କେଉଁଠାରେ ?
ସେ ସବୁଠିଁ, ଦେଶ କାଳ ବସ୍ତୁ ଓ କ୍ରିୟାରେ।
ତାଙ୍କ ଠାରେ ଆଧାରିତ ଯା'କିଛି ଯେ କେହି,
ସବୁ ବିଶ୍ଳେଷଣ କଲେ ମିଳନ୍ତି ତ ସେହି॥

ଆସୀନୋ ଦୂରଂ ବ୍ରଜତି ଶୟାନୋ ଯାତି ସର୍ବତଃ ।
କସ୍ତଂ ମଦାମଦଂ ଦେବଂ ମଦନ୍ୟୋ ଜ୍ଞାତୁମର୍ହତି ॥୨୧॥

Digitized by srujanika@gmail.com

ବସି ବହୁଦୂରେ ଆତ୍ମା ଗମନ କରନ୍ତି
ଶୋଇ ରହି ସେ ସବୁଠି ପହଞ୍ଚି ପାରନ୍ତି ।
ହର୍ଷଯୁକ୍ତ ପୁଣି ହର୍ଷହୀନ ଆତ୍ମଦେବେ
ମୋ ଭିନ୍ନ ଜାଣିବା ପାଇଁ କେ ସମର୍ଥ ହେବେ ? ॥ ୨୧ ॥

ଆତ୍ମାଙ୍କ ବିଷୟେ ଶୁଣି ବର୍ଣ୍ଣନା ଏପରି
ତୋ ମନେ ସଂଶୟ ବାପ ଯାଉଥିବ ଭରି ।
ଶୁଣି ପ୍ରହେଳିକା ପୂର୍ଣ୍ଣ ଏଇ ପରିଚିତି
ଶ୍ରୋତାଙ୍କୁ ଲାଗିବ ନିଶ୍ଚେ କେମିତି କେମିତି ।
ବସି ରହି ବହୁ ଦୂରେ ଗମନ କରିବା,
ଶୋଇ ରହି ପୁଣି ସବୁ ସ୍ଥାନେ ପହଞ୍ଚିବା,
ଏପରି ବିରୋଧୀ ଧର୍ମ ଦୁଇ କଥା କହି
ପୁତ୍ରରେ କିଏ ସେ ତାଙ୍କୁ ସହଜେ ବୁଝଇ ?
ନ୍ୟାୟ ଶାସ୍ତ୍ର ମତେ ବାବୁ ଏ ସାରା ଜଗତ,
ଦୁଇଟି ବିରୋଧୀ ଶବ୍ଦେ ହୁଅଇ ବିଭକ୍ତ ।
'କ' ଓ 'କ ନୁହଁ'– ଏ ଦୁଇ କଥନେ,
ଆଉ ଅତିରିକ୍ତ କିଛି ନରହେ ଭୁବନେ ।

ସେପରି ଦୁଇଟି ଭାବେ ଆତ୍ମା ପ୍ରକାଶିତ,
ଏକ ଭାବେ ସେ ଅଚଳ, ସେ ଗତି ରହିତ ।
ଅନ୍ୟ ଭାବେ ଚଳମାନ ଦୂର ଦୂରାନ୍ତରେ
ସୁଖ, ସୁଖ ରହିତ ସେ ଅଖିଳ ବିଶ୍ୱରେ ।

ସୃଷ୍ଟିରେ ଆତ୍ମାଙ୍କ ଯେଉଁ ଭାବ ପ୍ରକାଶିତ
ସଚଳ ସକ୍ରିୟ ପୁଣି ସହର୍ଷ ସେହି ତ ।
କିନ୍ତୁ ଏହି ସଚଳତା ଭାବ ପଶ୍ଚାତରେ
ଆତ୍ମାଙ୍କ ଅଚଳ ଭାବ ଅଛି ଗୁପତରେ ।

ଏ ବିରାଟ ଅଚଳତା ପରେ ଜଗତରେ
ସକଳ କ୍ରିୟାଦି ଚାଲିଅଛି ନିରନ୍ତରେ ।
ଆତ୍ମାଙ୍କର ପରସ୍ପର ବିରୋଧୀ ସ୍ୱଭାବ
ସାଧାରଣ ଜନ କେହ୍ନେ କରିପାରେ ଠାବ ?

ମୋ ପରି ସଂସ୍କାର ଯୁକ୍ତ ପୁରୁଷ ବ୍ୟତୀତ
ଆତ୍ମାଙ୍କ ସ୍ୱଭାବ କିଏ ହେବ ଅବହିତ ?

Digitized by srujanika@gmail.com

ଏପରି ବିରୋଧୀ ଧର୍ମୀ ଆତ୍ମାଙ୍କ ସ୍ୱଭାବ
ଏତେ ଶ୍ରମ କରି ଜାଣି ହେବ କେଉଁ ଲାଭ ?
ସେହି କଥା ନଚିକେତା କହୁଛି ତୋ ଆଗେ
ସ୍ଥିର ଶାନ୍ତ ମନେ ବାବୁ ଶୁଣ ଅନୁରାଗେ ।

**ଅଶରୀରଂ ଶରୀରେଷ୍ୱନବସ୍ଥେଷ୍ୱବସ୍ଥିତମ୍ ।**
**ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି ॥ ୨୨ ॥**

**ଶରୀର ଭିତରେ ହୋଇ ଶରୀର ରହିତ,**
**ଅନିତ୍ୟ ଭିତରେ ନିତ୍ୟ ସ୍ୱରୂପରେ ସ୍ଥିତ,**
**ମହାନ୍ ବ୍ୟାପକ ଜାଣି ସେ ଆତ୍ମାଙ୍କୁ ଧୀରେ**
**ଏ ସଂସାରେ ଶୋକାତୀତ ହୁଅନ୍ତି ଅଚିରେ । ୨୨ ।**

ଆତ୍ମାଙ୍କର ଆଉ ଯେତେ ବିପରୀତ ଧର୍ମ
ଶୁଣି ନଚିକେତା ବୁଝ ତାହାର ମରମ ।
ସକଳ ଶରୀର ମଧ୍ୟେ ଯେଉଁ ଆତ୍ମା ସ୍ଥିତ
ସେ ତ ଅଶରୀର ଜାଣ ଶରୀର ରହିତ ।
ଘଟେ ଘଟେ ଏକ ଆତ୍ମା କରନ୍ତି ବିହାର
ନାହିଁ ରୂପ ରେଖ ନାହିଁ ଆକାର ବିକାର ।
ଅନିତ୍ୟ ଏ ଘଟ ତୁଟି ଯାଏ ଯଥାକାଳେ
ନିତ୍ୟ ସ୍ୱରୂପରେ ଆତ୍ମା ସ୍ଥିତ ସବୁଠାରେ ।
ସେହି ତ ମହାନ ବିଶ୍ୱ ବ୍ରହ୍ମାଣ୍ଡ ବ୍ୟାପକ
ପ୍ରତି ରୂପ ନାମରେ ତ ସେ ପରା ଦ୍ୟୋତକ ।
ଯେଉଁ ବସ୍ତୁ କ୍ରିୟା ଆମେ କରୁ ଅନୁଭବ
ବାବୁ ଜାଣିରଖ ସବୁ ତାଙ୍କ ଅନୁଭବ ।
ତେଣୁ ସେ ବ୍ୟାପକ ବିଭୁ ବୋଲାନ୍ତି ଜଗତେ,
ଏହିପରି ଭାବି ଧୀର ଜନେ ହୃଦଗତେ,
ରହନ୍ତି ସଂସାରେ ହୋଇ ଦୁଃଖ ଶୋକାତୀତ
ଆତ୍ମ-ଜ୍ଞାନେ ଦୁଃଖ ଶୋକ ନ ରହେ କିଞ୍ଚିତ ।

Digitized by srujanika@gmail.com

ଦୁଃଖର ନିବୃତ୍ତି ଆଉ ସଦା ସୁଖ ପ୍ରାପ୍ତି
ପ୍ରାଣୀର ସ୍ୱଭାବ ଏହି, ସକଳେ ଚାହାନ୍ତି।

ପ୍ରିୟ ନଚିକେତା, କେହି ଭାବିପାରେ ମନେ,
ଆତ୍ମ-ଜ୍ଞାନେ ଦୁଃଖ ଶୋକ ତୁଟଇ କେସନେ ?
ଆତ୍ମ-ଜ୍ଞାନୀ ଜାଣିଥାନ୍ତି ଆତ୍ମା କଦାଚନ
ଅନ୍ତଃକରଣର ଧର୍ମେ ନୁହନ୍ତି ଆଚ୍ଛନ୍ନ।
ପାଖେ ପାଖେ ଥିବା ସ୍ୱଚ୍ଛ ଫିଟିକରି ପରେ
ଜବାଫୁଲ ଲାଲ ରଙ୍ଗ ପଡ଼େ ନିରନ୍ତରେ।
କିନ୍ତୁ ଫିଟିକରି କେବେ ନ ହୁଅଇ ଲାଲ
ହୃଦୟେ ରହନ୍ତି ଆତ୍ମା ସ୍ୱଚ୍ଛ ସେ ପ୍ରକାର।
ଅନ୍ତଃକରଣର ଧର୍ମ ଦୁଃଖ ସୁଖ ଆଦି
ଅଜ୍ଞତାରେ ଏ ଆତ୍ମାଙ୍କୁ ଥାଆଇ ଆଚ୍ଛାଦି।
ଆତ୍ମାଙ୍କ ସ୍ୱରୂପ କିନ୍ତୁ ଜାଣିଗଲା ପରେ
ଏହି ଭ୍ରାନ୍ତି ତିଳେ ଆଉ ରହେନା ମନରେ।

ଦଉଡ଼ିକୁ ଜାଣିଗଲେ ଏ ସତ ଦଉଡ଼ି
ଅବିଳମ୍ବେ ସର୍ପ ଭୟ ମନୁ ଯିବ ଉଡ଼ି।
ରଜ୍ଜୁରେ ଉପାଧି ଧର୍ମ ହୋଇ ଆରୋପିତ
ସର୍ପ ବୋଲି ଦର୍ଶକକୁ କରେ ଭୟଭୀତ।
ଆଲୋକ ସାହାଯ୍ୟେ ମନୁ ବୃଥା ସର୍ପ ଭୟ
ନିମିଷକେ ଯେଉଁପରି ଭଜଇ ବିଳୟ
ଆତ୍ମାଙ୍କ ସ୍ୱରୂପ ତେହ୍ନେ ଜାଣିଗଲେ ଥରେ
ଆମର ସକଳ ଭ୍ରାନ୍ତି ତୁଟେ ସହଜରେ।
ଅକର୍ତ୍ତା ଅଭୋକ୍ତା ସେହି ସ୍ୱଭାବେ ରହନ୍ତି
ଅନ୍ତଃକରଣର ସୁଖ ଦୁଃଖ ନ ଘେନନ୍ତି।
ଜ୍ଞାନୀ ଧୀର ଜନେ ଜାଣି ଆତ୍ମାଙ୍କ ସ୍ୱରୂପ
ଦୁଃଖେ ଶୋକେ ହୁଅନ୍ତିନି କେବେ ଅଭିଭୂତ।

ଏ ହୃଦୟ ସ୍ଥଳେ ଯେଉଁ ଆତ୍ମା ବିରାଜିତ
ସେ ସର୍ବାତ୍ମା, ସର୍ବବ୍ୟାପୀ, ମହାନ ସେହି ତ।
ଆତ୍ମାଙ୍କର ଉପଲବ୍ଧି ହୋଇଲେ ଅନ୍ତରେ
ସାଧକ ଆନନ୍ଦମୟ ହୁଅନ୍ତି ଶେଷରେ।

Digitized by srujanika@gmail.com

ତେବେ ସଂସାରର ଦୁଃଖ ଶୋକ ସମୁଚୟ
ଅନ୍ତରକୁ ଆଉ କରି ପାରେନା ଅଥୟ ।

## ଆତ୍ମ-କୃପାରେ ଆତ୍ମ-ଦରଶନ

**ନାୟମାତ୍ମା ପ୍ରବଚନେ ଲଭ୍ୟୋ**
**ନ ମେଧୟା ନ ବହୁନା ଶ୍ରୁତେନ ।**
**ଯମେବୈଷ ବୃଣୁତେ ତେନ ଲଭ୍ୟ–**
**ସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଂ ସ୍ୱାମ୍ ॥ ୨୩॥**

ଏ ଆତ୍ମା ମିଳନ୍ତି ନାହିଁ ବେଦ ଅଧ୍ୟୟନେ
ଧାରଣା ଶକ୍ତିରେ ଅବା ବହୁତ ଶ୍ରବଣେ ।
ଯେ ଜନ ଆତ୍ମାଙ୍କୁ ନିଜେ କରନ୍ତି ବରଣ
କେବଳ ତାଙ୍କରି ହୁଏ ଆତ୍ମ ଦରଶନ ।
ତାଙ୍କର ପାଖରେ ଏଇ ଆତ୍ମା ପରାତ୍ପର
ଥାଆନ୍ତି ପ୍ରକାଶ କରି ସ୍ୱରୂପ ନିଜର ॥ ୨୩॥

ସେ ଯେଉଁ ମହାନ ଆତ୍ମା ଅରୂପ ଅଦେହୀ,
ଏକ ହୋଇ ସର୍ବଭୂତେ ଅଛନ୍ତି ବିଛେଇ
ତାହାଙ୍କୁ କି ରୂପେ ଲାଭ କରାଯାଇ ପାରେ
ତାହା କହୁଅଛି ପୁତ୍ର ଏ ମନ୍ତ୍ରେ ଏଠାରେ ।

ଏ ଆତ୍ମାଙ୍କୁ କେହି କେବେ ବେଦ ଅଧ୍ୟୟନେ
ପାଇ ତ ନାହାନ୍ତି ଅବା ବହୁତ ଶ୍ରବଣେ ।
ଧାରଣାରେ କେହି ତାଙ୍କୁ ପାରିନାହିଁ ଧରି,
ତର୍କେ ବା ବୁଦ୍ଧିରେ ତାଙ୍କୁ କେ ପାରିବ କଳି ?

ଏ ଆତ୍ମାଙ୍କୁ ଯିଏ ନିଜେ କରିବେ ବରଣ
କେବଳ ଲଭିବେ ସେହି ତାଙ୍କ ଦରଶନ ।

ଆତ୍ମୋପଲବ୍ଧିର ବାବୁ ବିଶେଷତ୍ୱ ଏହି,
କେଉଁଠିକି ଯାଇ ତାଙ୍କୁ ପାଏ ନାହିଁ କେହି ।
କେଉଁ କର୍ମ କରି ତାଙ୍କୁ କେହି ତ ନପାଏ
ସେ ଲଭ୍ୟ ନୁହନ୍ତି ଅନ୍ୟ ପଦାର୍ଥ ପରାୟେ ।

Digitized by srujanika@gmail.com

ତାଙ୍କୁ ଜାଣି ହୁଏ ନାହିଁ କୌଣସି ଇନ୍ଦ୍ରିୟେ
ନିଶ୍ଚିତରେ ମନ ବୁଦ୍ଧି ଅଗୋଚର ସିଏ ।
ଆମରି ତ ବହୁ ଭୋଗ ବାସନା ପ୍ରବୃତ୍ତି
ନିରନ୍ତରେ ଏ ଆତ୍ମାଙ୍କୁ ଘୋଡେଇ ରଖୁଚି ।
ଆମେ ନାନା ବସ୍ତୁ ଚାହୁଁ, ପୁଣି ତାହା ପାଉ ;
ପାଇବା ଭିତରେ ଆମେ ସଦା ଭୁଲିଯାଉ–
ଭୁଲିଯାଉ ଏ ପାଇବା ବସ୍ତୁ ସକଳର
ସ୍ୱରୂପ ଅଟଇ ସେହି ଆତ୍ମା ହିଁ କେବଳ ।
ଆତ୍ମାଙ୍କୁ ଛାଡ଼ିଲେଁ ନାହିଁ ଅସ୍ତିତ୍ୱ କାହାର
ଭୋଗ୍ୟବସ୍ତୁ କେହ୍ନେ ହେବ ଏଥିରୁ ବାହାର ?
ଯା କିଛି ଚାହିଁବା ଆଉ ପାଇବା ଦରବ
ତେଣୁ ଏ ଆତ୍ମାଙ୍କୁ ଛାଡ଼ି ନୁହଁଇ ସମ୍ଭବ ।

ଯେଉଁ ଆତ୍ମା ନିତ୍ୟ ପ୍ରାପ୍ତ ଆଉ ନିତ୍ୟ ଜ୍ଞାତ,
କି ମାୟାରୁ ସେ ହୋଇଲେ ଅପ୍ରାପ୍ତ ଅଜ୍ଞାତ ?
ତେଣୁ ଶାସ୍ତ୍ରେ ବାରମ୍ବାର କରାନ୍ତି ସ୍ମରଣ
କାହିଁ କେଉଁଠାରେ କର ଆତ୍ମ-ଅନ୍ୱେଷଣ ?

ଅନ୍ତର ବସ୍ତୁକୁ ଆମେ ବାହାରେ ଖୋଜିବା,
ଏଥିରେ କିପରି କହ ତାହାଙ୍କୁ ପାଇବା ?
ତେଣୁ ଆତ୍ମା ନ ମିଳନ୍ତି ଶାସ୍ତ୍ରେ ପ୍ରବଚନେ
ବୁଦ୍ଧି ତର୍କେ ଅବା କେଉଁ କର୍ମ ସମ୍ପାଦନେ ।

ଏକ ଲକ୍ଷ୍ୟ ହୋଇ ଯିଏ କେବଳ ଖୋଜଇ,
ଆଉ କିଛି ପାଇବାକୁ ମନ ନ କରଇ,
ଆପେ ଆପେ ଆତ୍ମା ସେହି ହୃଦୟେ କେବଳ
ଖୋଲି ଦେଇଥାନ୍ତି ପ୍ରତ୍ର ସ୍ୱରୂପ ନିଜର ।
ଉପାଧି ଧର୍ମରେ ଆତ୍ମା ଯେଣୁ ଆଚ୍ଛାଦିତ
ସେ ନୁହନ୍ତି ସହଜରେ ତେଣୁ ସୁବିଦିତ ।
ତୁମେ ତ ଜାଣିଚ ଭଲ ଭାବେ ଏହି କଥା
ଏ ଆତ୍ମା ପ୍ରକାଶମୟ ଅଟନ୍ତି ସର୍ବଥା ।

Digitized by srujanika@gmail.com

ମେଘ ଖଣ୍ଡେ ଡାଙ୍କି ଦେଲେ ସୂର୍ଯ୍ୟଙ୍କୁ ଆକାଶେ,
ମନେହୁଏ ସୂର୍ଯ୍ୟ ଯେହ୍ନେ ଥାନ୍ତି ଅପ୍ରକାଶେ ।
କିନ୍ତୁ ପ୍ରକୃତରେ ସୂର୍ଯ୍ୟ ନୁହେଁ ଆଚ୍ଛାଦିତ
ଆଚ୍ଛନ୍ନ କେବଳ ଆମ ନୟନ ଦୁଇ ତ ।

ଦେହେନ୍ଦ୍ରିୟେ ଏ ଆତ୍ମାଙ୍କୁ ଢାଣିବାକୁ ଯାଇ
ତାଙ୍କ ପରେ ଦେହେନ୍ଦ୍ରିୟ ଧର୍ମ ବୋଳିଥାଇଁ
ତେଣୁ ତାଙ୍କୁ କର୍ତ୍ତା ଭୋକ୍ତା ସୁଖୀ ଦୁଃଖୀ ପରି
ଆମ ଏ ମନରେ ଆମେ ନେଇ ଥାଉଁ ଧରି ।
ଆତ୍ମାଠି ଅନାତ୍ମ ଧର୍ମ କଲେ ଆରୋପଣ
ସ୍ୱସ୍ୱରୂପେ ସେହି ଦେଖା ଦେବେଟି କେସନ ?
କେବଳ ଅନନ୍ୟ ଚିତ୍ତ ହୋଇ ଯେଉଁଜନ
ଆତ୍ମାଙ୍କୁ ବରଣ କରେ ସେ ଲଭେ ଦର୍ଶନ ।।

**ଆତ୍ମ-ଜ୍ଞାନ ଦୁର୍ଲ୍ଲଭ କାହାକୁ :**

**ନାବିରତୋ ଦୁଶ୍ଚରିତାନ୍ନାଶାନ୍ତୋ ନାସମାହିତଃ ।**
**ନାଶାନ୍ତମାନସୋ ବାଽପି ପ୍ରଜ୍ଞାନେନୈନମାପ୍ନୁୟାତ୍ । ।। ୨୪ ।।**

ପାପାଦି କର୍ମରୁ ଯିଏ ନୁହଁନ୍ତି ବିରତ,
ଯେ ଇନ୍ଦ୍ରିୟମାନଙ୍କର ସଦା ଅନୁଗତ
ଏକାଗ୍ରତାହୀନ ବ୍ୟକ୍ତି ଯେ ଚଞ୍ଚଳ ଚିତ୍ତ
କାମନା କବଳେ ଯାର ମତି ବିଚଳିତ
ଏପରି ମଣିଷ ବୁଦ୍ଧି ବୃତ୍ତିରେ କେବଳ
ଆତ୍ମାଙ୍କୁ ଲଭିବା ପାଇଁ ହୁଅଇ ବିଫଳ । ୨୪ ।

**କଣ୍ଠସ୍ଥ** କରିବା ମାତ୍ରେ ବେଦଶାସ୍ତ୍ର ଆଦି,
ଅବା କେହି ବନିଗଲେ ପ୍ରବଚନବାଦୀ,
ସତ୍‌ସଙ୍ଗ ଭବନେ କରି ନିୟମେ ଗମନ
କେ କରି ପାରେନା ପୁତ୍ର ଆତ୍ମ-ଦରଶନ ।
ପୂର୍ବ ମନ୍ତ୍ରେ ଏହି କଥା ଥିଲି ତୋତେ କହି
ଏ ମନ୍ତ୍ରର ବିଧିବାବୁ ଶୁଣ ନିଷ୍ଠା ବହି ।

Digitized by srujanika@gmail.com

ଅଶେଷ ଆଚାର ଶୁଦ୍ଧି ନିୟମ ପାଳନ
ଏ ଆତ୍ମ-ସାଧନ ପଥେ ହୁଏ ପ୍ରୟୋଜନ।
ପାପାଦି ଅଧର୍ମ ପଥୁଁ ହୋଇ ବିରହିତ,
ସକଳ ଇନ୍ଦ୍ରିୟେ ପୁଣି କରି ନିୟମିତ।
ସ୍ଥିର ଶାନ୍ତ ଚିତ୍ତେ କରି ପାରିଲେ ଧ୍ୟାନ
ତେବେ ହିଁ କେବଳ ମିଳିପାରେ ଆତ୍ମ-ଜ୍ଞାନ।
ଆଧ୍ୟାତ୍ମିକ ସାଧନାକୁ କରିବାକୁ ଦୃଢ଼
ଏ ମନ୍ତ୍ରେ ନିହିତ କେତେ ନିୟମ ନିଗୂଢ଼।
ବାବୁ ସବୁ ତୋତେ ମୁହିଁ କହୁଛି ବୁଝାଇ
ତୋହରି ସାଧନା-ପଥ ସୁଗମତା ପାଇଁ।

ପ୍ରଥମେ ପାପାଦି କର୍ମୁ ରହିଥିବ ଦୂରେ
ତେବେ ଶୁଚି ଶାନ୍ତି ଉପୁଜିବ ଅନ୍ତଃପୁରେ।
ଏ ପାପାଦି କର୍ମ ସବୁ କଥଣ ଜଗତେ
କହିବେ ତ ଭିନ୍ନ ଭାବେ ଲୋକେ ନିଜମତେ।
ତେବେ ପାପ ପୁଣ୍ୟ କେହ୍ନେ ହୋଇବ ବିଚାର
କାହାକୁ କିପରି କିଏ କରିବ ବା ସାର ?

ମୋ ମତରେ ପୁଣ୍ୟ କର୍ମ ଅଟଇ ସେହି ତ
ପର ଉପକାରେ ଯେଉଁ କର୍ମ ନିଯୋଜିତ।
ଯେ କର୍ମ କରାଏ ବାବୁ ଆତ୍ମ ବିକଶିତ
ତାହା ପୁଣ୍ୟ କର୍ମ ବୋଲି ସଂସାରେ ବିଦିତ
ପୁଣି ଯାହା ହେଉଥିବ ପ୍ରକାଶ୍ୟ ଭାବରେ
ନିଃସଂଶୟ ମନେ ପ୍ରୀତି ପୁଲକ ଅନ୍ତରେ।

ସେହିପରି ପାପ କର୍ମ ତାହା ବିବେଚିତ
ଯେଉଁ କର୍ମେ ପରପୀଡ଼ା ହୁଅଇ କିଞ୍ଚିତ।
ଆଉ ଯେଉଁ କର୍ମେ ହୁଏ ଆତ୍ମ ସଙ୍କୋଚନ
ପାପ କର୍ମେ ତାହା ସବୁ ହୁଅଇ ଗଣନ।
ଯେଉଁ କର୍ମରାଜି ପୁଣି ହୁଅଇ ଗୋପନେ
ଭୟେ ଭୟେ ଡରଡରେ ସଶଙ୍କିତ ମନେ।
ପାପ କର୍ମେ ମନେ ଦ୍ୱନ୍ଦ୍ୱ ଚିତ୍ତେ ଚଞ୍ଚଳତା
ଏପରି କର୍ମକୁ ବାବୁ ତେଜିବୁ ସର୍ବଦା।

Digitized by srujanika@gmail.com

ପାପରୁ ମଳିନ ମନେ ଜପତପ ଯୋଗ
ନିଷ୍ଫଳ ହୁଅଇ ବାବୁ ସକଳ ଉଦ୍‌ଯୋଗ ।
ସନାତନ ଧର୍ମର ତ ଏ ତିନି ସିଦ୍ଧାନ୍ତ
ବ୍ରହ୍ମଚର୍ଯ୍ୟ ବ୍ରତ, ସତ୍ୟ, ଅଂହିସାଦି ଖ୍ୟାତ ।
ଦୀର୍ଘକାଳ ଧରି କଲେ ଧର୍ମ ଆଚରଣ
ଆଧ୍ୟାତ୍ମିକ ପଥେ ହୁଏ ଯୋଗ୍ୟତା ଅର୍ଜନ ।
ତା'ପରେ ସାଧକ କରି ଇନ୍ଦ୍ରିୟ ନିଗ୍ରହ
ନିଜ ଚିତ୍ତ ବୃତ୍ତି ରାଜି କରିଥାନ୍ତି ଥୟ ।
ମଳିନ ଅସମାହିତ ଚିତ୍ତେ କଦାଚନ
ସୁବିମଳ ଆତ୍ମାଙ୍କର ନ ହୁଏ ଦର୍ଶନ ।
ସୁନିର୍ମଳ ଚିତ୍ତ ଆଉ ବିଶୁଦ୍ଧ ବୁଦ୍ଧିରେ
ଆତ୍ମଜ୍ଞାନ ପ୍ରତିଭାତ ହୁଅଇ ଅଚିରେ ।

ତେଣୁ ପୁତ୍ର ଆତ୍ମ-ଜ୍ଞାନ ଲଭିବା ନିମିତ୍ତ
ସାରା ଜୀବନକୁ ତୋର ଗଢ଼ିବା ଉଚିତ ।
ପାପ ଚିନ୍ତା ପାପ କର୍ମେ ନ ବଳାଇ ମନ
ଚିତ୍ତକୁ ରଖିବୁ ସଦା ସ୍ଥିର ସୁପ୍ରସନ୍ନ ।
ପରମାତ୍ମା ପଦେ କରି ଆତ୍ମ ସମର୍ପଣ
ସେ ଦିବ୍ୟ ଜ୍ୟୋତିକୁ ହୃଦେ କର ଅନ୍ୱେଷଣ ।

**ଯସ୍ୟ ବ୍ରହ୍ମ ଚ କ୍ଷତ୍ରଂ**
**ଚ ଉଭେ ଭବତ ଓଦନଃ**
**ମୃତ୍ୟୁର୍ଯସ୍ୟୋପସେଚନଂ କ**
**ଇତ୍ଥା ବେଦ ଯତ୍ର ସଃ । ॥ ୨୫ ॥**

ବ୍ରାହ୍ମଣ କ୍ଷତ୍ରିୟ ଯାହାଙ୍କର ଭକ୍ଷ୍ୟ ଅନ୍ନ,
ସର୍ବହର ମୃତ୍ୟୁ ପୁଣି ଯାହାଙ୍କ ବ୍ୟଞ୍ଜନ,
ସେ ବ୍ରହ୍ମ ସ୍ୱ ମହିମାରେ ଅଛନ୍ତି ଯେପରି,
ଯଥାର୍ଥରେ ତାଙ୍କୁ କିଏ ଜାଣିବ କିପରି ? । ୨୫ ।

ମଣିଷ ସମାଜେ ଅଛି ଯେତେ ଜାତି ବର୍ଣ୍ଣ
ତହିଁ ମଧ୍ୟ ଶ୍ରେଷ୍ଠ ପୁତ୍ର କ୍ଷତ୍ରିୟ ବ୍ରାହ୍ମଣ ।

Digitized by srujanika@gmail.com



ତପସ୍ୟାର ପ୍ରଭାବରେ ଏ ବ୍ରାହ୍ମଣଗଣ
ସକଳ ଧର୍ମକୁ ପରା କରନ୍ତି ଧାରଣ ।

ରଜୋଗୁଣ ପ୍ରଭାବରେ ଏ କ୍ଷତ୍ରିୟ ଜାତି
ସମାଜକୁ ସବୁମନ୍ତେ ରକ୍ଷା କରିଥାନ୍ତି ।
ବ୍ରାହ୍ମଣ କ୍ଷତ୍ରିୟ ଏହି ମନ୍ତେ ଦୁଇ ଜାତି
ମଣିଷ ବର୍ଗର ଶ୍ରେଷ୍ଠ ପ୍ରତୀକ ବୋଲାନ୍ତି ।

ବ୍ରାହ୍ମଣ କ୍ଷତ୍ରିୟ ଏଇ ଶ୍ରେଷ୍ଠ ଦୁଇ ଜାତି
ସଙ୍କେତରେ ସାରା ବିଶ୍ୱପ୍ରାଣୀଙ୍କୁ ବୁଝାନ୍ତି ।
ପ୍ରଳୟେ ପ୍ରାଣୀଏ ବ୍ରାହ୍ମ ଭଜନ୍ତି ବିଲୟ
ତେଣୁ ତାଙ୍କୁ ବ୍ରହ୍ମ ଭକ୍ଷ୍ୟ ଅନ୍ନ କଲି ଥୟ ।
ସେପରି ମୁଁ ଯମ ତଥା ଦେବତା ନିକର
କଳ୍ପାନ୍ତେ ହୁଅନ୍ତି ବ୍ରହ୍ମେ ବିଲୀନ କେବଳ ।
ସେ ପାଇଁ ମୋ ସହ ଦେବେ ଶାକାଦି ବ୍ୟଞ୍ଜନ
ଲକ୍ଷଣାରେ କହିଲି ରେ ଗୌତମ ନନ୍ଦନ ।
ଏପରି ମହିମାଯୁକ୍ତ ଅଟନ୍ତି ଯେ ବ୍ରହ୍ମ
ତାଙ୍କୁ ଜାଣିବାକୁ କିଏ ହୋଇପାରେ କ୍ଷମ ?

ଅନ୍ନାଦି ବ୍ୟଞ୍ଜନ ଯେହ୍ନେ ଭକ୍ଷକ ଉଦରେ,
ପରିପାକ ହୋଇ ଭଜେ ବିଲୀନ ଶେଷରେ,
ସେହିପରି ସମୟରେ ବ୍ରହ୍ମଙ୍କ ଗରଭେ
ବିଲୀନ ହୁଅନ୍ତି ଜୀବ ଜଡ଼ାଦି ସରବେ ।

ଯେଣୁ ମୁହିଁ ସର୍ବଗ୍ରାସୀ ସର୍ବ ସଂହାରକ
ତେଣୁ ମୁଁ ସକଳ ନଶ୍ୱରତା ସୂଚକ ।
ମୁହିଁ ସର୍ବହର ମୃତ୍ୟୁ ଯାହାଙ୍କ ବ୍ୟଞ୍ଜନ,
କେତେ ଶକ୍ତିମାନ ସେହି ବ୍ରହ୍ମ ନିରଞ୍ଜନ ।
ବିଶ୍ୱରେ ଯାହାର ଯେତେ ଶକ୍ତି ଅଛି ରହି
ସବୁ ତ ବ୍ରହ୍ମଙ୍କ ଶକ୍ତି ଏ ସତ୍ୟ ଅଟଇ ।

ଏ ମନ୍ତ୍ର ମରମ ବାବୁ ରଖିବୁ ରେ ମନେ,
ନିରତେ ତୋ ହୃଦ କୋଣେ ସାଇତି ଗୋପନେ ।
କୌଣସି କର୍ମରେ ଆମେ ଲଭି ସଫଳତା
ଅଶେଷ ଉତ୍‌ଫୁଲ୍ଲେ ଭାବୁ, ସେ ଆମ କ୍ଷମତା

Digitized by srujanika@gmail.com

ନିଜର ମହିମା କଥା ହୃଦୟେ ସୁମରି
ତନୁମନ ପୁଲକରେ ଉଠଇ ଶିହରି ।

କିନ୍ତୁ ଭାବି ପାରୁନାହିଁ ଆମେ କଦାଚନ
ଅକ୍ଷର ପୁରୁଷ ସବୁ କରାଏ ସାଧନ ।
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା ତାଙ୍କରି ଶାସନେ
ଘୂରନ୍ତି ନିଜର କକ୍ଷ ପଥେ ଏ ଗଗନେ ।
ଆମେ କରୁ ବୋଲି ହୁଏ ଗର୍ବ ଅଭିମାନ,
କିନ୍ତୁ ସେ କରାନ୍ତି ରହି ହୃଦେ ବିଦ୍ୟମାନ ।
ତାଙ୍କରି ଇଙ୍ଗିତେ କର୍ମ ଚାଲେ ସବୁଠାରେ
ତାଙ୍କ ବିନା ପତ୍ରଟିଏ ହଲେନି ସଂସାରେ ।
ପ୍ରତ୍ୟେକ ଅନ୍ତରେ ଆତ୍ମା ହୋଇ ଅବସ୍ଥିତ
କରାନ୍ତି ସଭିଙ୍କୁ ଇଚ୍ଛା ମତେ ନିୟନ୍ତ୍ରିତ ।

ଆମେ ତ ଆମକୁ ଜାଣୁଅଛୁ ନିରନ୍ତରେ
କିନ୍ତୁ ନ ଜାଣୁଛୁ ଆମ ନିୟନ୍ତାଙ୍କୁ ଥରେ ।
ନିଜକୁ ସ୍ୱତନ୍ତ୍ର ବୋଲି ସଦାଭାବି ମନେ
ନିଜେ କର୍ତ୍ତା ଭୋକ୍ତା ବୋଲି ମଣୁ ଅକାରଣେ ।
ବ୍ରହ୍ମ ପରମାତ୍ମା ବାପ ଏକମାତ୍ର ତତ୍ତ୍ୱ
ଯେ ଚଳାଇଥାନ୍ତି ଏହି ସମସ୍ତ ଜଗତ ।
ଏଇ କଥାଟିକୁ ହୃଦେ ବୁଝିବା ନିମନ୍ତେ
ଏପରି ଭାବରେ ପୁତ୍ର କହିଲି ମୁଁ ତତେ ॥

Digitized by srujanika@gmail.com

# ପ୍ରଥମ ଅଧ୍ୟାୟ

## ତୃତୀୟ ବଲ୍ଲୀ

ଋତଂ ପିବନ୍ତୌ ସୁକୃତସ୍ୟ ଲୋକେ
ଗୁହାଂ ପ୍ରବିଷ୍ଟୌ ପରମେ ପରାର୍ଦ୍ଧେ ।
ଛାୟାତପୌ ବ୍ରହ୍ମବିଦୋ ବଦନ୍ତି
ପଞ୍ଚାଗ୍ନୟୋ ଯେ ଚ ତ୍ରିଣାଚିକେତାଃ ॥ ୧ ॥

ନିଜ କୃତ କର୍ମଫଳ ରସପାନକାରୀ,
ଯେ ପୁରୁଷ ଦୁଇ ହୃଦ-କନ୍ଦର ବିହାରୀ,
ବ୍ରହ୍ମଜ୍ଞେ କହନ୍ତି ଛାଇ ଆଲୁଅ ସମାନ
ଦୁଇ ବିଲକ୍ଷଣ ତତ୍ତ୍ୱ ରୂପେ ବିଦ୍ୟମାନ ।
ପଞ୍ଚାଗ୍ନିକ ଗୃହୀ ଆଉ ଯେ ତ୍ରିଣାଚିକେତ
ତାହାଙ୍କୁ ଏପରି ବୋଲି ଦିଅନ୍ତି ସଙ୍କେତ । ୧ ।

ବ୍ରହ୍ମବିଦ୍‌ଗଣ ଗୃହୀ-ପଞ୍ଚାଗ୍ନି ସାଧକ,
ଆଉ ଯେତେ ନାଚିକେତ ଅଗ୍ନି ଉପାସକ,
ସମସ୍ତେ କହନ୍ତି ଅଛି ଦୁଇଗୋଟି ଆତ୍ମା,
ଏକ ତ ଜୀବାତ୍ମା ଅନ୍ୟ ଏକ ପରମାତ୍ମା ।
ଏ ଶରୀର ହୃଦ-ଗୁହା ମଧ୍ୟେ ଅବସ୍ଥିତ
କର୍ତ୍ତା ରୂପେ ଏକ ସାଥେ ଆମେ ପରିଚିତ ।
ସେ କରନ୍ତି ସେହି ଭୋଗ କରନ୍ତି ସକଳ
ସେଇ ହିଁ ତ ଆତ୍ମା ବୋଲି ବିଦିତ କେବଳ ।
ଏ ଆତ୍ମାଙ୍କୁ ଆମେ ଜାଣୁ, ନ ଜାଣୁ ଅପରେ
ଯେ ଥାନ୍ତି ଇନ୍ଦ୍ରିୟ ମନ ବୁଦ୍ଧି ଅଗୋଚରେ ।
ଦୁଇ ଆତ୍ମା ତତ୍ତ୍ୱେ ଯେଉଁ ବିଲକ୍ଷଣ ଭାବ
ହୃଦୟେ ତୁ ଭଲ ରୂପେ ପୁତ୍ର କର ଠାବ ।

ସ୍ୱକୃତ କର୍ମର ଫଳ ଭୋଗନ୍ତି ସେ ଦୁଇ
ଏପରି ଉଲ୍ଲେଖ ଅଛି ଜାଣିଅଛୁ ତୁହି ।

Digitized by srujanika@gmail.com

କିନ୍ତୁ ଏହି ଅର୍ଥ ବାବୁ ନୁହେଁ ଅଭିପ୍ରେତ
ଛାଇ ଆଲୁଅରୁ ମିଳେ ତାହରି ସଙ୍କେତ।
'ଛତ୍ରୀ ନ୍ୟାୟେ' ଏ କଥାକୁ ବୁଝିଲେ ନନ୍ଦନ
ନିଶ୍ଚିତେ ହୋଇବ ତୋର ସଂଶୟ ମୋଚନ।

ଛତ୍ରୀନ୍ୟାୟେ' ତାହା ଜଣା ପଡ଼ଇ ଯେପରି,
ଏ ଅର୍ଥେ ବୁଝିଲେ ବାବୁ ପାରିବୁ ତୁ ଧରି।
ଦୂରୁଁ ବହୁ ଜଣ ଲୋକ ଆସିବା କାଳରେ
କେତେ ଧରିଥାନ୍ତି ଛତା ନିଜ ମୁଣ୍ଡ ପରେ।
ଅନ୍ୟ ମାନେ ଆସୁଥିଲେ ନ ଧରି ବି ଛତ୍ରୀ
ତାକୁ ବି କହନ୍ତି 'ଛତାଧରା' ଏ ଆସନ୍ତି।

ଏକାଠି ରହିବା ଯୋଗୁ ଏ ଜୀବ ପରମ,
ଦୁଇ ଭୋକ୍ତା ବୋଲି ହୁଏ ମାନସିକ ଭ୍ରମ।
ଶରୀରେ ଜୀବାତ୍ମା ଫଳ ଭୋଗନ୍ତି ନିଜର,
ସାକ୍ଷୀ ରୂପେ ପରମାତ୍ମା ରହନ୍ତି କେବଳ।
ସାକ୍ଷୀମାନେ ଏଠାର ତ ପ୍ରକାଶ ସ୍ୱରୂପ
ଅବିକାରୀ ପରମାତ୍ମା ନିର୍ଗୁଣ ଅରୂପ।

ଅଭୋକ୍ତା ଅକର୍ତ୍ତା ତାଙ୍କୁ ବ୍ରହ୍ମଜ୍ଞେ କହନ୍ତି
ପଞ୍ଚାଗ୍ନିକ ଗୃହୀଜନେ ଏମତ ଦିଅନ୍ତି।
କହନ୍ତି ତ୍ରିଣାଚିକେତ ଅନୁଷ୍ଠାନକାରୀ
'ଅଭୋକ୍ତା' ଏ ପରମାତ୍ମା ହୃଦୟେ ବିଚାରି।

**ଯଃ ସେତୁରୀ ଜାନାନାମକ୍ଷରଂ ବ୍ରହ୍ମ ଯତ୍ ପରମ୍ ।**
**ଅଭୟଂ ତିତୀର୍ଷତାଂ ପାରଂ ନାଚିକେତଂ ଶକେମହି ॥ ୨ ॥**

ଯଜମାନ ଦୁଃଖ ସିନ୍ଧୁ ତରିବା ନିମନ୍ତେ
ଯେଉଁ ନାଚିକେତ-ଅଗ୍ନି ସେତୁ ସମ ଅଟେ,
ସେ ଅଗ୍ନିକୁ ଜାଣି ତାର ଚୟନ ନିମନ୍ତେ
ଆମେ ହିଁ ସମର୍ଥ ଅଟୁଁ, ପୁତ୍ର ଏ ଜଗତେ।

ତେସନେ ତରଣେ ଏଇ ସଂସାର ସାଗର
ତା'ଅଭୟ ପାରଗାମୀ ଯେଉଁ ଜ୍ଞାନୀ ନର

Digitized by srujanika@gmail.com



ଅକ୍ଷର ବ୍ରହ୍ମଙ୍କୁ କରି ଥାଆନ୍ତି ଆଶ୍ରୟ;
ସେ ପଥ ବି ଆମ ପାଇଁ ସୁଲଭ ନିଶ୍ଚୟ ॥ ୨ ॥

**କର୍ମକାଣ୍ଡ** ଜ୍ଞାନକାଣ୍ଡ ବେନି ବିଶେଷତା
ଏ ମନ୍ତ୍ରେ କହୁଛି ପୁତ୍ର ତୋତେ ସେହି କଥା।
ନାଚିକେତ-ଅଗ୍ନି କରି ବିଧିରେ ଚୟନ
ଲଭନ୍ତି ସରଗ ସୁଖ ଯଜମାନ ଗଣ।
ଦୁଃଖ ଶୋକମୟ ଏହି ନଶ୍ୱର ଭୁବନ,
ଆଉ ସରଗର ଦିବ୍ୟ ଅମର ଜୀବନ,
ଉଭୟଙ୍କୁ ମିଳେଇବା ପାଇଁ ସେତୁ ସମ
ନାଚିକେତ-ଅଗ୍ନି ପୁତ୍ର ହୁଅଇ ସକ୍ଷମ।
ଶରଧା ଭକତି ତଥା ଏକାନ୍ତ ଅନ୍ତରେ,
ଏହି ପୂତ ଅଗ୍ନି ବାବୁ ଯେ ଚୟନ କରେ,
ସେହି ମର୍ତ୍ତ୍ୟଲୋକ ଠାରୁ ସ୍ୱର୍ଗେ ଅନିବାର
ଦେବତା-ଐଶ୍ୱର୍ଯ୍ୟ ଭୋଗ କରେ ଦୀର୍ଘକାଳ।

ନାଚିକେତ-ଅଗ୍ନି କରି ସୁଚାରୁ ଚୟନ
ସରଗେ ଲଭିଛି ଆଜି ମୁହିଁ ଯମ ପଣ।
ଆଗୁଁ ଶିଖାଇଛି ତୋତେ ଏ ଚୟନ ବିଧି
ସାଧିଲେ ଲଭିବୁ ନିଶ୍ଚେ ସ୍ୱର୍ଗଫଳ ସିଦ୍ଧି।

ତେସନେ ଜ୍ଞାନୀଏ ଜୀବ ପରମ ବେଭାର,
କରି ଶୁଦ୍ଧ ପୂତ ଅନ୍ତଃକରଣେ ବିଚାର,
ଧ୍ୟାନରେ ପରମ ବ୍ରହ୍ମ ସ୍ୱରୂପତା ଲଭି
ଅନ୍ତରେ କରନ୍ତି ମହାସୁଖ ଉପଲବ୍ଧି।
ମୃତ୍ୟୁମୟ ଜୀବନକୁ ସେହି ହୋଇ ପାର
ଅନ୍ୟ ତୀରେ ମୋକ୍ଷ ସୁଖ ଲଭନ୍ତି ଅପାର।
ଅଭୟ ସେ ଧାମ ସେହି ପରମ ଆଶ୍ରୟ
ଧ୍ୟାନେ ଜ୍ଞାନୀ ଜନେ ତାହା କରିଥାନ୍ତି ଥୟ।

ପର ଓ ଅପର ଭେଦେ ଦୁଇଟି ଅବସ୍ଥା
ବ୍ରହ୍ମଙ୍କର ଅଛି ରହି ଜାଣିଛୁ ଏ କଥା।
ପରବ୍ରହ୍ମ ପ୍ରାପ୍ତି ଅର୍ଥ ତାହାଙ୍କୁ ଜାଣିବା,
ତେସନେ ଅପରବ୍ରହ୍ମେ କେବଳ ଲଭିବା।

Digitized by srujanika@gmail.com

ଜାଣିଗଲେ ତାଙ୍କୁ ଆମେ, "ସେ ଆମ ସ୍ୱରୂପ"
ଆଉ ଭାବିବାନି ତାଙ୍କୁ ଲଭିବା କି ରୂପ।
ନିଜ କ୍ଳାନ୍ତ ଶରୀରକୁ କାନ୍ଧରେ ବସେଇ
ପୁତ୍ରରେ ଜଗତେ କଣ ପଥ ଚାଲେ କେହି?
ସ୍ୱରୂପକୁ ଜଣାଯାଏ ନ ଲଭନ୍ତି କେହି,
ସେ ଅବ୍ୟକ୍ତ ଅଣାକାର ଅଲେଖଟି ସେହି।
ସେ ତ ନିତ୍ୟ ପ୍ରାପ୍ତ ସେହି ସିନା ନିତ୍ୟ ଜ୍ଞାତ
ଅଜ୍ଞାନଙ୍କୁ ସେ କେବଳ ରହନ୍ତି ଅଜ୍ଞାତ।
ଅଜ୍ଞାନ କାଟିବା ଅର୍ଥ ସ୍ୱରୂପ ଜାଣିବା
ସ୍ୱରୂପ ଜାଣିବା ଅର୍ଥ ବ୍ରହ୍ମଙ୍କୁ ଜାଣିବା।
ଯଜ୍ଞାଦି କର୍ମରେ କେହି କଲେ ସ୍ୱର୍ଗ ଲାଭ
ମାତ୍ର ଆତ୍ମଜ୍ଞାନେ ହୁଏ ଅମୃତତ୍ୱ ଲାଭ।
ସ୍ୱର୍ଗ ମିଳେ ନାଚିକେତ-ଅଗ୍ନି ବିଦ୍ୟା ଫଳେ
ମୁକତି ମିଳଇ ମାତ୍ର ବ୍ରହ୍ମ ଏକାକ୍ଷରେ।
ସେ ପରମ ବ୍ରହ୍ମେ କିଏ ଜାଣିବ କେସନେ
ବୁଝାଉଛି ପର କେଉ ଶ୍ଳୋକରେ ଯତନେ।

## ରଥ ରୂପକ

**ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବ ତୁ।**
**ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହମେବ ଚ ॥୩॥**

ଫଳ ଭୋଗୀ ଜୀବାତ୍ମାକୁ ତୁ ଜାଣିବୁ ରଥୀ,
ଦେହକୁ ତୁ ରଥ ବୁଝ ବୁଦ୍ଧିକୁ ସାରଥି।
ମନ ଯେ ଲଗାମ ପୁଣି ଜାଣରେ କୁମର,
ରଥ ରଥୀ ସାରଥି ଏ ଶରୀରେ କେବଳ।୩।

ଏ ଜୀବାତ୍ମା ରଥ ସ୍ୱାମୀ, ସାରଥି ବିବେକ,
ଦେହ ରଥ, ମନ ଅଶ୍ୱ-ଲଗାମ ଯେତେକ।
ଏ ରଥ ରୂପକ ବାବୁ ମନରେ ସୁମରି
ସହଜେ ଶରୀର ତତ୍ତ୍ୱତୁ ପାରିବୁ ଧରି।

ଥାଆନ୍ତି ପ୍ରତ୍ୟେକ ରଥେ ଜଣେ ଜଣେ ରଥୀ
ଜୀବାତ୍ମା ଶରୀର-ରଥ ମାଲିକ ଅଟନ୍ତି।

Digitized by srujanika@gmail.com

ରଥେ ନାନା କ୍ରିୟା ଚାଲେ ରଥୀ ପ୍ରୟୋଜନେ
ତେହ୍ନେ ଦେହେ ଚାଲେ କ୍ରିୟା ଜୀବାତ୍ମା ଶାସନେ ।
ରଥକୁ ଠିକକି ବାଟେ ନେବା ଉଦ୍ଦେଶ୍ୟରେ
ସେ ରଥେ ବସଇ ଜଣେ ସାରଥି ରୂପରେ ।
ଦେହ-ରଥ ସାରଥିର ନାମ ବୁଦ୍ଧି ଅଟେ ।
ସେ ତ ମଣିଷକୁ ନିଏ ଲକ୍ଷ୍ୟ ସନ୍ନିକଟେ ।
ନାନାଦି ସଂକଳ୍ପ ଜାଗେ ମଣିଷର ମନେ
କିନ୍ତୁ ଶ୍ରେୟ ପଥେ ବୁଦ୍ଧି ନିଅଇ ଯତନେ ।

ମନକୁ ଶରୀର-ରଥ ଲଗାମ ଜାଣିବୁ
ରଥ ରୂପକକୁ ସଦା ଧିଆନେ ରଖିବୁ ।
ଲଗାମରେ ଅଶ୍ୱଗଣେ କରି ନିୟନ୍ତ୍ରଣ
ସାରଥି ରଥକୁ ସଦା କରନ୍ତି ଚାଳନ ।

**ଇନ୍ଦ୍ରିୟାଣି ହୟନାହୁର୍ବିଷୟାଂସ୍ତେଷୁ ଗୋଚରାନ୍ ।**
**ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେତ୍ୟାହୁର୍ମନୀଷିଣଃ ।। ୪ ।।**

"ଦେହ-ରଥେ ଇନ୍ଦ୍ରିୟେ ତ ଅଶ୍ୱଗଣ ପରି
ବିଷୟାଦି ସେ ଅଶ୍ୱଙ୍କ ଚରା ଯେଉଁ ପରି ।
ଶରୀର ଇନ୍ଦ୍ରିୟ-ମନ ଯୁକ୍ତ ଆତ୍ମା ଯିଏ
ସେ ଭୋଗ କରନ୍ତି ବୋଲି କହନ୍ତି ଜ୍ଞାନୀଏ" ।। ୪ ।।

"ଶରୀର ରୂପକ ରଥେ ଘୋଟକ ଇନ୍ଦ୍ରିୟେ,
ଉଦ୍ଦାମ ଓ ଉଚ୍ଛୃଙ୍ଖଳ ଅଟନ୍ତି ସଭିଏଁ ।
ଅଶ୍ୱରୂପୀ ଇନ୍ଦ୍ରିୟଙ୍କ ରହିଅଛି ଚରା
ରୂପ ରସ ଗନ୍ଧ ସ୍ପର୍ଶ ବିଷୟାଦି ପରା ।
ସୁଖକର ବସ୍ତୁ ପଛେ ହୁଅନ୍ତି ଧାବିତ
ଭଲ ମନ୍ଦ କିଛି ତାଙ୍କ ବିଚାର ନାହିଁ ତ ।
ଏ ଇନ୍ଦ୍ରିୟେ କରିବାକୁ ଦୃଢ଼େ ନିୟନ୍ତ୍ରଣ
ରହିଛି ଲଗାମ ରୂପୀ ଏଇ ଦେହେ ମନ ।

ଶରୀର ଇନ୍ଦ୍ରିୟ ମନେ ଯେ ଆତ୍ମା ଯୁକତ
ସେହି ତ ଭୋଗଇ କର୍ମ କୁଫଳ ସତତ ।

Digitized by srujanika@gmail.com

ଏହି ଆତ୍ମା ଜୀବ ନାମେ ହୁଅଇ କଥିତ,
ନାନା କାମ କାମନାରେ ନିରତେ ଚାଳିତ।
ଶରୀର ଇନ୍ଦ୍ରିୟ ମନ ବୁଦ୍ଧିରେ ତାହାର
କର୍ମ ସମ୍ପାଦନ କରେ ନାନାଦି ପ୍ରକାର।
ପୁଣି ସେ କର୍ମର କର୍ତ୍ତା ବୋଲି ଭାବି ମନେ,
ଅସୁମାରୀ ଦୁଃଖ ଶୋକ ଭୋଗଇ ଜୀବନେ।''

**ଯସ୍ତ୍ୱବିଜ୍ଞାନବାନ୍ ଭବତ୍ୟଯୁକ୍ତେନ ମନସା ସଦା।**
**ତସ୍ୟେନ୍ଦ୍ରିୟାଣ୍ୟବଶ୍ୟାନି ଦୁଷ୍ଟାଶ୍ୱା ଇବ ସାରଥେଃ। ।।୫।।**

''ପୁଣି ଯେ ବ୍ୟକ୍ତିର ବୁଦ୍ଧି ରୂପକ ସାରଥି,
ହୁଏ ସଦା ଅବିବେକୀ ଅସଂଯତ ମତି,
ତା ଅଧୀନେ ଇନ୍ଦ୍ରିୟାଦି ନ ଥାନ୍ତି, ଯେସନେ
ସାରଥିର ଅଧୀନରେ ଦୁଷ୍ଟ ଅଶ୍ୱଗଣେ।୫।

''ରଥ ଘୋଡ଼ା ସବୁ ଯଦି ଦୁଷ୍ଟ ପାଲଟିଲେ
ନ ମାନି ସାରଥି କଥା, କି ହେବ ଏଥିରେ ?
ରଥୀ ପହଞ୍ଚିବ ନାହିଁ କେବେ ଲକ୍ଷ୍ୟସ୍ଥଳେ,
ତେଣୁ ମୁଁ କହିଲି ପୁତ୍ର ଏପରି ଭାବରେ।

ବିବେକହୀନ ଯେ ବୁଦ୍ଧି ରୂପକ ସାରଥି
ମନ ଏକାଗ୍ରତା ଶୂନ୍ୟ ନୁହେଁ ସ୍ଥିର ମତି,
ତାହାରି ଇନ୍ଦ୍ରିୟେ ସବୁ ଦୁଷ୍ଟ ଅଶ୍ୱପରି
କେତେବେଳେ ବଶୀଭୂତ ନୁହନ୍ତି ତାଙ୍କରି।
ଯେଉଁ ସାରଥିର ଅଶ୍ୱେ ନ ଥାନ୍ତି ଆୟତ
ସେ ବ୍ୟକ୍ତି କି ଦୁଃଖ ଭୋଗେ, କେ କଳିବ ସତେ !!

କିଏ ସତ କିଏ ଆଉ ଅସତ ଅଟଇ,
ଏହାକୁ ଯାହାର ବୁଦ୍ଧି ଜାଣି ନ ପାରଇ,
ସେ ବ୍ୟକ୍ତି ନିଶ୍ଚିତ ରୂପେ ବିବେକ ବିହୀନ,
ଇନ୍ଦ୍ରିୟେ ହୁଅନ୍ତି ନାହିଁ କେବେ ତା ଅଧୀନ।

ମନର ପ୍ରବୃତ୍ତି ଆଉ ନିବୃତ୍ତି ସାଥିରେ,
ଯୁକ୍ତ ହୋଇ ଏହି ବୁଦ୍ଧି ରହଇ ଶରୀରେ।

Digitized by srujanika@gmail.com

ନୋହି ସେହି ମନ-ପ୍ରଭୁ, ତା ଅଧୀନେ ରହେ
ତେଣୁ ଜୀବ ନାନା ଭାବେ ଦୁଃଖ ଶୋକ ସହେ ।

ଅସଂଯତ ମନେ କେବେ ଇନ୍ଦ୍ରିୟ ସଂଯମ
ହୋଇ ନ ପାରଇ କର ପଛେ ଯେତେ ଶ୍ରମ ।
ମନ ବଶ ନୋହି ଏହି ଇନ୍ଦ୍ରିୟ ସକଳ
ହୁଅନ୍ତି ଉଦ୍ଦାମ ଉଗ୍ର ଅତି ଉଚ୍ଛୃଙ୍ଖଳ ।
ଜୀବକୁ ବିପଥେ ନେଇ ପକାନ୍ତି ସତ୍ୱର
ଅଶ୍ୱରୂପୀ ଏ ଅବାଧ ଇନ୍ଦ୍ରିୟ ନିକର ।''

**ଯସ୍ତୁ ବିଜ୍ଞାନବାନ୍ ଭବତି ଯୁକ୍ତେନ ମନସା ସଦା ।**
**ତସ୍ୟେନ୍ଦ୍ରିୟାଣ୍ୟ ବଶ୍ୟାନି ସଦଶ୍ୱା ଇବ ସାରଥେଃ ॥ ୬॥**

''କିନ୍ତୁ ଯେ ବ୍ୟକ୍ତିର ବୁଦ୍ଧି ରୂପକ ସାରଥି
ବିବେକ ସମ୍ପନ୍ନ, ସଦା ସୁସଂଯତ ମତି,
ତା' ଅଧୀନେ ଇନ୍ଦ୍ରିୟାଦି ଥାଆନ୍ତି ଏପରି
ସାରଥି ଅଧୀନେ ଶିଷ୍ଟ ଅଶ୍ୱ ଯେଉଁପରି । ୬ ।

''ପୂର୍ବୋକ୍ତ ସାରଥି ସମ ନୁହେଁ ଯେ ସାରଥି,
ଯେ ବିବେକବାନ ସଦା ସୁସଂଯତ ମତି
ତାଙ୍କରି ଇନ୍ଦ୍ରିୟେ ସବୁ ଶିଷ୍ଟ ଅଶ୍ୱ ପରି
ସଦାବେଳେ ବଶୀଭୂତ ଥାଆନ୍ତି ତାଙ୍କରି ।

ମନ ଯେଣୁ ଇନ୍ଦ୍ରିୟଙ୍କୁ ଚଳାଏ ନିରତେ
ମନକୁ ଚଳାଏ ବାବୁ ବୁଦ୍ଧି ସେହି ମତେ ।
ମନର ମାଧ୍ୟମେ ବୁଦ୍ଧି ଇନ୍ଦ୍ରିୟ ନିକରେ
ପ୍ରଭାବ ପକାଇ ଥାଏ ପରା ନିରନ୍ତରେ ।

ମନ ରୂପ ଲଗାମଟି ବୁଦ୍ଧିର ହାତରେ,
ସଦାବେଳେ ଶକ୍ତ ଭାବେ ପୁଣ୍ଡ ଧରାଗଲେ,
ଅଶ୍ୱେ ବା ଇନ୍ଦ୍ରିୟେ ସବୁ ହୋଇଥାନ୍ତି ବଶ
ରଥୀ ପହଞ୍ଚନ୍ତି ଲକ୍ଷ୍ୟ ସ୍ଥଳରେ ଅବଶ୍ୟ ।''

Digitized by srujanika@gmail.com

### ଅବିବେକୀର ସଂସାର ପ୍ରାପ୍ତି

**ଯସ୍ତ୍ୱବିଜ୍ଞାନବାନ୍ ଭବତ୍ୟମନସ୍କଃ ସଦାଶୁଚିଃ ।**
**ନ ସ ତତ୍ପଦମାପ୍ନୋତି ସଂସାରଂ ଚାଧିଗଚ୍ଛତି । ॥୭॥**

କିନ୍ତୁ ଯିଏ ଅବିବେକୀ ଅସଂଯତ ଚିତ୍ତ,
ନିରନ୍ତରେ ରହୁଥାଏ ହୋଇ ଅପବିତ୍ର,
ସେ କେବେ ପରମ ପଦ ଲାଭ ନ କରଇ
ବରଂ ଜନ୍ମ ମୃତ୍ୟୁ ମୟ ସଂସାର ଲଭଇ ।

‘‘ବିବେକ ନ ହେବ ଯଦି ଏ ରଥ ସାରଥି
ନହୁଏ ଚଞ୍ଚଳ ମନ ସୁଶିକ୍ଷିତ ଅତି,
ସେ ଶିକ୍ଷତ ମନ ପୁଣି ଇନ୍ଦ୍ରିୟଙ୍କ ପରେ,
ଲଗାମ ନ କଷେ ଯେବେ ଉଚିତ ଭାବରେ,
ତେବେ ଆରେ ପୁତ୍ର ସେହି ଅପବିତ୍ର ଜନ
କରେ ଜନ୍ମ ମୃତ୍ୟୁମୟ ସଂସାର ଅର୍ଜନ ।
ସତ୍ୟକୁ ଜୀବନେ ଜାଣି ନପାରିବା ଜନ
ସଦସଦ ବିଚାର ସେ କରିବ କେସନ ?
ସଂଯତ ହୁଅଇ ନାହିଁ କେବେ ତାର ମନ
ସେ ପାରେନା କରି କେବେ ଇନ୍ଦ୍ରିୟ ଦମନ ।
ଫଳରେ ଇନ୍ଦ୍ରିୟଗଣେ ହୋଇ ଉଚ୍ଛୃଙ୍ଖଳ
ମଣିଷକୁ ପାପ କର୍ମେ ବୁଡ଼ାନ୍ତି କେବଳ ।
ହୋଇଲେ ଅଶୁଚି ଦେହ ମନ ଅପବିତ୍ର
ନହୁଅଇ ବ୍ରହ୍ମପଦ ଲାଭ କଦାଚିତ ।

ଜୀବ-ନଉକାଟି ଭବ-ସିନ୍ଧୁ ପାର ଆଶେ,
ସଂସାର ରୂପକ ଜଳ ଲୋଡ଼ା ତା’ ସକାଶେ
କିନ୍ତୁ ଏ ସଂସାର ପାଣି ପଶିଲେ ଡଙ୍ଗାରେ
କେଉଁ ମୂଢ଼ ଭବ-ସିନ୍ଧୁ ପାର ହୋଇପାରେ ?’’

### ବିବେକୀର ପରମପଦ ପ୍ରାପ୍ତି

**ଯସ୍ତୁ ବିଜ୍ଞାନବାନ୍ ଭବତି ସମନସ୍କଃ ସଦା ଶୁଚିଃ ।**
**ସ ତୁ ତତ୍ ପଦମାପ୍ନୋତି ଯସ୍ମାଦ୍ ଭୂୟୋ ନ ଜାୟତେ ॥୮॥**

Digitized by srujanika@gmail.com



ବିବେକୀ ସଂଯତ ଚିତ୍ତ କିନ୍ତୁ ଯେଉଁ ବ୍ୟକ୍ତି,
ନିର୍ମଳ ଅନ୍ତର ସଦା ପବିତ୍ର ଅଟନ୍ତି,
ସେହି ତ ପରମ ପଦ ହୋଇଥାନ୍ତି ପ୍ରାପ୍ତ
ତହୁଁ ଫେରି ଆଉ ଭବେ ନ ହୁଅନ୍ତି ଜାତ'' ।। ୮ ।।

''ବିପରୀତ କ୍ରମେ ବାବୁ ବୁଝ ଏହି କଥା
ବିବେକୀ ସଂଯତ ଚିତ୍ତ ବ୍ୟକ୍ତିଙ୍କ ଅବସ୍ଥା ।
ବିବେକ ବିଚାର ବୁଦ୍ଧି ଯାହାଙ୍କ ସାରଥି
ମନ ଇନ୍ଦ୍ରିୟଙ୍କୁ ସେହି ସଂଯମେ ରଖନ୍ତି ।
ତେଣୁ ରଥୀ ଲକ୍ଷ୍ୟସ୍ଥଳେ ପହଞ୍ଚନ୍ତି ଯାଇ
ଦୁଃଖ ପୂର୍ଣ୍ଣ ମର୍ତ୍ତ୍ୟେ ଆଉ ଲେଉଟନ୍ତି ନାହିଁ ।
ବିବେକ ବିଚାରେ ବୁଦ୍ଧି ତାଙ୍କରି ନିର୍ମଳ
ସଂଯତ ତାଙ୍କର ମନ ପୁଣି ନିରନ୍ତର ।
ଇନ୍ଦ୍ରିୟ ସଂଯମେ ସେହି ହୁଅନ୍ତି ସମର୍ଥ
ରହନ୍ତି ଇନ୍ଦ୍ରିୟେ ହୋଇ ସଦା ଅନୁଗତ ।
ବୁଦ୍ଧିର ସାହାଯ୍ୟ ନେଇ ମନ-ଲଗାମରେ,
ଇନ୍ଦ୍ରିୟ-ଅଶ୍ୱଙ୍କୁ ଯିଏ ନିୟନ୍ତ୍ରଣ କରେ,
ସେ ଶାଶ୍ୱତ ସନାତନ ବ୍ରହ୍ମପଦ ପାଇ
ଦୁଃଖ ଶୋକମୟ ମର୍ତ୍ତ୍ୟେ ଲେଉଟନ୍ତି ନାହିଁ ।''

**ବିଜ୍ଞାନ ସାରଥିର୍ୟସ୍ତୁ ମନଃ ପ୍ରଗ୍ରହବାନ୍ ନରଃ**
**ସୋଽଧ୍ୱନଃ ପରମାପ୍ନୋତି ତଦ୍ ବିଷ୍ଣୋଃ ପରମଂ ପଦମ୍ । ।। ୯ ।।**

''ଯାହାର ବିଚାର ବୁଦ୍ଧି କୁଶଳ ସାରଥି
ଯେ ମନକୁ ନିରନ୍ତରେ ସ୍ୱବଶେ ରଖନ୍ତି,
ସେ ପୁରୁଷ ପାର ହୋଇ ଏ ସଂସାରପଥ
ବ୍ୟାପକ ପରମ ପଦ ହୁଅନ୍ତି ପ୍ରାପତ'' ।। ୯ ।।

''ରଥ ରୂପକର ଯେତେ ମନ୍ତ୍ର ଗଲି କହି
ଏ ମନ୍ତ୍ରଟି ତାର ପରିସମାପ୍ତି ଅଟଇ
ବିବେକ ବୁଦ୍ଧିରେ କରେ ଯେ ଇନ୍ଦ୍ରିୟେ ବଶ
ପରମ ପଦକୁ ସେହି ଲଭନ୍ତି ଅବଶ୍ୟ ।

Digitized by srujanika@gmail.com

ଗାଡ଼ିର ଚାଳକ ଯେବେ ହୁଏ ମତୁଆଳ,
ଯାତ୍ରୀ ନ ପହଞ୍ଚେ କେବେ ଲକ୍ଷ୍ୟ ପଥେ ତାର।
ଯେତେ ବି ଭୌତିକ ସୁଖ ଲଭୁ ଅବିବେକୀ
ତଥାପି ଆନନ୍ଦ ଶାନ୍ତି ଲଭି ପାରେ ସେ କି ?
ଏହା ବିପରୀତେ କିନ୍ତୁ ଜଣେ ବଇରାଗୀ
ବିଷୟଭୋଗାଦି ସୁଖେ ନୋହି ଅନୁରାଗୀ,
ବୃକ୍ଷତଳେ ଜୀର୍ଣ୍ଣ ବାସେ ବସି ଶିଳାପରେ
ଅମୀୟ ଆନନ୍ଦ ଶାନ୍ତି ଲଭେ ଜୀବନରେ।
ଏଥିରୁ ପଡ଼ଇ ଜଣା ଭୌତିକ ଦରବେ
କେହି ଜୀବନରେ ଶାନ୍ତି ନ ଲଭଇ ଲବେ।

ମାତ୍ର ଆତ୍ମ ସଂଯମୀ ଯେ ସମାହିତ ଚିତ୍ତ
ସେ କେବଳ ପାରେ ଲଭି ଶାନ୍ତି ଅପ୍ରମିତ।
ନିର୍ମଳ ବିଚାର ବୁଦ୍ଧି ବିବେକ ଖଟାଇ
ଚଞ୍ଚଳ ଚିତ୍ତକୁ ସ୍ଥିର କରାଯାଇଥାଇ।
ତେବେ ଜୀବନର ଲକ୍ଷ୍ୟ ଆନନ୍ଦ ପରମ
ଲଭିବାକୁ ଏ ସାଧକେ ହୁଅନ୍ତି ସକ୍ଷମ।
ବିଷ୍ଣୁଙ୍କ ପରମ ପଦ ଏହା ହିଁ କଥିତ
ଏ ମନ୍ତ୍ରେ ପ୍ରତ୍ରରେ ଯାହା ହୋଇଛି ବର୍ଣ୍ଣିତ।

ମଣିଷର ଇନ୍ଦ୍ରିୟାଦି ବୁଦ୍ଧି ଆଉ ମନେ
ଏ ତିନିରେ ସେ ପହଞ୍ଚେ ତା' ଲକ୍ଷ୍ୟ ସାଧନେ।
ଯେ ପଦ ପାଇଲେ ସରେ ସଂସାରର ପଥ,
ଆଉ ନହୁଅଇ ତହିଁ କିଛି ଗତାଗତ।

ଯେଉଁ ଅନ୍ତରାତ୍ମା ରହି ଅଛନ୍ତି ପଛରେ
ତାହାଙ୍କୁ 'ପରମପଦ' ଜାଣିବୁ ଅନ୍ତରେ।
ଏହି ବୋଧ ପାଇଁ ତୋତେ ସ୍ଥୂଳରୁ ବାହାରି
ସୂକ୍ଷ୍ମ ଯାଏଁ ଯିବା ପାଇଁ କହିବି ବିସ୍ତାରି।
ସୂକ୍ଷ୍ମ ହିଁ କାରଣ ବାବୁ ପରମ କାରଣ
ତାକୁ ଜାଣିବାକୁ ଦୃଢ଼ ହେଉ ତୋର ମନ।"

Digitized by srujanika@gmail.com

## ସୂକ୍ଷ୍ମରୁ ସୂକ୍ଷ୍ମତର

**ଇନ୍ଦ୍ରିୟେଭ୍ୟଃ ପରା ହ୍ୟର୍ଥା ଅର୍ଥେଭ୍ୟଶ୍ଚ ପରଂ ମନଃ।**
**ମନସସ୍ତୁ ପରା ବୁଦ୍ଧି ର୍ବୁଦ୍ଧେରାତ୍ମା ମହାନ୍ ପରଃ। ॥୧୦॥**

''ଇନ୍ଦ୍ରିୟଙ୍କ ଠାରୁ ସୂକ୍ଷ୍ମ ବିଷୟେ ତାଙ୍କରି
ବିଷୟଙ୍କ ଠାରୁ ସୂକ୍ଷ୍ମ ମନ ସେହିପରି
ମନ ଠାରୁ ବୁଦ୍ଧି ସୂକ୍ଷ୍ମ ବୋଲି ତୁମେ ଜାଣ
ବୁଦ୍ଧି ଠୁଁ ଆହୁରି ସୂକ୍ଷ୍ମ ଏ ଆତ୍ମା ମହାନ'' ॥୧୦॥

'ମନକୁ ସ୍ଥୂଳରୁ ସୂକ୍ଷ୍ମେ ଘେନି ଯିବା ପାଇଁ
ପୁତ୍ରରେ ଏମନ୍ତେ ତୋତେ କହୁଛି ବୁଝାଇ
ଇନ୍ଦ୍ରିୟଙ୍କ ଠାରୁ ସୂକ୍ଷ୍ମ ଇନ୍ଦ୍ରିୟ ବିଷୟେ
ଶୁଣିଲେ ମନରେ ତୋର ସଂଶୟ କି ରହେ ?
ଆଖି ଠାରୁ ଦୃଶ୍ୟବସ୍ତୁ, କାନ ଠାରୁ ନାଦ
ସୂକ୍ଷ୍ମ ବା କିପରି ଅବା ଜିହ୍ୱାଠାରୁ ସ୍ୱାଦ ?
ଜଗତେ ନାନାଦି ବସ୍ତୁ ଦେଖିବା ନିମନ୍ତେ
ଆଖି ନଥିଲେ ଏ ଜୀବ କି କରନ୍ତା ସତେ।
ହୋଇବ ଶବଦ ହୀନ ଯେବେ ଏ ଜଗତ
ଆଉ କି କାର୍ଯ୍ୟରେ ତେବେ କାନ ହେବ ରତ ?
ତେଣୁ ଜଣାଯାଏ ପୁତ୍ର ନିଶ୍ଚିତ ଏ କଥା
ବସ୍ତୁ ବିନା ଇନ୍ଦ୍ରିୟର କାହିଁ ସାର୍ଥକତା ?
ସେ ଲାଗି ବିଷୟବସ୍ତୁ ଇନ୍ଦ୍ରିୟ କାରଣ
କାରଣ ସହଜେ ସୂକ୍ଷ୍ମ କାର୍ଯ୍ୟଠୁଁ ନନ୍ଦନ।

ବିଷୟୁଁ ଅଧିକ ଶ୍ରେଷ୍ଠ, ସୂକ୍ଷ୍ମ ଏହି ମନ,
ଏଇ ମନେ ହୁଏ ଯେତେ ସବୁ ଆଲୋଡ଼ନ।
ବିଷୟ ସହିତେ ଇନ୍ଦ୍ରିୟର ଯୋଗାଯୋଗେ,
ପ୍ରତିକ୍ରିୟା ହୋଇଥାଏ ଏଇ ମନ ଯୋଗେ।
ବସ୍ତୁ ବିଷୟରେ ତେବେ ହୁଏ ଆମ ଜ୍ଞାନ,
ବିଷୟ ବସ୍ତୁଠୁଁ ତେଣୁ ଏ ମନ ମହାନ।

ସଂକଳ୍ପ ବିକଳ୍ପ ଯେତେ ଏ ମନେ ଉଠଇ
ସେ ସବୁକୁ ନେଇ ମନ ବୁଦ୍ଧିକୁ ଦିଅଇ।
ଏ ବୁଦ୍ଧି ନିଶ୍ଚୟାତ୍ମିକା ହୋଇବା କାରଣେ
ବିଚାର ନିର୍ଣ୍ଣୟ କରି ବସେ ତତ୍କ୍ଷଣେ।

Digitized by srujanika@gmail.com

ବୁଦ୍ଧି ବିଚାରକୁ କାର୍ଯ୍ୟେ ଲଗାଇବା ପାଇଁ
ମନଟି ଏ ବୁଦ୍ଧି ଠାରୁ ନିର୍ଦ୍ଦେଶନା ପାଇ।
ସେହି ସେହି ଇନ୍ଦ୍ରିୟକୁ କରେ ନିୟୋଜନ
ଅପେକ୍ଷିତ ବିଷୟରେ, ରେ ପ୍ରିୟ ନନ୍ଦନ।
ମନ କଥା ଯେଣୁ ବୁଦ୍ଧି ବିଚାର କରଇ
ତେଣୁ ବୁଦ୍ଧି ମନ ଠାରୁ ଉତ୍କୃଷ୍ଟ ଅଟଇ।

ବୁଦ୍ଧି ଠାରୁ ସୂକ୍ଷ୍ମ ଆତ୍ମା ଜାଣିବୁ କୁମର
ଏହି କ୍ରମେ ଉପରକୁ ହେବୁ ଅଗ୍ରସର।
ଯେଉଁ ଆତ୍ମା କଥା ପୁତ୍ର କହିଲି ଏଠାରେ
ସେହି ତ ସମଷ୍ଟି-ମନ-ବୁଦ୍ଧି ମୋ ବିଚାରେ।
ସେ ପୁଣି ହରିଣ୍ୟଗର୍ଭ ନାମେ ଅଭିହିତ
ଯାହା କଥା ପର ମନ୍ତ୍ରେ କହିବି ମୁହିଁ ତ।
ଅଜ୍ଞାନ ଓ ଅହଂକାର କ୍ଷୁଦ୍ରତା କାରଣେ
ଆମେ ସବୁ ଭିନ୍ନ ଭିନ୍ନ ଭାବୁ ଅକାରଣେ।
ଆମର ବିଚାର ବୁଦ୍ଧି ଅନ୍ୟଠୁଁ ପୃଥକ
ଏପରି ଭାବନା ପୁତ୍ର ଅଟେ ନିରର୍ଥକ।

କେହି ବ୍ୟକ୍ତି ଯେବେ ଭାବି ବସିବ ମନରେ,
ସୃଷ୍ଟିରୁ ଅଲଗା ହୋଇ ସ୍ୱତନ୍ତ୍ର ଭାବରେ,
ସେ ଚିନ୍ତା କରିବ ନିଜ ମନ ମୁତାବକ
ତେବେ ସେ ଭାବନା ତାର ଅଟେ ନିରର୍ଥକ।

ଆତ୍ମାଙ୍କ ସୂକ୍ଷ୍ମତ୍ୱ ପ୍ରତିପାଦିତ ଏଠାରେ,
ସେ ପରା ସୂକ୍ଷ୍ମାତିସୂକ୍ଷ୍ମ ଜ୍ଞାନୀଙ୍କ ମତରେ।
ସେ ସୂକ୍ଷ୍ମ ଆତ୍ମାଙ୍କୁ ଲାଭ କରିବାର ପାଇଁ,
ମନକୁ ପ୍ରଥମେ ସ୍ଥୂଳ ବସ୍ତୁରେ ଲଗାଇ।
ତା'ପରେ ସୂକ୍ଷ୍ମରୁ ସୂକ୍ଷ୍ମ ଦିଗେ ଗତି କଲେ
ପରିଶେଷେ ପହଞ୍ଚିବ ଆତ୍ମାଙ୍କ ପାଖରେ।''

**ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ ପୁରୁଷଃ ପରଃ ।**
**ପୁରୁଷାନ୍ନ ପରଂ କିଞ୍ଚିତ୍ ସା କାଷ୍ଠା ସା ପରା ଗତିଃ ॥ ୧୧ ॥**

Digitized by srujanika@gmail.com

**ମହତଙ୍କ ଠାରୁ ସୂକ୍ଷ୍ମ ଅଟନ୍ତି ଅବ୍ୟକ୍ତ**
**ଅବ୍ୟକ୍ତଙ୍କ ଠାରୁ ସୂକ୍ଷ୍ମ ପୁରୁଷ ସତତ ।**
**ପୁରୁଷଙ୍କ ଠାରୁ ସୂକ୍ଷ୍ମ ଆଉ କିଛି ନାହିଁ,**
**ସେହି କାଷ୍ଠା ସେ ପରମ ଗତି ସେଥିପାଇଁ । ୧୧ ।**

"କ୍ରମଶଃ ଅଧିକ ସୂକ୍ଷ୍ମ ତତ୍ତ୍ୱେ ତୋର ମନ
ଲଗାଇବା ପାଇଁ ପୁତ୍ର କରୁଛି ଯତନ ।
ତୁ ଜାଣୁ ତ ମହତ ଯେ, ସେ ହିରଣ୍ୟଗର୍ଭ,
ସେ ମହଦ୍ ଠାରୁ ସୂକ୍ଷ୍ମ ଅବ୍ୟକ୍ତ ଦରବ ।
ଏ ଜଗତ ବୀଜ-ରୂପା ପ୍ରକୃତି ପରମା
'ଅବ୍ୟକ୍ତ' ରୂପରେ କରାଯାଇଛି କଳ୍ପନା ।

ଯାହା ଅଭିବ୍ୟକ୍ତ ହୋଇ ନାହାନ୍ତି ଏ ଯାଏଁ,
ସେହି ଅବ୍ୟାକୃତା ସେହି ଅବ୍ୟକ୍ତ ବୋଲାଏ ।

ମହତଙ୍କ ଠାରୁ ସୂକ୍ଷ୍ମ ଅଟନ୍ତି ଅବ୍ୟକ୍ତ,
ଅବ୍ୟକ୍ତଙ୍କ ଠାରୁ ସୂକ୍ଷ୍ମ ପୁରୁଷ ସତତ ।
ପୁତ୍ରରେ ଜଗତ କ୍ରମ ଅଭିବ୍ୟକ୍ତି କଥା
ଚିନ୍ତିଲେ ହୋଇବ ତାହା ଏପରି ବ୍ୟବସ୍ଥା–

ପ୍ରଥମେ ପୁରୁଷ, ଏଇ ପୁରୁଷଙ୍କ ଠାରୁ
ଅବ୍ୟକ୍ତ ଅଟନ୍ତି ସ୍ଥୂଳ, ପୁଣି ତାଙ୍କ ଠାରୁ
ସ୍ଥୂଳ ଯେ ମହତ ତତ୍ତ୍ୱ, ତହୁଁ ସ୍ଥୂଳତର
ଏ ବୁଦ୍ଧି, ବୁଦ୍ଧିରୁ ମନ, ବିଷୟ ନିକର ।
ବିଷୟାଦି ଠାରୁ ସ୍ଥୂଳ ଇନ୍ଦ୍ରିୟେ ନନ୍ଦନ
ସୃଷ୍ଟି ତତ୍ତ୍ୱର ତ ଅଟେ ଏ ଅବରୋହଣ ।

ସେ ପୁରୁଷ ଏକ ଏବଂ ଅଦ୍ୱିତୀୟ ଜାଣ,
ସେହି ତ ପରମେଶ୍ୱର ଜଗତ ନିଧାନ ।
ପ୍ରଥମେ ଜଗତ ଯେବେ ପୁରୁଷଙ୍କ ଠାରେ
ଅବ୍ୟକ୍ତ ରୂପରେ ରହିଥିଲା ବୀଜାକାରେ,
ସେହି 'ଅବସ୍ଥା'କୁ ପୁତ୍ର 'ଅବ୍ୟକ୍ତ' କହନ୍ତି
ପୁରୁଷଙ୍କ ଠାରୁ ତେଣୁ ଅବ୍ୟକ୍ତ ଉତ୍ପତ୍ତି ।

ମହତ ତତ୍ତ୍ୱ ଯେ ଏହି ଅବ୍ୟକ୍ତୁଁ ଉତ୍ପନ୍ନ
ଯେଉଁ ଉପାଦାନେ ସୃଷ୍ଟି ହୁଅଇ ଗଠନ ।

Digitized by srujanika@gmail.com

ଅବ୍ୟକ୍ତ ଭିତରୁ ହୋଇ ଅଙ୍କୁର ଉଦ୍‌ଗମ,
ସୃଷ୍ଟି ପ୍ରକାଶର ଯେଉଁ ଅବସ୍ଥା ପ୍ରଥମ
ତାହାକୁ 'ମହତ୍-ତତ୍ତ୍ୱ' ପୁତ୍ର କୁହାଯାଏ,
ତାର ସ୍ଥୂଳ ରୂପ ବାବୁ ଏ ବୁଦ୍ଧି ବୋଲାଏ।
ବୁଦ୍ଧି ସ୍ଥୂଳ ରୂପ ମନ, ମନର ବିଷୟେ,
ବିଷୟର ସ୍ଥୂଳ ରୂପ ଆମ ଇନ୍ଦ୍ରିଚୟେ।

ସୂକ୍ଷ୍ମଠାରୁ ସ୍ଥୂଳ, ଆଉ ତାହାଠାରୁ ସ୍ଥୂଳ
ଏହି କ୍ରମେ ଜାଣ ସୃଷ୍ଟି ରଚନା ଅତୁଳ।

ଆମେ ସବୁ ସ୍ଥୂଳ ସାଥେ ସଦା ପରିଚିତ
ସୂକ୍ଷ୍ମ ପଥେ ଗଲେ ହେବେ ପୁରୁଷ ବିଦିତ।
ପୁରୁଷଙ୍କ ଠାରୁ ସୂକ୍ଷ୍ମ ଆଉ କିଛି ନାହିଁ
ପୁରୁଷେ ମିଳିଲେ ଦ୍ୱୈତ ଭାବନା ନଥାଇ।

ଲୁଚକାଳି ଖେଳ କଥା ପକାଅ ରେ ମନେ
ଧରା ପଡ଼ିଗଲେ ଖେଳ ଭାଙ୍ଗଇ ତକ୍ଷଣେ।
ଧରା ନ ପଡ଼ିବା ଯାଏଁ ଏ ଖେଳ ଚାଲଇ
ଭବଲୀଳା ରୂପ ଖେଳ ତେସନେ ଅଟଇ।
ଲୁଚିଥିବା ଲୋକଟିକୁ ନ ଧରିବା ଯାଏ
ମଣିଷର ଭବଲୀଳା ଖେଳା ଚାଲିଥାଏ।

ସବୁ ବିଶେଷର ଯହିଁ ହୁଏ ଅବଶେଷ
ଆଉ କାହିଁ ଯିବା ଲୋଡ଼ା ନ ହୁଅଇ ଲେଶ;
ସେହି ଲକ୍ଷ୍ୟ ସେ ପରମଧାମ ଏ ଜୀବର
ତହିଁ ଯାଇ କିଏ ଆଉ ନ ଫେରେ ଆବର।

ଭିନ୍ନ ରୂପ ନାମ ଧରି ଯେତେ ନଦନଦୀ
ବହିଚାଲେ ଭେଟିବାକୁ ଲବଣ ଜଳଧି।
ସେ ସବୁ ଯେସନେ ରୂପ ସ୍ୱନାମ ହରାଇ
ସେ ମହାଗରଭୁଁ ଆଉ ବାହୁଡ଼ନ୍ତି ନାହିଁ।

ସାଗରର ଗଭୀରତା ମାପିବାକୁ ଯାଇ
ଲୁଣର କଣ୍ଢେଇ ଯେହ୍ନେ ଆଉ ଫେରେ ନାହିଁ,

Digitized by srujanika@gmail.com

ପୁରୁଷ ସହିତେ ଜୀବ ତେହ୍ନେ ହୋଇ ଯୁକ୍ତ
ଆଉ ନ ଫେରଇ, ହୁଏ ଭବ-ବନ୍ଧୁ ମୁକ୍ତ ॥"

## ଆତ୍ମାଙ୍କୁ କିଏ ଦେଖନ୍ତି

**ଏଷ ସର୍ବେଷୁ ଭୂତେଷୁ ଗୂଢ଼ୋଽତ୍ମା ନ ପ୍ରକାଶତେ ।**
**ଦୃଶ୍ୟତେ ତ୍ୱଗ୍ର୍ୟୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ ॥ ୧୨ ॥**

ଆତ୍ମା ଥାଏ ଛପି କରି ସକଳ ଭୂତରେ
ତଥାପି ପ୍ରକାଶ ନୁହେ ସେ କାହା ପାଖରେ ।
କେବଳ ଯେ ସୂକ୍ଷ୍ମଦର୍ଶୀ ଆଚାର୍ଯ୍ୟ ଅଟନ୍ତି
ତାଙ୍କରି ଏକାଗ୍ର ସୂକ୍ଷ୍ମ ବୁଦ୍ଧିରେ ଦିଶନ୍ତି । ୧୨ ।

"ଏହି ଯେ 'ପୁରୁଷ' ତୋତେ କହିଲି ନନ୍ଦନ,
ସେହି ଆତ୍ମା ବୋଲି ସଦା ରଖିବୁ ସ୍ମରଣ ।
ଏ ଜଗତ-ପୁରେ ଦେହ ରୂପକ ନବରେ
ଛପି ରହିଛନ୍ତି ସେହି ଅଦୃଶ୍ୟ ରୂପରେ ।
ଜଗତ ଠୁଁ ଭିନ୍ନ ସେ ତ ଜଗତ କାରଣ
ଦେହେ ରହି ସେ ଦେହଠୁଁ ପୃଥକ ତେସନ ।
ସେ ଅନ୍ତରେ ସେ ଅନ୍ତର ବାହାରେ ଥାଆନ୍ତି
କିନ୍ତୁ କେହି ହେଲେ ତାଙ୍କ ଦେଖା ନ ପାଆନ୍ତି ।

ହୋଇଲେ ବି ଏହି ଆତ୍ମା ଜଗତ କାରଣ
ସେ ନୁହନ୍ତି ଆମ ଠାରୁ ଭିନ୍ନ କଦାଚନ ।
ଆମ ଠାରୁ ସେହି କେବେ ଦୂରେ ନ ରହନ୍ତି
ସିଏ ମଧ୍ୟ ଆମ ବାହ୍ୟ ପଦାର୍ଥ ନୁହନ୍ତି ।
ସେ ଆମ ସ୍ୱରୂପ, ନିତ୍ୟ ଶୁଦ୍ଧ ବୁଦ୍ଧ ସତ୍ୟ
ଯେଉଁ ଜ୍ଞାନ ପାଇଁ ବାବୁ ତୁହିଁ ଦୃଢ଼ ବ୍ରତ ।

ଯେ ପରମ ତତ୍ତ୍ୱ ଆତ୍ମା ଅଟନ୍ତି ଆମର,
ସେ ଆମ ଅଜଣା ସଦା ଆମ ଅଗୋଚର ।
ସେ ଆମ ଭିତରେ ଆମ ବାହାରେ ଜଡ଼ିତ
ସେ ଆମ ସ୍ୱରୂପେ ଆମେ ନୋହୁ ପରିଚିତ ।

Digitized by srujanika@gmail.com

ବ୍ରହ୍ମ ତୃଣ କୀଟ ଯାଏଁ ହୋଇ ଆଚ୍ଛାଦିତ,
କେସନେ ଆମକୁ ଆତ୍ମା ନୁହନ୍ତି ବିଦିତ ?
ଅବିଦ୍ୟା ଅଜ୍ଞାନ ଯୋଗୁଁ ସେହି ଗୂଢ଼ତତ୍ତ୍ୱ
ରହନ୍ତି ସଭିଙ୍କ ପାଶେ ସର୍ବଦା ଗୁପତ ।

ଅବିଦ୍ୟା ମୋହରେ ଯେହ୍ନେ ପାଳ ଦଉଡ଼ିରେ,
ସର୍ପର ସ୍ୱରୂପ ଦେଖୁଁ ଅନ୍ଧାର ରାତିରେ,

ଦଉଡ଼ି ପ୍ରକୃତ ରୂପ ରହେ ଆଚ୍ଛାଦିତ,
ଅଶୁଦ୍ଧ ବୁଦ୍ଧିରେ ତେହ୍ନେ ଏ ଜୀବ କିଞ୍ଚିତ
ଅନ୍ତରେ ନିହିତ ଥିବା ଆତ୍ମାଙ୍କୁ ନିଜର
ଦେଖିବାକୁ ଅସମର୍ଥ ହୁଏ ରେ କୁମର ।

ମାତ୍ରକ ଏକାଗ୍ର ତୀକ୍ଷ୍ଣ ବୁଦ୍ଧି ସାହାଯ୍ୟରେ,
ସେ ଜଣା ପଡ଼ନ୍ତି, ଆତ୍ମତତ୍ତ୍ୱଦର୍ଶୀ ନରେ ।
କଅଣ ଏ 'ବୁଦ୍ଧି' ପୁତ୍ର କହୁଚି ଟିକିଏ
ଯାହାଦ୍ୱାରା ହୋଇଥାଏ ବୋଧ, 'ବୁଦ୍ଧି' ସିଏ ।
ସେ ତ ଅନୁମାନ ଗମ୍ୟ କେ ତାକୁ ଦେଖେନା,
କୌଣସି ଇନ୍ଦ୍ରିୟେ ଯେହ୍ନେ ଇନ୍ଦ୍ରିୟ ଦିଶେନା ।
ଏ ଆତ୍ମାଙ୍କୁ ବୁଦ୍ଧି ଦ୍ୱାରା କରିବା ଧାରଣା
ସାଧାରଣ ଲୋକ ପକ୍ଷେ ଅତି ବିଡ଼ମ୍ବନା ।
ଆତ୍ମତତ୍ତ୍ୱଦର୍ଶୀ ଜନେ ବାବୁରେ କେବଳ
ସୂକ୍ଷ୍ମ ବୁଦ୍ଧି ବଳେ ଦେଖା ପାଆନ୍ତି ତାଙ୍କର ।
ଯେ ବୁଦ୍ଧି ନୁହଇ ରାଗ ଦ୍ୱେଷାଦି ଆଚ୍ଛନ୍ନ
ତାହା ଶୁଦ୍ଧ ବୁଦ୍ଧି ବୋଲି ଜାଣିବୁ ନନ୍ଦନ ।"

ଲୟ ଚିନ୍ତନ

**ଯଚ୍ଛେଦ୍ ବାଙ୍ମନସୀ ପ୍ରାଜ୍ଞସ୍ତଦ୍ ଯଚ୍ଛେଜ୍ଜ୍ଞାନ ଆତ୍ମନି ।**
**ଜ୍ଞାନମାତ୍ମନି ମହତି ନିୟଚ୍ଛେତ୍ତଦ୍ୟଚ୍ଛେଚ୍ଛାନ୍ତ ଆତ୍ମନି ॥୧୩॥**

Digitized by srujanika@gmail.com

"ସାଧନାରେ ମୋକ୍ଷ ଅଭିଳାଷୀ ଜ୍ଞାନୀ ନରେ,
କରିବେ ନିରୁଦ୍ଧ ବାକ୍ ଇନ୍ଦ୍ରିୟ ମନରେ।
ସେ ମନକୁ ନେଇ ଲୟ କରିବେ ବୁଦ୍ଧିରେ
ଜ୍ଞାନ-ରୂପ-ଆତ୍ମା ଯାହା କଥିତ ଶରୀରେ।
ସେ ବୁଦ୍ଧିକୁ ନେଇ ପୁଣି ମହତ ତତ୍ତ୍ୱରେ
ପରେ କରାଇବେ ଲୟ ଅତି ଯତନରେ।
ମହତ୍ ତତ୍ତ୍ୱକୁ ପରେ ଶାନ୍ତ ଆତ୍ମା ପରେ
ସ୍ଥିର କରାଇବେ ବାବୁ ଏ ସାଧକ ନରେ।"

"ବାବୁରେ ସାଧନ ବିଧି ଶୁଣ ଭଲ କରି
ଜାଣିଲେ ସହଜ ହେବ ସାଧନା ତୋହରି।
ସରୁ ଛୁଞ୍ଚିରେ ସୂତା ଗଳାଇବା ପାଇଁ
ସୂତାର ଅଗକୁ ଯେହ୍ନେ ବୋଳା ଯାଇଥାଇ,
ତେହ୍ନେ ଆତ୍ମ ଉପଲବ୍ଧି କରିବା ନିମିତ୍ତ
ମନକୁ ଏକାଗ୍ର ସୂକ୍ଷ୍ମ କରିବା ଉଚିତ।
ତେଣୁ ମୋକ୍ଷ ଅଭିଳାଷୀ ବିବେକୀ ସୁଜନେ
ରୋଧିଥାନ୍ତି ବାଗିନ୍ଦ୍ରିୟ ବୃତ୍ତି ସବୁ ମନେ।

ବାକ୍ୟ ଯେଣୁ ଏ ମନର ସ୍ଥୂଳ ଅଭିବ୍ୟକ୍ତି,
ସ୍ଥୂଳକୁ ସୂକ୍ଷ୍ମରେ ତେଣୁ ବିଲୀନ କରନ୍ତି।
ସ୍ୱଭାବେ ଯେ ବହିର୍ମୁଖ ଏ ଜୀବ ଶରୀରେ,
ସେହି ସେ ସକଳ ସ୍ଥୂଳ ଇନ୍ଦ୍ରିୟ ବୃତ୍ତିରେ,
ସୁଦୃଢ଼େ ନିରୋଧି ମନେ କରନ୍ତି ସ୍ଥାପନ
କେବଳ ରହଇ ମାତ୍ର ମନର ଚଳନ।

ମନର ସ୍ୱଭାବ ଯାହା କିଏ ନ ଜାଣଇ,
ନାନା କାମ କାମନାରେ ସଦା ଚହଲଇ।
ଚଞ୍ଚଳ ଇନ୍ଦ୍ରିୟ କ୍ରିୟା ନିରୋଧି ମନରେ
ଥାପିବ ସେ ମନ ନେଇ ସ୍ଥିର ବୁଦ୍ଧି ପରେ।
ନାମ ରୂପ ଅନ୍ତରାଳେ ଯେ ସତ୍ୟ ନିହିତ,
ଏ ବୁଦ୍ଧି ତାହାକୁ ବୁଝି ପାରେନା କିଞ୍ଚିତ।
ତେଣୁ ଏ ବୁଦ୍ଧିକୁ ପୁଣି ମହତ ତତ୍ତ୍ୱରେ
କରିବ ଯତନେ ଲୟ ଏ ଯୋଗ ପଥରେ।

Digitized by srujanika@gmail.com

ମହତ ତତ୍ତ୍ୱରୁ ଯେଣୁ ବୁଦ୍ଧି ଜନମଇ,
ତେଣୁ ବୁଦ୍ଧି ଏହି ତତ୍ତ୍ୱେ ବିଲୀନ ହୁଅଇ ।
ମହତ ତତ୍ତ୍ୱକୁ ଶେଷେ ପରମାତ୍ମା ଠାରେ
ଲୀନ କରିଥାନ୍ତି ସାଧୁ ସାଧକେ ନିଷ୍ଠାରେ ।

ଏ ମନ୍ତ୍ର ତାତ୍ପର୍ଯ୍ୟ ବାବୁ ବୁଝ ଭଲ କରି
କାର୍ଯ୍ୟ କାରଣରେ ଲୟ ହେଉଛି କିପରି ।
ପ୍ରଥମରେ ଯିଏ ଯେଉଁଠାରୁ ଆସିଥିବ
ଅନୁଲୋମ ପ୍ରକ୍ରିୟାରେ ସେ ତହିଁ ଫେରିବ ।
ମନ ତୁଳନାରେ ବାକ୍ୟ ଅଟଇ ତ ସ୍ଥୂଳ
ବାକ୍ୟ ସୂକ୍ଷ୍ମ ଉପାଦାନ ମନ ମଧ୍ୟ ମୂଳ ।
ବାକ୍ୟକୁ ମନରେ ଲୟ ମନକୁ ଜ୍ଞାନରେ
ଏହି କ୍ରମେ ଗଲେ ହେବ ଆତ୍ମା ନିକଟରେ ।

ଯେହ୍ନେ ବସା ଦହି ମଧ୍ୟେ ଥାଏ ଦୁଧ ସତ୍ତା,
ଘୋଳ ମଧ୍ୟେ ଥାଏ ଖଣ୍ଡ ଦହିର ଅବସ୍ଥା,
ଘୋଳରେ ନହୁଣୀ ଥାଏ, ନହୁଣୀରେ ଘିଅ,
ଏହି କ୍ରମେ ଉପରକୁ ମନଟିକୁ ନିଅ ।

ବାକ୍ୟ ଅନ୍ତର୍ଗତ ମନ, ମନେ ବୁଦ୍ଧି ସ୍ଥିତ
ବୁଦ୍ଧିରେ ନିହିତ ମହତତ୍ତ୍ୱ ସୁବିଦିତ ।
ମହତ୍ ତତ୍ତ୍ୱର ଅନ୍ତର୍ନିହିତ ଯେ ଆତ୍ମା
ସେ ସଦା ଅବ୍ୟକ୍ତ ସୂକ୍ଷ୍ମତମ ପରମାତ୍ମା ।
ଏହି ଅବସ୍ଥାଟି ବାବୁ 'ପୁରୁଷ' ବୋଲାଏ
ଏହାପରେ ଆଉ କେଉଁ ଅବସ୍ଥା ନଥାଏ ।

ଉଦ୍‌ବୋଧନ

**ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ**
**କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା**
**ଦୁର୍ଗଂ ପଥସ୍ତତ୍ କବୟୋ ବଦନ୍ତି ॥ ୧୪ ॥**

Digitized by srujanika@gmail.com

ଉଠ ଜାଗ ନଚିକେତା ତେଜି ମୋହ ନିଦ୍ରା
ଆଚାର୍ଯ୍ୟଙ୍କ ପାଶେ ଯାଇ ଜାଣ ଆତ୍ମବିଦ୍ୟା ।
ତୀକ୍ଷ୍ଣ କ୍ଷୁର ଧାର ଯେହ୍ନେ ସୁଦୁସ୍ତର ଅତି
ସେ ପଥ ଦୁର୍ଗମ ତେହ୍ନେ କବିଏ କହନ୍ତି ॥ ୧୪ ॥

କଠ ଉପନିଷଦର ଏହି ମନ୍ତ୍ର ଗୋଟି
ଲାଭ କରି ପାରିଅଛି ଅତି ଉଚ୍ଚକୋଟୀ ।
ସଂସାରେ ହତାଶ ଅବସାଦ ଗ୍ରସ୍ତଜନେ
ଯେ ଦେଖନ୍ତି ନାହିଁ ମୁକ୍ତି ସପନ ଜୀବନେ,
ତାହାଙ୍କୁ ଦେଖାଇ ମୁକ୍ତି-ଆଶାର ଆଲୋକ
ସୁଗମ୍ଭୀର ଧର୍ମଡାକ ଦିଏ ଏହି ଶ୍ଳୋକ ।
ନଚିକେତାକୁ ଏମନ୍ତେ କରି ଉପଲକ୍ଷ୍ୟ
ବିଶ୍ୱଜନେ ଦେଲେ ଯମରାଜ ମୁକ୍ତିପଥ ।

"ତେଜି ମୋହ ନିଦ୍ରା ଜାଗ ଉଠରେ ସନ୍ତାନ,
ଚାହିଁ ଦେଖ, ପଡ଼ିଅଛି ମୁକ୍ତିର ସୋପାନ ।
ଋଷି ପ୍ରଦର୍ଶିତ ସେହି ପଥ ପରେ ଚାଲି
ଦୁସ୍ତର ଦୁର୍ଗମ ଭବାରଣ୍ୟ ହେବୁ ପାରି ।

ଇନ୍ଦ୍ରିୟ ବିଷୟସୁଖେ ହୋଇ ଅଭିଳାଷୀ
ଜୀବନର ନିମ୍ନ ସ୍ତରେ ପଡ଼ିଅଛୁ ଆସି ।
ଏବେ ଉଠି ଆତ୍ମଜ୍ଞାନ ଲାଭେ ହୁଅ ରତ
ବାଛି ନିଅ ନିଜ ପାଇଁ ମହା ସତ୍ୟ ପଥ ।
ଅଜ୍ଞାନ ତମସା ମୋହ କରି ପରିତ୍ୟାଗ
ଅମୃତ ସନ୍ତାନ ଆରେ ଏବେ ଉଠ, ଜାଗ ।
ଏ ମୋହ ନିଦ୍ରାରୁ କିନ୍ତୁ ଉଠିବୁ କିପରି
ଆତ୍ମଜ୍ଞାନ ପଥ କେହ୍ନେ ପାରବୁ ବା ଧରି,
ସେଥିପାଇଁ ଯାଇ ଯୋଗ୍ୟ ଜ୍ଞାନୀ ଗୁରୁ ପାଶେ
ଜ୍ଞାନ ଲାଭ କର ମୋହ କଟିବା ସକାଶେ ।

ଚାଲିବା ଦୁସ୍ତର ଯେହ୍ନେ ତୀକ୍ଷଣ କ୍ଷୁର ଧାରେ,
ଦୁର୍ଗମ ସେପରି ଆତ୍ମଜ୍ଞାନ ଏ ସଂସାରେ ।
ତତ୍ତ୍ୱଜ୍ଞାନାର୍ଥୀଏ ତେଣୁ ଦୃଢ଼ତା ସହିତ
ସାବଧାନେ ଏ ପଥରେ ଚାଲିବା ଉଚିତ ।

Digitized by srujanika@gmail.com

**ଆତ୍ମ-ମୁକ୍ତି :**

**ଅଶବ୍ଦମସ୍ପର୍ଶମରୂପମବ୍ୟୟଂ**
**ତଥାଽରସଂ ନିତ୍ୟମଗନ୍ଧବଚ୍ଚ ଯତ୍ ।**
**ଅନାଦ୍ୟନନ୍ତଂ ମହତଃ ପରଂ ଧ୍ରୁବଂ**
**ନିଚାଯ୍ୟ ତନ୍ମୃତ୍ୟୁମୁଖାତ୍ ପ୍ରମୁଚ୍ୟତେ ।। ୧୫ ।।**

ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ବିବର୍ଜିତ
ଆଦି ହୀନ ଅନ୍ତହୀନ ଅବ୍ୟୟ ଓ ନିତ୍ୟ,
ମହତ ତତ୍ତ୍ୱରୁ ପୁଣି ଶ୍ରେଷ୍ଠ ଯେ ଅଟନ୍ତି,
ସେ ନିଶ୍ଚଳ ଆତ୍ମ-ତତ୍ତ୍ୱ ହୃଦେ ଯେ ଜାଣନ୍ତି
ଜନମ ମରଣ ରୂପ ସଂସାର ଚକ୍ରରେ
ନ ପଡ଼ି ମୁକତି ଲାଭ କରନ୍ତି ସତ୍ୱରେ । ୧୫ ।

"ଆରେ ପୁତ୍ର ନଚିକେତା ତୋର ହିତ ପାଇଁ,
ଆତ୍ମାଙ୍କ ସ୍ୱରୂପ ତୋତେ କହୁଛି ବୁଝାଇ ।
ଯେ ତତ୍ତ୍ୱ ଜାଣିବା ପାଇଁ ତୋର ଦୃଢ଼ ପଣ
ସେ ଆତ୍ମ-ତତ୍ତ୍ୱର ବୁଝ ସ୍ୱରୂପ କଅଣ ।
ଅତି ଦୁରୁଗମ ଏହି ଆତ୍ମଜ୍ଞାନ ପଥ,
ଭୟରେ ଭାଜନ୍ତି ବାବୁ କେତେ ସାଧୁ ସନ୍ଥ ।
ପ୍ରଥମେ ନିଷେଧ-ମୁଖେ ସେ ଆତ୍ମାଙ୍କ ବ୍ୟାଖ୍ୟା
କରାଯାଇଅଛି ଯାର ନାହିଁ କିଛି ଆଖ୍ୟା ।
ଆତ୍ମାଙ୍କ ଠିଁ ନାହିଁ ଯେଣୁ କିଛି ଭୂତ ଗୁଣ
ତେଣୁ ସେହି ନିରାକାର ଅଲେଖ ନିର୍ଗୁଣ ।
ପଞ୍ଚଭୂତଙ୍କର ପଞ୍ଚଗୁଣ ନାହିଁ ତିଳେ
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ଯା'-ତହିଁରେ ।

ପଞ୍ଚଭୂତେ ଗଢ଼ା ସବୁ ଭୌତିକ ଦରବ,
ଆମେ ଆମ ଇନ୍ଦ୍ରିୟରେ କରୁ ଅନୁଭବ ।
ମନ ବୁଦ୍ଧି ଇନ୍ଦ୍ରିୟରେ ସାଧାରଣ ଜନ
ଗୁଣଯୁକ୍ତ, ବସ୍ତୁ ଜ୍ଞାନ କରନ୍ତି ଗ୍ରହଣ ।

Digitized by srujanika@gmail.com

ଆତ୍ମାଙ୍କର ନାହିଁ ରୂପ ରସ ଆଦି ଗୁଣ
ସର୍ବ ଗୁଣାତୀତ ସେହି ପୁରୁଷ ନିର୍ଗୁଣ ।
ଅନାଦି ଅନନ୍ତ ଶୁଦ୍ଧ ଅତି ସୂକ୍ଷ୍ମ ଯେଣୁ
ଇନ୍ଦ୍ରିୟେ ଗୋଚର ସେହି ନ ହୁଅନ୍ତି ତେଣୁ ।

ଏ ଭୌତିକ ଜଗତକୁ ଆମରି ଇନ୍ଦ୍ରିୟେ,
ଗ୍ରହଣ କରନ୍ତି ସିନା କିନ୍ତୁ କହ କିଏ
ଶୁଦ୍ଧ ଚୈତନ୍ୟକୁ ରୂପ ରସ ଗନ୍ଧ ସ୍ପର୍ଶେ
ଜାଣି ପାରିଲାଣି ହୃଦେ ଶତ ଚେଷ୍ଟା ସତ୍ତ୍ୱେ ?
ଜଡ଼ ଜଗତକୁ ବ୍ୟକ୍ତ କରିବା ନିମନ୍ତେ
ଜାଗତିକ ଭାଷା ଲୋଡ଼ା ହୁଅଇ ନିରତେ ।
ଆତ୍ମାଙ୍କୁ ଜାଣିବା ପାଇଁ କିନ୍ତୁ ଏହି ଭାଷା
ମେଣ୍ଟାଇ ପାରେନା କେବେ ସାଧକର ଆଶା ।
କେବଳ ସମାଧି ଧ୍ୟାନ ଧାରଣାରେ ଜନ,
ଲାଭ କରିପାରେ ଅବା ଆତ୍ମାଙ୍କ ଦର୍ଶନ ।

ପଞ୍ଚ ଜ୍ଞାନେନ୍ଦ୍ରିୟ ପଞ୍ଚ କର୍ମେନ୍ଦ୍ରିୟ ପ୍ରାଣ,
ମିଶି ସୂକ୍ଷ୍ମ ଶରୀରଟି ଗଢ଼ା ବୋଲି ଜାଣ ।
ତା'ପଛେ ମହତ ତତ୍ତ୍ୱ ସ୍ୱଭାବେ ରହିଛି
ଯା ଭିତରୁ ଏହି ସ୍ଥୂଳ ତତ୍ତ୍ୱ ଆସିଅଛି ।
ଏ ମହତ୍ ଠାରୁ ଆତ୍ମା ଶ୍ରେଷ୍ଠରେ ନନ୍ଦନ
ଏହି କ୍ରମେ ତାଙ୍କୁ ଜାଣିଥାନ୍ତି ଯୋଗୀଜନ ।
ରୂପ ଅବୟବ ଯେଣୁ ନ ଅଛି ତାଙ୍କରି
ଏଥିରେ ତାଙ୍କର ହେବ ବିନାଶ କିପରି ?

ସକଳ ଇନ୍ଦ୍ରିୟ ଗୁଣୁ ଯେଣୁ ସେ ଅତୀତ
ଧ୍ରୁବ ବୋଲି ତେଣୁ ସିଏ ହୁଅନ୍ତି କଥିତ ।
ତାହାଙ୍କୁ ପାରିଲେ ଜାଣି ହେ ଋଷି କୁମାର
ମଣିଷ ମରଣ ମୁଖୁଁ ହୁଅଇ ଉଦ୍ଧାର ।

ସାକ୍ଷୀ ପକ୍ଷୀ ପରି ବାବୁ ତୁମରି ସ୍ୱରୂପ
ଭୋକ୍ତା ପକ୍ଷୀ ପରି ତାକୁ ଭ୍ରମରେ ଭାବୁଛ ।
କର୍ତ୍ତାଭୋକ୍ତା ବୋଲି ଭାବୁଥିବାରୁ ମନରେ
ଅକଳନ୍ତି ଦୁଃଖ ଶୋକ ଜୀବନେ ନ ସରେ ।

Digitized by srujanika@gmail.com

ଅନିତ୍ୟ ଅସୁଖୀ ଭାବି ନିଜକୁ ଜୀବନେ
ନିଜ ଅମୃତତ୍ୱ ଦଶା ପାଶୋରେ ତତ୍‌କ୍ଷଣେ ।
କେତେ ଅକଲ୍ୟାଣକର ଏପରି ଭାବନା
କେତେ ଦୁଃଖ ଭବାରଣ୍ୟେ ହେଲେ ବାଟବଣା ।

ଅମର ହେବାକୁ ଆମେ ଚାହୁଁ ଅବିରତ,
କିନ୍ତୁ ଖୋଜିନାହୁଁ କାହିଁ ସେ ଅମୃତ ପଥ ।
ମୃତ୍ୟୁ ମୁଖୁଁ ମିଳେ ମୁକ୍ତି ଆତ୍ମାକୁ ଜାଣିଲେ
ନ ଅଛି ସଂଶୟ କିଛି ଜାଣିବୁ ଏଥିରେ ।
ସଂସାର ଦୁଃଖରୁ ଆତ୍ମଜ୍ଞାନୀ ରହି ଦୂରେ
ଲଭନ୍ତି ଆନନ୍ଦାମୃତ ନିଜ ଅନ୍ତଃପୁରେ ।''

**ନାଚିକେତମୁପାଖ୍ୟାନଂ ମୃତ୍ୟୁପ୍ରୋକ୍ତଂ ସନାତନମ୍ ।**
**ଉକ୍ତ୍ୱା ଶ୍ରୁତ୍ୱା ଚ ମେଧାବୀ ବ୍ରହ୍ମଲୋକେ ମହୀୟତେ । ।।୧୬।।**

କଠୋପନିଷଦେ ଯମରାଜନ କଥିତ,
ନଚିକେତା ସମ୍ବନ୍ଧୀୟ ଶାଶ୍ୱତ ଚରିତ,
ବିବେକୀ ପୁରୁଷେ ଶୁଣି ଶୁଣାଇ ଅପରେ
ବ୍ରହ୍ମଲୋକେ ପୂଜନୀୟ ହୁଅନ୍ତି ଶେଷରେ । ୧୬ ।

କଠୋପନିଷଦେ ନଚିକେତା ଉପାଖ୍ୟାନ,
କେତେ ଫଳଦାୟୀ ତାହା ଏ ମନ୍ତ୍ରେ ଆଖ୍ୟାନ ।
ଯମଙ୍କ କଥିତ ଏହି ଶାଶ୍ୱତ କାହାଣୀ
ବିବେକ ବିହୀନ ବ୍ୟକ୍ତି ନ ପାରନ୍ତି ଜାଣି ।
କେବଳ ବିବେକୀ କରି ଶ୍ରବଣ ଶ୍ରାବଣ
ଯଶ ପଉରୁଷ କରି ଥାଆନ୍ତି ଅର୍ଜନ ।
ଯା'ଅଛି ବେଦୋକ୍ତ ତାହା ନିତ୍ୟ ସନାତନ
ଏ କାହାଣୀ ହୁଏ ତେଣୁ ଅମୃତ ଭାଜନ ।
ଏଥି ଯେଉଁ ଆତ୍ମତତ୍ତ୍ୱ ହୋଇଛି କଥିତ
ଅତି ପୁରାକାଳୁ ତାହା ଅଛି ପ୍ରଚଳିତ ।

ସେଥିପାଇଁ କୁହାଯାଇ ଅଛି ସନାତନ,
ଏ ପଥେ ମୁକତିକାମୀ କରନ୍ତି ଗମନ ।

Digitized by srujanika@gmail.com

ଯେ ନିଜେ ଶୁଣନ୍ତି ପୁଣି ଶୁଣାନ୍ତି ଅପରେ
ପୂଜନୀୟ ହୋଇଥାନ୍ତି ସେ ବ୍ରହ୍ମଲୋକରେ ॥

**ଗ୍ରନ୍ଥ-ମହିମା :**

**ଯ ଇମଂ ପରମ ଗୁହ୍ୟଂ ଶ୍ରାବୟେଦ୍ ବ୍ରହ୍ମସଂସଦି ।**
**ପ୍ରୟତଃ ଶ୍ରାଦ୍ଧକାଳେ ବା ତଦାନନ୍ତ୍ୟାୟ କଳ୍ପତେ ।**
**ତଦାନନ୍ତ୍ୟାୟ କଳ୍ପତେ ଇତି ॥ ୧୭॥**

ଏ ଗୁହ୍ୟ ଗ୍ରନ୍ଥକୁ ଯିଏ ଯତ୍ନ ସହକାରେ,
ଶୁଣାଇବ ଶ୍ରାଦ୍ଧକାଳେ ବ୍ରହ୍ମଜ୍ଞ ସଭାରେ,
ହୋଇବ ସେ ଶ୍ରାଦ୍ଧ ତା'ର କୋଟି ଫଳଦାୟୀ
ଏ ଶ୍ରୁତି ବଚନ- ଏଥି ସନ୍ଦେହ ଯେ ନାହିଁ ॥ ୧୭॥

ଯେଉଁ ତତ୍ତ୍ୱ ଏଇ ଉପନିଷଦେ ବର୍ଣ୍ଣିତ
ଅଶେଷ ରହସ୍ୟ ଭରା ଗୂଢ଼ ସୁନିଶ୍ଚିତ ।
ତାହାକୁ ସଂସାର ଲୋକେ ବୁଝିବେ କିପରି
ସେ ତତ୍ତ୍ୱ ଖିଅକୁ କେହ୍ନେ ପାରିବେ ବା ଧରି ?
ତେଣୁ ସମସ୍ତଙ୍କ ଆଗେ ଅବା ସବୁସ୍ଥାନେ
ତା'ର ଆଲୋଚନା ନ କରନ୍ତି ଜ୍ଞାନୀମାନେ ।
କେତେକ ନିର୍ଦ୍ଦିଷ୍ଟ ସ୍ଥାନେ ତାହାରି ବିଚାର
କରିବାକୁ ଶ୍ରୁତି ତେଣୁ କହେ ବାରବାର ।

ଯେଉଁଠି ହୁଅଇ ବ୍ରହ୍ମତତ୍ତ୍ୱ ଆଲୋଚିତ
ଜ୍ଞାନୀଙ୍କ ବିଚାରେ 'ବ୍ରହ୍ମ-ସଂସଦି' ସେହି ତ ।
'ବ୍ରହ୍ମ ସଂସଦି'ରେ ପୁଣି ଶ୍ରାଦ୍ଧ ଅବସରେ
ଶୁଣିବ ବା ଶୁଣାଇବ ଏ ତତ୍ତ୍ୱ ଆଦରେ ।
ଶ୍ରାଦ୍ଧେ କରାଯାଏ ପ୍ରେତଆତ୍ମାଙ୍କ ତର୍ପଣ,
ତେଣୁ ଏ ତତ୍ତ୍ୱର ତହିଁ ଥାଏ ପ୍ରୟୋଜନ ।
ଯେଣୁ ଏ ଜୀବର ପରଲୋକ ଗତି କଥା
ପୁଣି ଆତ୍ମାଙ୍କର ଯେତେ ଯେତେ ସ୍ୱରୂପତା,
ବର୍ଣ୍ଣିତ ଏ ଗ୍ରନ୍ଥେ ତେଣୁ ଶ୍ରାଦ୍ଧ ଅବସରେ
ପାଠକେ ପଢ଼ିବେ ଏହା ଆନନ୍ଦ ମନରେ ।

Digitized by srujanika@gmail.com

# ଦ୍ୱିତୀୟ ଅଧ୍ୟାୟ

## ପ୍ରଥମ ବଲ୍ଲୀ

**ଆତ୍ମ ଦର୍ଶନର ବିଘ୍ନ :**

**ପରାଞ୍ଚି ଖାନି ବ୍ୟତୃଣତ୍ ସ୍ୱୟମ୍ଭୂ-**
**ସ୍ତସ୍ମାତ୍ ପରାଙ୍ପଶ୍ୟତି ନାନ୍ତରାତ୍ମନ୍ ।**
**କଶ୍ଚିଦ୍ ଧୀରଃ ପ୍ରତ୍ୟଗାତ୍ମାନମୈକ୍ଷଦ୍**
**ଆବୃତ୍ତ ଚକ୍ଷୁଃ ଅମୃତତ୍ୱମିଚ୍ଛନ୍ ।। ୧ ।।**

ବହିର୍ମୁଖ କରି ଜୀବ ଇନ୍ଦ୍ରିୟ ନିକର,
ସର୍ଜନା କଲେ ଏ ସୃଷ୍ଟି ସ୍ୱଂୟମ୍ଭୂ ଈଶ୍ୱର ।
ତେଣୁ ଜୀବ ବାହ୍ୟ ବସ୍ତୁ କରଇ ଦର୍ଶନ
ପାରେ ନାହିଁ ଦେଖି ଅନ୍ତରାତ୍ମା କଦାଚନ ।
ଅମୃତତ୍ୱ ପାଇଁ କରି ମନରେ କାମନା
ଇନ୍ଦ୍ରିୟ ନିରୋଧି ଯିଏ କରନ୍ତି ସାଧନା ।
କେବଳ ଏପରି ଜ୍ଞାନବାନ ଧୀର ଜନ
ଆତ୍ମାଙ୍କୁ ହୃଦୟ ସ୍ଥଳେ କରନ୍ତି ଦର୍ଶନ ।। ୧ ।।

"ଆତ୍ମ-ଉପଲବ୍ଧି ପାଇଁ ବାଧା ଥାଏ କାହିଁ
ଜାଣିଲେ ସହଜ ହୁଏ ସାଧନାର ପାଇଁ ।
ମଣିଷର ଜ୍ଞାନ-ରୂପ-ଦୁଆର ସମାନ
ଇନ୍ଦ୍ରିୟ ସକଳେ ଦେହେ ଅବସ୍ଥିତ ଜାଣ ।
ମୁଖ୍ୟ ବାଧା ଜାଣ ବାବୁ ସେ ସବୁ ଇନ୍ଦ୍ରିୟେ
ବିଧାତା ଭିଆଣେ ସଦା ବହିର୍ମୁଖ ଯିଏ ।
ବାହାରକୁ ନିରନ୍ତର ସେମାନଙ୍କ ଗତି
ଅନ୍ତର ଆତ୍ମାଙ୍କୁ ତେଣୁ କେବେ ନ ଦେଖନ୍ତି ।
ବାହାରକୁ ଯେଣୁ ତାଙ୍କ ସ୍ୱାଭାବିକ ଗତି,
ବାହାରୁ ସେ ରୂପ ରସ ଶବ୍ଦାଦି ଘେନନ୍ତି ।

Digitized by srujanika@gmail.com

ବାହ୍ୟ ବିଷୟରୁ ଲଭି ଜଗତର ଜ୍ଞାନ
ନିଜକୁ ମଣିଷ ଭାବେ ଅତି ଜ୍ଞାନବାନ ।
ସକଳ ଇନ୍ଦ୍ରିୟ ଦ୍ୱାର ବାହାରକୁ ଖୋଲା
ବାହ୍ୟ ଜ୍ଞାନେ ତେଣୁ ହୁଏ ଏ ମଣିଷ ଭୋଳା ।
ହୃଦୟ ଦୁଆର ଯେଣୁ କେବେ ଖୋଲେ ନାହିଁ
ହୃଦୟେଶ୍ୱରଙ୍କ ଦେଖା ତେଣୁ ପାଏ ନାହିଁ ।
ଅବିଦିତ ସେ ରହନ୍ତି ଯେ ଅନ୍ତରେ ସ୍ଥିତ
ତେଣୁ ଆତ୍ମଜ୍ଞାନ ତା'ର ନହୁଏ କିଞ୍ଚିତ ।

କେବଳ ଜଗତ ଜ୍ଞାନେ ହୋଇ ବିମୋହିତ
ଅଜ୍ଞାନୀ ନିରତେ ଭାବେ ଆତ୍ମାକୁ ଅଳିକ ।
ଦେହକୁ ବିଚାରି ଆତ୍ମା ସ୍ୱରୂପେ ନିଜର
ଭୋଗେ ଅସୁମାରୀ ଦୁଃଖ ଯାତନା ଏ ନର ।

କିନ୍ତୁ ଯେବେ କେହି ଜ୍ଞାନୀ ସୁବିବେକୀ ଜନ
ଅମୃତତ୍ୱ ଲଭିବାକୁ କରି ଦୃଢ଼ ମନ,
ଏହି ଇନ୍ଦ୍ରିୟଙ୍କ ବାହ୍ୟ ଗତି ବଦଳାଇ
ଅନ୍ତରାଭିମୁଖେ ତାଙ୍କୁ ନିଅନ୍ତି ଫେରାଇ,
ସେ କରି ପାରନ୍ତି ତେବେ ଆତ୍ମ ଦରଶନ
ଯା' ପାଇଁ ଯୋଗୀଏ ବନେ କରନ୍ତି ସାଧନ ।

କଅଣ ସେ 'ଅମୃତତ୍ୱ' ବୁଝରେ କୁମର
ଯାହାକୁ କଳ୍ପିତ ବୋଲି ଭାବେ ମର୍ତ୍ତ୍ୟ ନର ।
'ଅମୃତତ୍ୱ' ବିପରୀତ 'ମୃତ୍ୱ' ବୋଲାଏ,
ସଂସାରେ ପ୍ରତିଟି ଜୀବ ଯାହା ଭୋଗିଥାଏ ।
ଆମର ସ୍ୱରୂପ 'ଆତ୍ମା', ଶରୀର ନୁହଁଇ
ସ୍ୱରୂପକୁ ଭୁଲି ଜୀବ ନିରତେ ମରଇ ।
ଅମୃତ ସ୍ୱରୂପ ଆତ୍ମା, ତହିଁ ମନ ସ୍ଥିତି
'ଅମୃତତ୍ୱ' ବୋଲି କୁହାଯାଇଛି ଏମିତି ।
ମୃତ୍ୟୁ ନୁହେଁ ଦେହ ନାଶ, ତାହାହିଁ କେବଳ
ଆତ୍ମାକୁ ଭୁଲଇ ଜୀବ ଯାହା ନିରନ୍ତର ।

ଇନ୍ଦ୍ରିୟଗଣଙ୍କ ଏହି ବହିର୍ମୁଖ ଗତି,
ଅନ୍ତଃକରଣକୁ ସଦା ଚଞ୍ଚଳ କରନ୍ତି ।
ଯେ ଅନ୍ତଃକରଣ ଶାନ୍ତ ତରଙ୍ଗ ରହିତ
ଆତ୍ମା ସ୍ୱତଃ ତହିଁ ପରେ ହୁଅନ୍ତି ପ୍ରତୀତ ।

Digitized by srujanika@gmail.com

ଯେ ଅନ୍ତଃକରଣ ରୂପ ହ୍ରଦ ଜଳ ପରେ
ରୂପାଦି ବିଷୟ ଟେକା ପଡ଼େ ନିରନ୍ତରେ,
ସେ ପାଇଁ ବିଷୟାକାର ବୃତ୍ତି ରୂପୀ ଢେଉ
ସେ ଅନ୍ତଃକରଣେ ଉଠେ ଶାନ୍ତ ହେଉ ହେଉ ।
ଢେଉ ଭରା ଜଳେ ତଳ ନ ଦିଶେ ଯେପରି
ଆନ୍ଦୋଳିତ ଚିତ୍ତ ତଳେ ଆତ୍ମା ସେହିପରି ।
ସ୍ଥିର ଶାନ୍ତ ଚିତ୍ତେ ଯେଣୁ ଆତ୍ମାଙ୍କ ପ୍ରକାଶ
ତେଣୁ କର 'ବୃତ୍ତିରାଜି ନିରୁଦ୍ଧ' ଅଭ୍ୟାସ ।

ମନର ବିଷୟ ଦିଗେ ଗତିକୁ କେସନେ,
ରୁଦ୍ଧ କରାଯିବ, ତାହା ଚିନ୍ତା କର ମନେ ।
ଆଖିରେ ପଟିକା ବାନ୍ଧି କାନେ ତୁଳା ଦେଇ
ବିଷୟ ନିବୃତ୍ତ କରି ପାରନ୍ତି ନି କେହି ।
ବନ୍ଦ କରିଦେଲେ ମଧ ଇନ୍ଦ୍ରିୟ ଦୁଆର,
ମନେ ଉଠିଥାଏ ସଦା ଆସକ୍ତି ଜୁଆର ।
ବିଷୟ ନିବୃତ୍ତି କେହି ପାରେ କରି ବଳେ
ବାସନା ନିବୃତ୍ତି କିନ୍ତୁ ନୁହେଁ ସହଜରେ ।
ତେଣୁ ସ୍ଥିର ଶାନ୍ତ ହୋଇ ନପାରଇ ଚିତ୍ତ
ସେପାଇଁ ସାଧନାଭ୍ୟାସ କରିବା ଉଚିତ ।

ଥରେ ଅନ୍ତର୍ମୁଖୀ ହେଲେ ଏ ଇନ୍ଦ୍ରିୟଗଣେ
ମଣିଷର ଅନ୍ତର୍ଦୃଷ୍ଟି ଖୋଲଇ ତତକ୍ଷଣେ ।
ତହୁଁ ସେ ଦେଖନ୍ତି ଆତ୍ମ ସ୍ୱରୂପ ଅନ୍ତରେ
ଯୋଗୀଏ ଖୋଜନ୍ତି ତାଙ୍କୁ ସଦା ଏ ପଥରେ ।
ମାତ୍ରକ ଏପରି ଅନ୍ତର୍ଦୃଷ୍ଟି ଯୁକ୍ତ ଜନ
ଏ ସଂସାରେ ଥିଲେ ଥିବେ ମାତ୍ର କେଇଜଣ ।''

## ବିବେକୀ ଓ ଅବିବେକୀ

ପରାଚଃ କାମାନନୁଯନ୍ତି ବାଲା-
ସ୍ତେ ମୃତ୍ୟୋର୍ୟନ୍ତି ବିତତସ୍ୟ ପାଶମ୍ ।
ଅଥ ଧୀରା ଅମୃତତ୍ୱଂ ବିଦିତ୍ୱା
ଧ୍ରୁବମଧ୍ରୁବେଷ୍ୱିହ ନ ପ୍ରାର୍ଥୟନ୍ତେ ॥୨॥

Digitized by srujanika@gmail.com

''ଶୁଣ ନଚିକେତା, ଅଳ୍ପ ବୁଦ୍ଧି ଯୁକ୍ତ ନରେ,
ବାହ୍ୟ ଭୋଗ ପଛେ ଲାଗିଥାନ୍ତି ନିରନ୍ତରେ
ସେମାନେ ମୃତ୍ୟୁର ଚଉଦିଗେ ବିସ୍ତାରିତ-
ଜାଲ ମଧ୍ୟେ ଅନାୟାସେ ହୁଅନ୍ତି ପତିତ।
ବିବେକୀ ପୁରୁଷେ କିନ୍ତୁ ଜାଣନ୍ତି ଏକଥା
ମୃତ୍ୟୁ ଊର୍ଦ୍ଧ୍ୱେ ଅଛି ଏକ ଅମୃତ ଅବସ୍ଥା।
ତେଣୁ ସେହି ଧୀର ଜନେ ଏହି ସଂସାରର
ଅନିତ୍ୟ ଦରବେ କରି ନଥାନ୍ତି ଆଦର ।। ୨ ।।''

''ପୁତ୍ର, ଅବିବେକୀ ମୂଢ଼ ବ୍ୟକ୍ତି ଯେଉଁମାନେ
ନିରତେ ରହନ୍ତି ଭୋଗ ବିଳାସ ଧିଆନେ।
ବାହ୍ୟ ରୂପ ରସାଦିରେ ଚିତ୍ତ ନିମଜ୍ଜାଇ
ବିବେକ ବିଚାର ବୁଦ୍ଧି ଥାଆନ୍ତି ହଜାଇ।
ଅଳପ ଆଗରୁ ତୋତେ କହିଛି କୁମର
ବହିର୍ମୁଖ ସଦା ଏହି ଇନ୍ଦ୍ରିୟ ନିକର।
ମଣିଷ ମନର ଏଇ ସହଜ ସ୍ୱଭାବ
ବାହ୍ୟ ବସ୍ତୁ ସାଥେ ସଦା କରୁଥିବ ଭାବ।
ଇନ୍ଦ୍ରିୟ ସୁଖଦ ବାହ୍ୟ ବିଷୟ ଆଦିରେ
ଏ ଚିତ୍ତ ଲାଖଇ ଯାଇ ସହଜ ରୀତିରେ।

ଅଶାନ୍ତ ହୁଅଇ ତହୁଁ ମନ ପାରାବାର,
ତହିଁ ପରେ ଲୋଟେ ଶତ କାମନା ଜୁଆର।
ଏସବୁ କାମନା ପଛେ ପଛେ ଧାଇଁ ଧାଇଁ,
ଅବିବେକୀ ବ୍ୟକ୍ତି ମର୍ତ୍ତ୍ୟେ ହୋଇଥାନ୍ତି ବାଇ।
ତହୁଁ ନାନା ସୁଖ ଦୁଃଖ ଉପୁଜେ ଜୀବନେ
ବିଚାରନ୍ତି ମୃତ୍ୟୁ ବୋଲି ଏହା ଜ୍ଞାନୀ ଜନେ।
ଚଉବାହୀ ବିଛାଇଛି ମୋ ମୃତ୍ୟୁର ଜାଲ
ଭୋଗେ- ବାଇ ମୂଢ଼େ ତହିଁ ହୁଅନ୍ତି ଶୀକାର।
ଧୀର ଜ୍ଞାନୀ ଜନେ କିନ୍ତୁ ଜାଣନ୍ତି ଏ କଥା
ମୃତ୍ୟୁ ପରପାରେ ଅଛି 'ଅମୃତ' ଅବସ୍ଥା।
ତେଣୁ ସୁବିବେକୀ ଜନେ ଏହି ସଂସାରର
ଅନିତ୍ୟ ଦରବେ କରି ନଥାନ୍ତି ଆଦର।''

Digitized by srujanika@gmail.com

**ଯେନ ରୂପଂ ରସଂ ଗନ୍ଧଂ ଶବ୍ଦାନ୍ ସ୍ପର୍ଶାଂଶ୍ଚ ମୈଥୁନାନ୍**
**ଏତେନୈବ ବିଜାନାତି କିମତ୍ର ପରିଶିଷ୍ୟତେ। ଏତଦ୍ୱୈ ତତ୍ ॥୩॥**

ଯେଉଁ ଆତ୍ମା ଦ୍ୱାରା ଏହି ମଣିଷ ସଂସାରେ,
ରୂପ ରସ ଗନ୍ଧ ଶବ୍ଦ ସ୍ପର୍ଶ ଜାଣିପାରେ,
ଜାଣିପାରେ ଯେତେ ପୁଣି ମୈଥୁନର ସୁଖ,
କହ ତାର ଅବିଜ୍ଞେୟ କିବା ଆଉ ପୁତ୍ର ?
ଯାହାଙ୍କୁ ଜାଣିବା ପାଇଁ ତୁମେ ଥିଲ ଚାହିଁ
ଏହି ସେହି ଆତ୍ମା-ଏଥୁଁ ଭିନ୍ନ କିଛି ନାହିଁ॥ ୩॥

"ଯେଉଁ ଆତ୍ମ-ଚୈତନ୍ୟରେ ଆମେ ଏ ଜଗତେ
ବିଷୟବସ୍ତୁକୁ ଭୋଗ କରୁ ହୃଦଗତେ,
ସେହି ଚୈତନ୍ୟରେ ହୁଏ ବିଷୟର ଜ୍ଞାନ
ହୃଦୟରେ ଏକଥାକୁ ଦୃଢ଼େ କର ଧ୍ୟାନ।
ସକଳ ବସ୍ତୁକୁ ଯିଏ ପ୍ରକାଶ କରନ୍ତି
ବାପରେ ଜାଣିବୁ ନିଶ୍ଚେ ସେ ଆତ୍ମା ଅଟନ୍ତି।
ସେହି ନିତ୍ୟବସ୍ତୁ ଖେଳେ ସକଳ ଘଟରେ,
ସେ ତ ଜ୍ଞାତା; କେ ଜାଣିବ ତାଙ୍କୁ କି ରୂପରେ ?
ନିଜ ସ୍ୱରୂପକୁ ନିଜେ କଲେ ବିଶ୍ଳେଷଣ
ଶେଷେ ଜାଣିହେବ ଅବା ସେ 'ମୁଁ' କଅଣ ?
ଇନ୍ଦ୍ରିୟରେ ଆମେ ଘେନୁ ରୂପ ରସ ଶବ୍ଦ
କିଏ ସେ କରଇ କିନ୍ତୁ ତାର ଅନୁଭବ ?
କାହାର ଏ ଅନୁଭୂତି ? ପଚାରିଲେ କିଏ,
ଆମେ କହୁଁ ଇନ୍ଦ୍ରିୟାଦି, ତା'ର କର୍ତ୍ତା ଯିଏ।
କହୁଁ ଯେହ୍ନେ– 'ଆଖି ଦେଖେ, ଶୁଣିଥାଏ କର୍ଣ୍ଣ,
କିନ୍ତୁ ଅନୁଭବୀ ହେବେ ଇନ୍ଦ୍ରିୟେ କେସନ ?
ସେ ସବୁ ତ ଜଡ଼, ନାହିଁ ଚେତନା ଶକତି,
ଅନୁଭବୀ ତେଣୁ ଏହି ଇନ୍ଦ୍ରିୟେ ନୁହନ୍ତି।

Digitized by srujanika@gmail.com

ଦେହେନ୍ଦ୍ରିୟ ସଂଘାତେ ଯେ ଜାତ 'ଅହଂକାର'
ଅନୁଭବୀ ହେବ କଣ ସେ 'ମୁଁ' ତାହାର ?
କିନ୍ତୁ ଦେହ ଇନ୍ଦ୍ରିୟ ସେ ସବୁ ଅଚେତନ
ତାଙ୍କୁ ଜଣାଯାଏ, ସିଏ ଜାଣିବେ କେସନ ?
ଦେହେନ୍ଦ୍ରିୟେ ସବୁ ପଞ୍ଚଭୂତୁଁ ଉତପନ୍ନ
ଜାଣିବା ଶକତି ତାଙ୍କ ନଥାଏ, ନନ୍ଦନ ।
ଦେହ ଇନ୍ଦ୍ରିୟର ପରେ ଆଉ ଯେ ରହନ୍ତି
ସେହି ଆତ୍ମା, ରୂପ ରସ ଆଦିକୁ ଘେନନ୍ତି ।

ସୂର୍ଯ୍ୟରୁ ଆଲୋକ ଘେନି ଚନ୍ଦ୍ରମା ଯେସନେ,
ଆଲୋକିତ କରେ ସାରା ଜଗତ ଗଗନେ ;
ମନ ବୁଦ୍ଧି ଇନ୍ଦ୍ରିୟାଦି ଦେହେ ବାସ କରି
ଆତ୍ମାଲୋକେ କ୍ରିୟାଶୀଳ ହୁଅନ୍ତି ଏପରି ।
ଦେହ ମନ ବୁଦ୍ଧି ଆଉ ଇନ୍ଦ୍ରିୟ ପଶ୍ଚାତେ
ଏ ଆତ୍ମା ଅଛନ୍ତି ରହି ସଭିଙ୍କ ଅଜ୍ଞାତେ ।
ଚୁମ୍ବକର ଚଉପାଶେ ଲୌହଖଣ୍ଡ ମାନ,
ଚଳମାନ ହୁଏ ଯେହ୍ନେ ତାହାରି ସମାନ ;
ଏହି ମନ ବୁଦ୍ଧି ଆଉ ଇନ୍ଦ୍ରିୟ ନିକରେ
ହୋଇଥାନ୍ତି କ୍ରିୟାଶୀଳ ଆତ୍ମା ସମୀପରେ ।

ଯେତେ ସବୁ କ୍ରିୟା ଚାଲେ ସୃଷ୍ଟିର ଭିତରେ
ସେ ସକଳ ବ୍ରହ୍ମଶକ୍ତି ଜାଣ ପ୍ରକୃତରେ ।
ଯେତେକ ପଦାର୍ଥ ବସ୍ତୁ ବିଶ୍ୱେ ଅଛି ରହି,
ବ୍ରହ୍ମଙ୍କ ପ୍ରକାଶ ରୂପ ସେ ସବୁ ଅଟଇ ।
ବ୍ରହ୍ମଙ୍କୁ ଦେଖିବା ସୃଷ୍ଟି ଭିତରେ ହିଁ ଜାଣ
ବ୍ରହ୍ମଜ୍ଞାନ ଲଭିବାର ପ୍ରଥମ ସୋପାନ ।।''

ସ୍ୱପ୍ନାନ୍ତଂ ଜାଗରିତାନ୍ତଂ ଚୋଭୌ ଯେନାନୁପଶ୍ୟତି ।
ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି ।। ୪ ।।

ଯାହା ସାହାଯ୍ୟରେ ଏହି ମଣିଷ ଜଗତେ,
ଦେଖେ ଦୁଇ ଭିନ୍ନ ବସ୍ତୁ ସ୍ୱପ୍ନେ ଓ ଜାଗ୍ରତେ ;
ସେ ମହାନ ବିଭୁ ରୂପ ଆତ୍ମା ଜାଣି ମନେ
ଶୋକ ନ କରନ୍ତି କେବେ ବୁଦ୍ଧିମାନ ଜନେ ।। ୪ ।।

ମଣିଷର ସାଧାରଣ ସ୍ୱାଭାବିକ କର୍ମେ,
ଆତ୍ମ-ଉପଲବ୍ଧି କେହ୍ନେ ହୋଇବ ସୁଗମେ,
ସେହି କେତେ କଥା ତୋତେ କହୁଚି ରେ ବାପ,
ଜାଣିଲେ କାଟିବୁ ସିନା ଭବ ଭୟ ତାପ ।
ଦୈନନ୍ଦିନ ଚଳଣିରେ ଏ ତତ୍ତ୍ୱ ବିଷୟ
ଯଦି ଅବିରତେ କେହି କରିପାରେ ଲୟ
ତେବେ ଅନାୟାସେ କଟେ ତାର ଭବ-ଭୟ
ନିଶ୍ଚିତରେ ଲଭଇ ସେ ପରମ ଅଭୟ ।
ଚୈତନ୍ୟ ସ୍ୱରୂପ ଆତ୍ମା ଆମ ଏ ଅନ୍ତରେ
ଗୋପନରେ ବିରାଜିତ ରହି ନିରନ୍ତରେ,
ଅନୁଭବ କରାନ୍ତି ଏ ଅଖିଳ ଜଗତ
ପଞ୍ଚ ଜ୍ଞାନେନ୍ଦ୍ରିୟେ ଯେବେ ଥାଆନ୍ତି ଜାଗ୍ରତ ।

ସେହିପରି ଶୋଇପଡ଼େ ଏ ମଣିଷ ଯେବେ,
ସକଳ ଇନ୍ଦ୍ରିୟେ ଶୋଇ ପଡ଼ିଥାନ୍ତି ତେବେ ।
ସେତେବେଳେ ଯେ ଦିଅନ୍ତି ସ୍ୱପ୍ନେ ବସ୍ତୁ ଜ୍ଞାନ
ସେହି ଆତ୍ମା ଜାଣି ରଖ, ସେ ବିଭୁ ମହାନ ।
ନିଦ୍ରାରେ ଇନ୍ଦ୍ରିୟଗଣେ ହେଲେ ବି ନିଷ୍କ୍ରିୟ
ମନ କିନ୍ତୁ ସେତେବେଳେ ରହଇ ସକ୍ରିୟ ।
ମନ ଅନୁଭୂତ ଅତୀତର ଦୃଶ୍ୟାବଳୀ
ସ୍ୱପ୍ନେ ଦୃଷ୍ଟ ହୋଇ ଲାଗୁଥାଏ ସତ ଭଳି ।

ସ୍ୱପ୍ନେ ବା ଜାଗ୍ରତେ ହୁଏ ଯେ ଜ୍ଞାନ ଅର୍ଜନ
ସେ ସବୁର ଜ୍ଞାତା ମନ ନୁହେଁ କଦାଚନ ।
ଇନ୍ଦ୍ରିୟଙ୍କ ପରି ଏଇ ମନ ଅଚେତନ
ଜଡ଼ ଅଚେତନ ଜ୍ଞାତା ହୋଇବ କେସନ ?
ଦେହେନ୍ଦ୍ରିୟ ମନ ଆଉ ବୁଦ୍ଧି ସହିତରେ
ଅଜ୍ଞାନୀ ପୁରୁଷ ମିଥ୍ୟା ତଦାକାର କରେ ।

Digitized by srujanika@gmail.com

ସବୁ କାର୍ଯ୍ୟ କାରଣର କର୍ତ୍ତା ଯେ ସୃଷ୍ଟିରେ,
ସାକ୍ଷୀ ସ୍ୱରୂପେ ଯେ ସ୍ଥିତ ସକଳ ଶରୀରେ,
ସେ ଆତ୍ମାଙ୍କୁ ଜାଣିପାରି ସ୍ୱରୂପରେ ଧୀରେ
କେତେବେଳେ ନ କରନ୍ତି ଶୋକ କେଉଁଥିରେ ।"

**ଯ ଇମଂ ମଧ୍ୱଦଂ ବେଦ**
**ଆତ୍ମାନଂ ଜୀବମନ୍ତିକାତ୍ ।**
**ଈଶାନଂ ଭୂତଭବ୍ୟସ୍ୟ ନ ତତୋ**
**ବିଜୁଗୁପ୍ସତେ ଏତଦ୍ ବୈ ତତ୍ ॥୫॥**

ଫଳ ଭୋଜୀ ମଧୁଭୋଜୀ ଜୀବାତ୍ମା ରୂପରେ,
ଆତ୍ମାଙ୍କୁ ଜାଣନ୍ତି ଯେଉଁ ପୁରୁଷ ଅନ୍ତରେ ;
ପୁଣି ଯେ ଜାଣନ୍ତି ତାଙ୍କୁ ଅତି ନିକଟର,
ଭୂତ ଆଉ ଭବିଷ୍ୟତ କାଳ ଅଧୀଶ୍ୱର ;
ନିର୍ଭୟରେ ସେହି ଜନେ ନିଜକୁ ଗୋପନେ
ରଖିବାକୁ କରନ୍ତିନି ମନ କଦାଚନେ ।
ଏହି ସେହି ଆତ୍ମା ବୋଲି ଜାଣରେ ନନ୍ଦନ
ଯାହା ଜାଣିବାକୁ ତୁହିଁ କରିଅଛୁ ମନ ।୫।

"ସନାତନ ଏ ଆତ୍ମାଙ୍କୁ ଜାଣନ୍ତି ଯେ ଜନ,
ସେହି ତ କରନ୍ତି ନାହିଁ ଭୟ କଦାଚନ ।
ନିଜ ଦେହ ପ୍ରତି କେହି ରଖିଲେ ଆସକ୍ତି
ଉପୁଜଇ ହୃଦୟରେ ରାଗ ଭୟ ଅତି ।
ଏ ଦେହକୁ ଆତ୍ମା ବୋଲି ବିଚାରିଲେ ମନେ,
ଜାତ ହୋଇଥାଏ ଭୟ ହୃଦେ ସଂଗୋପନେ ।

ନିଜକୁ ନ ଭାବେ ଯିଏ ନିତ୍ୟ ସନାତନ
ଦେହ ରଖିବାକୁ ସିଏ କରଇ ଯତନ ।
ଆତ୍ମ-ଉପଲବ୍ଧି ମଧ୍ୟେ ଜାଣଇ ଯେ ଜନ,
ଆତ୍ମା ଏକ ଅଦ୍ୱିତୀୟ ନିତ୍ୟ ସନାତନ,
ତେବେ ସେ ଏହାକୁ କାହାଠାରୁ ବା କାହିଁକି ?
ଦୂରେ ରଖିବାକୁ ଯତ୍ନ କରିବ ତହିଁକି ?

Digitized by srujanika@gmail.com

ସେହି ତ ଦେଖନ୍ତି ଏଇ ଆତ୍ମାଙ୍କୁ ସବୁଠି,
ନରହେ ଶରୀର ଚିନ୍ତା ସେ ମନେ କେଉଁଠି।
ନିଜର ଆତ୍ମାଙ୍କୁ ପରଂବ୍ରହ୍ମ ରୂପେ ଜାଣି,
ସଂସାରେ ରହନ୍ତି ନିରିଭୟେ ଆତ୍ମ-ଜ୍ଞାନୀ।
ତାଙ୍କ ଆତ୍ମା ସକଳର ଆତ୍ମା ଭାବି ମନେ,
ନ ରହନ୍ତି କାହାଠାରୁ ଦୂରେ କଦାଚନେ।

ଜୀବ ନାନାବିଧ କର୍ମ କରି ନିରନ୍ତର
ଆସକ୍ତିରୁ ଭୋଗେ ସୁଖ ଦୁଃଖ ଦାୟୀ ଫଳ।
ହେଉ ସୁଖ ଅବା ଦୁଃଖ ଅନୁଭୂତିମାନ
ସେ ଜୀବକୁ ଜଣାପଡ଼େ ମଧୁର ସମାନ
ତେଣୁ ମଧୁଭୋଜୀ ବୋଲି ଏ ଜୀବେ ବୋଲାଏ
ଜୀବ ରୂପୀ ଆତ୍ମା ସବୁ ଭୋଗ କରୁଥାଏ ।

ଏକ ଅଦ୍ୱିତୀୟ ବ୍ରହ୍ମ ଦେଶ କାଳାତୀତ
ଜୀବାତ୍ମା ରୂପରେ ଘଟେ ଘଟେ ପ୍ରକାଶିତ।
ସିନ୍ଧୁ ପ୍ରତି ଢ଼େଉ ଯେହ୍ନେ ସିନ୍ଧୁ ପ୍ରତିରୂପ,
ତେସନେ ଏ ଜୀବ ଜାଣ ବ୍ରହ୍ମଙ୍କ ସ୍ୱରୂପ।
ସେ ଭୂତ ଭବିଷ୍ୟ ବର୍ତ୍ତମାନର ନିୟନ୍ତା
ସେହି ଆତ୍ମା, ସେହି ବ୍ରହ୍ମ, ସୃଷ୍ଟିର କରତା।
ଏହି ସେହି ଆତ୍ମା ବୋଲି ଜାଣରେ କୁମର
ଯାହାଙ୍କୁ ଜାଣିବା ପାଇଁ ଏ ବ୍ରତ ତୋହର॥''

**ଯଃ ପୂର୍ବଂ ତପସୋ**
**ଜାତମଦ୍ଭ୍ୟଃ ପୂର୍ବମଜାୟତ ।**
**ଗୁହାଂ ପ୍ରବିଶ୍ୟ ତିଷ୍ଠନ୍ତଂ ଯୋ**
**ଭୂତେଭିର୍ବ୍ୟପଶ୍ୟତ, ଏତଦ୍ ବୈ ତଦ୍ ॥୬॥**

ଚିତ୍ତ ଶକ୍ତିରୁ ଯେ ବ୍ରହ୍ମ ଜାତ ପ୍ରଥମରେ,
ଯେ ଜାତ ଜଳାଦି ପଞ୍ଚଭୂତଙ୍କ ପୂର୍ବରେ,
ସର୍ବ ପ୍ରାଣୀ ହୃଦ ଗୁହାରେ ଯେ ନିତ୍ୟ ସ୍ଥିତ,
ଭୂତ-ପରିଣାମ ଦେହ ଇନ୍ଦ୍ରିୟ ସହିତ,
ସେହି ପୁରୁଷଙ୍କୁ ଯିଏ କରନ୍ତି ଦର୍ଶନ,
ସେ ପ୍ରକୃତ କରିଥାନ୍ତି ବ୍ରହ୍ମ ଦରଶନ।
ଯାହାଙ୍କୁ ଜାଣିବାପାଇଁ ତୁମେ କର ମନ
ଏହି ସେହି ଆତ୍ମା ବୋଲି ଜାଣରେ ନନ୍ଦନ॥୬॥

Digitized by srujanika@gmail.com

"ସତ୍ ଚିତ୍ ଆନନ୍ଦ ପରମାତ୍ମା ପରାତ୍ପର
ଅଲେଖ ନିର୍ଗୁଣ ନିରାକାର ସର୍ବେଶ୍ୱର।
ସେ ଜ୍ଞାନ ସ୍ୱରୂପ ବ୍ରହ୍ମ, ତାଙ୍କଠୁଁ ପ୍ରଥମେ
ଜନ୍ମିଲେ ହିରଣ୍ୟଗର୍ଭ, ସୃଷ୍ଟି ଆଦ୍ୟକ୍ରମେ।

କ୍ଷିତି ଅପ୍ ତେଜ ଆଦି ପଞ୍ଚ ମହାଭୂତ,
ସେତେବେଳେ କିଛି ହୋଇ ନଥିଲେ ଉଦ୍‌ଭୂତ।
ଏ ହିରଣ୍ୟଗର୍ଭ ତହୁଁ ନାମ ରୂପାତ୍ମକ
ଦୃଶ୍ୟ ଜାଗତର ସୃଷ୍ଟି ଲଭିଲା ଝଲକ।
ଏ ହିରଣ୍ୟଗର୍ଭ-ତତ୍ତ୍ୱ ପ୍ରାଣୀ ହୃଦାକାଶେ,
ପ୍ରବେଶି ନିଜକୁ ଜୀବ ରୂପରେ ପ୍ରକାଶେ।

ପ୍ରାଣୀଗଣ ହୃଦେ ଜୀବ ରୂପେ ସେହି ରହି
ଶବ୍ଦାଦି ବିଷୟ ଯେତେ ସେ ଭୋଗ କରଇ
ଜୀବ ହୃଦେ ସ୍ଥିତ ଏହି ପୁରୁଷଙ୍କୁ ଯିଏ
ଦର୍ଶନ କରନ୍ତି ବ୍ରହ୍ମ ଜାଣିଥାନ୍ତି ସିଏ।
ବ୍ରହ୍ମ ଓ ହିରଣ୍ୟଗର୍ଭ ନୁହଁନ୍ତି ତ ଭିନ୍ନ
କାରଣ ଓ କାର୍ଯ୍ୟ ସେହି ସ୍ୱଭାବେ ଅଭିନ୍ନ।

ବ୍ରହ୍ମ ଚିତ୍ ଶକ୍ତିରୁ ଯେ ପ୍ରଥମରେ ଜାତ
ସେ ହିରଣ୍ୟଗର୍ଭ— 'ବିଶ୍ୱ-ଜୀବ' ରୂପେ ଖ୍ୟାତ।
ସେ ପୁଣି ସମଷ୍ଟି ଜୀବ ସୂତ୍ରାତ୍ମା ବୋଲାନ୍ତି
ପଞ୍ଚଭୂତ ପୂର୍ବେ ଜାତ, ନିଗମେ ଗାଆନ୍ତି।
ପଞ୍ଚଭୂତାତ୍ମକ ଦେହ ପ୍ରାଣ ଇନ୍ଦ୍ରିୟରେ
ଯୁକ୍ତ ହୋଇ 'ବ୍ୟଷ୍ଟି-ଜୀବ' ବୋଲାନ୍ତି ଶେଷରେ।
ସେ ପ୍ରତ୍ୟେକ ବ୍ୟଷ୍ଟି ଜୀବ ହୃଦୟ ଗହ୍ୱରେ
ଜୀବାତ୍ମା ରୂପରେ ସ୍ଥିତ ଅତି ଗୋପନରେ।

ସେଥିପାଇଁ ପ୍ରତି ଜୀବ ହୃଦୟ ଗୁହାରେ
ଯେ ଦେଖନ୍ତି ବିଶ୍ୱାତ୍ମାଙ୍କୁ ବିଶେଷ ରୂପରେ,
ସେହି କରିଥାନ୍ତି ପୂତ୍ର ବ୍ରହ୍ମ ଦରଶନ,
ସେହି ଆତ୍ମା ଅବିନାଶୀ ଅଖିଳ ଜୀବନ।

Digitized by srujanika@gmail.com

ସୁନାରେ ତିଆରି ଯାହା କିଛି ଅଳଙ୍କାର
ସୁନା ହୋଇ ରହେ ସଦା ଯେସନ ପ୍ରକାର ।
ସେପରି ହିରଣ୍ୟଗର୍ଭ ଭିନ୍ନ ତ ନୁହନ୍ତି
ବ୍ରହ୍ମ କାରଣରୁ ପରା ସେ ବ୍ରହ୍ମ ଅଟନ୍ତି ।
ଯେ ହିରଣ୍ୟଗର୍ଭ ରୂପେ ବିଶ୍ୱ ବ୍ରହ୍ମାଣ୍ଡକୁ,
ଜୀବ ରୂପେ ପୁଣି ଏହି କ୍ଷୁଦ୍ର ବ୍ରହ୍ମାଣ୍ଡକୁ
ଦୁଇ ଭିନ୍ନ ବିଭାଗେ ଯେ ବ୍ରହ୍ମଙ୍କୁ ଦେଖନ୍ତି
ସେହି ପ୍ରକୃତରେ ସିନା ବ୍ରହ୍ମଙ୍କୁ ଜାଣନ୍ତି ।

**ଯା ପ୍ରାଣେନ ସମ୍ଭବତ୍ୟଦିତିର୍ଦ୍ଦେବତାମୟୀ ।**
**ଗୁହାଂ ପ୍ରବିଶ୍ୟ ତିଷ୍ଠନ୍ତୀ ଯା ଭୂତେଭିର୍ବ୍ୟଜାୟତ ।**
**ଏତଦ୍ ବୈ ତତ୍ ॥୭॥**

"ପ୍ରାଣ ରୂପେ ପ୍ରତି ଜୀବ ହୃଦେ ଯାର ସ୍ଥିତି,
ସେହି ତ ଦେବତାମୟୀ ଅରୂପା ଅଦିତି ।
ସେ ଭୂତଙ୍କ ସାଥେ ହୋଇ ଅଛନ୍ତି ଉତ୍ପନ୍ନ
ସେ ନିଶ୍ଚୟେ ଏହି ତତ୍ତ୍ୱ, ଜାଣିବୁ ନନ୍ଦନ" ॥୭॥

"ପୁତ୍ରରେ 'ହିରଣ୍ୟଗର୍ଭ' ପଦ ପାଇଁ ଜାଣ
'ପ୍ରାଣ' ଶବ୍ଦ ବ୍ୟବହୃତ, ମନେ କର ଜ୍ଞାନ ।
ଇନ୍ଦ୍ରିୟଙ୍କୁ କ୍ରିୟାଶକ୍ତି ଦିଅଇ ତ ପ୍ରାଣ,
ପ୍ରାଣ ବିନା ଏ ଇନ୍ଦ୍ରିୟେ କ୍ରିୟାହୀନ ଜାଣ ।
ତେଣୁ ଇନ୍ଦ୍ରିୟଙ୍କ ଦେବେ ପ୍ରାଣ ସୁନିଶ୍ଚିତ
ପ୍ରାଣ ଯେ, ଦେବତାମୟୀ ଅଦତି କଥିତ ।

ଅଦିତି ସ୍ୱରୂପା ପ୍ରାଣ ଶକ୍ତିରେ ସାଧକେ
ବ୍ରହ୍ମ ଦରଶନ କରି ଥାଆନ୍ତି ମୂଳକେ ।
ବୁଦ୍ଧି ଗୁହାରେ ଯେ, ପ୍ରାଣ ରୂପେ ପ୍ରକଟିତ
ସେ ହିରଣ୍ୟଗର୍ଭ ବୋଲି ଆଗରୁ କଥିତ ।
ରୂପ ରସ ଶବ୍ଦାଦିକୁ ଭୋଗ ଯେ କରନ୍ତି
ଜ୍ଞାନୀଏ ଏଠାରେ ତାଙ୍କୁ ଅଦିତି କହନ୍ତି ।
ଏହି ପ୍ରାଣ ପଞ୍ଚଭୂତେ କରଇ ଭୋଜନ
ପ୍ରାଣଭୋକ୍ତା, ପଞ୍ଚଭୂତେ ଅଟନ୍ତି ତ ଅନ୍ନ ।

Digitized by srujanika@gmail.com



ସେ ପାଇଁ ପ୍ରାଣକୁ କହି ଥାଆନ୍ତି ଅଦିତି,
ଏ ଅର୍ଥେ 'ଅଦିତି' ଶବ୍ଦ ପ୍ରୟୋଗ ଏମିତି।

ଦେବଗଣେ ପ୍ରାଣଶକ୍ତି ଅଶେଷ ଆଧାର
ପ୍ରାଣଶକ୍ତିରେ ତ ଚାଲେ ଜଗତ ବ୍ୟାପାର।
ଅଦିତି ବା ପ୍ରାଣଶକ୍ତି ପଞ୍ଚଭୂତ ସହ
ଜଗତରେ ଚଳାଚଳ କରେ ଅହରହ।
ଜଡ଼ର ଯେତେକ କ୍ରିୟା ଜଗତେ ପ୍ରକାଶ
ସେ ସବୁ କେବଳ ପ୍ରାଣ ଶକ୍ତିର ବିକାଶ।
ଏ ଜୀବର ଯାବତୀୟ ଦୈହିକ କରଣ
ସବୁପ୍ରାଣ ଶକ୍ତି ବଳେ ହୁଅଇ ସମ୍ପନ୍ନ।
ପ୍ରାଣ ବିନା ପଞ୍ଚଭୂତେ କି ଅବା କରିବେ?
ଭୂତ ବିନା ପ୍ରାଣ କର୍ମ କାହିଁ ଆଚରିବେ?
ତେଣୁ ପଞ୍ଚଭୂତ ସମନ୍ୱିତ ହୋଇ ପ୍ରାଣ
ଏ ଜୀବ ଜଗତେ ପ୍ରକାଶିତ ହୁଏ ଜାଣ।
ଜଡ଼ ଜୀବ ଅଭ୍ୟନ୍ତରେ ପ୍ରଚ୍ଛନ୍ନ ଭାବରେ,
ଯେଉଁ ପ୍ରାଣ ଶକ୍ତି ପ୍ରକଟିତ ନିରନ୍ତରେ,
ସେହି ଏହି ଆତ୍ମା ବୋଲି ଜାଣରେ କୁମର
ଏଥିରେ ସନ୍ଦେହ ମନେ ନରହୁ ତୋହର।"

## ଅରଣିର ଅଗ୍ନିରେ ବ୍ରହ୍ମଦୃଷ୍ଟି

**ଅରଣ୍ୟୋର୍ନିହିତୋ ଜାତବେଦା**
**ଗର୍ଭଇବ ସୁଭୃତୋ ଗର୍ଭିଣୀଭିଃ।**
**ଦିବେ ଦିବ ଈଡ୍ୟୋ ଜାଗୃବଦ୍ଭି-**
**ର୍ହବିଷ୍ମଦ୍ଭିର୍ମନୁଷ୍ୟେଭିରଗ୍ନିଃ। ଏତଦ୍ବୈ ତତ୍ ॥୮॥**

ଗର୍ଭିଣୀର ଭ୍ରୂଣ ଯେହ୍ନେ ରହେ ସଯତନେ
ଯଜ୍ଞାଗ୍ନି ନିହିତ ବେନି କାଷ୍ଠରେ ତେସନେ।
ଜାଗ୍ରତ ଯୋଗୀଏ ଆଉ ଯାଜ୍ଞିକ ସକଳେ,
ନିତି ନିତି ଯେ ଅଗ୍ନିକୁ ପୂଜନ୍ତି ଅନ୍ତରେ,
ସର୍ବଜ୍ଞ ବିରାଟ ରୂପୀ ସେ ଅଗ୍ନି ହିଁ ବ୍ରହ୍ମ;
ସେ ତୁମ ଜ୍ଞାତବ୍ୟ ଆତ୍ମା ହେ ଶିଷ୍ୟ ପରମ।୮।

Digitized by srujanika@gmail.com

"ପ୍ରତ୍ୟହ ଯାଜ୍ଞିକେ ଯେଉଁ ଅଗ୍ନିକୁ ପୂଜନ
କରିଥାନ୍ତି ପୁତ୍ର ତାଙ୍କୁ ବ୍ରହ୍ମ ବୋଲି ମଣ।
ଯାଜ୍ଞିକେ ଦୁଇଟି କାଠ କରି ଘରଷଣ
ତହୁଁ ଯଜ୍ଞ ଅଗ୍ନି କରିଥାନ୍ତି ପ୍ରଜ୍ୱଳନ।
ଉପରେ ଉତ୍ତର ତଳେ ଅଧର ଅରଣି
ଯାଜ୍ଞିକେ ସେ ଅଗ୍ନି କର୍ମ କ୍ରିୟା ବୋଲି ଗଣି।
ସୁଖାଦ୍ୟ ଭୋଜନେ ଯେହ୍ନେ ଗରଭିଣୀ ନାରୀ
ଯତନେ ସାଇତି ରଖେ ଭ୍ରୁଣକୁ ତାହାରି,
ତେସନେ ଯାଜ୍ଞିକେ ଯଜ୍ଞ ଅଗ୍ନିକୁ ଯତନେ
ସାଇତନ୍ତି ଦେବ ଯଜ୍ଞ କ୍ରିୟା ସମ୍ପାଦନେ।

ଏ ଅଗ୍ନି ଏଠାରେ ଦୁଇ ଅର୍ଥେ ବ୍ୟବହୃତ
ଗୋଟିଏ ଯଜ୍ଞାଗ୍ନି ଆନ ବିରାଟ ପୁରୁଷ।
ଅଗ୍ନି ରୂପେ ଅନୁଭୂତ ଯୋଗୀ ହୃଦ ଧ୍ୟାନେ,
ଜାତବେଦା ସେ ସର୍ବଜ୍ଞ ପୁରୁଷ ସମାନେ।

ହୃଦୟରେ ଧ୍ୟାନ କରି ଯୋଗୀ ଋଷିଗଣ,
କରନ୍ତି ଯେ ବ୍ରହ୍ମଙ୍କର ପ୍ରତ୍ୟହ ପୂଜନ,
ଗୃହସ୍ଥର ଯଜ୍ଞାଗ୍ନିରେ ଯେ ଅଗ୍ନି ପୂଜିତ,
ଯୋଗୀଜନ ଧ୍ୟାନେ ଯିଏ ହୁଅନ୍ତି ପ୍ରତୀତ,
ସର୍ବଜ୍ଞ ବିରାଟ ରୂପୀ ସେ ଅଗ୍ନି ହିଁ ବ୍ରହ୍ମ
ତୁମ ଜିଜ୍ଞାସିତ ଏହି ସେ ଆତ୍ମା ପରମ॥"

### ପ୍ରାଣରେ ବ୍ରହ୍ମ ଦୃଷ୍ଟି

**ଯତଶ୍ଚୋଦେତି ସୂର୍ଯ୍ୟୋଽସ୍ତଂ ଯତ୍ର ଚ ଗଚ୍ଛତି।**
**ତଂ ଦେବାଃ ସର୍ବେ ଅର୍ପିତାସ୍ତଦୁ ନାତ୍ୟେତି କଶ୍ଚନ।**
**ଏତଦ୍ୱୈ ତତ୍ ॥ ୯ ॥**

"ଯାହାଙ୍କ ଠୁଁ ସୂର୍ଯ୍ୟଦେବ ହୁଅନ୍ତି ଉଦିତ
ହୋଇଥାନ୍ତି ପୁଣି ଯାହାଠାରେ ଅସ୍ତମିତ,
ସେ ପ୍ରାଣାତ୍ମାଙ୍କ ଠାରେ ସବୁ ଦେବତା ଅର୍ପିତ,
ତାହାଙ୍କୁ ଟପିବା ଶକ୍ତି କାହାରି ନାହିଁ ତ।

Digitized by srujanika@gmail.com



ଏହି ସେହି ବ୍ରହ୍ମ ବୋଲି ଜାଣିବୁ ନନ୍ଦନ,
ଯାହାଙ୍କୁ ଜାଣିବା ପାଇଁ ତୁ ହିଁ କରୁ ମନ ॥ ୯ ॥''

''ପ୍ରାଣରୁ ଜଗଗେତ୍ପତ୍ତି ପ୍ରାଣରେ ବିଲୟ,
ଏହି ସତ୍ୟ ଗୋଟି ବାବୁ ମନେ କର ଥୟ ।
ଏହା ବୁଝିବାକୁ ସୂର୍ଯ୍ୟ ଉଦୟ ବିଲୟ,
ସୂଚନାରେ ମାତ୍ର କୁହାଯାଇଛି ତନୟ ।

ପ୍ରାଣ ରୂପ ଆତ୍ମାରେ ତ ସକଳ ଦେବତା
ପ୍ରତି ଅବସ୍ଥାରେ ଜଡ଼ି ରହନ୍ତି ସର୍ବଦା ।
ଏ ମନ୍ତ୍ରେ 'ଦେବତା' ଶବ୍ଦ ପ୍ରତି ଲକ୍ଷ୍ୟକର
ସେ ନୁହନ୍ତି ସ୍ୱରଗର ଦେବତା କେବଳ ।
ପଞ୍ଚ ମହାଭୂତ ଏଠି ଆଲୋଚ୍ୟ ବିଷୟ,
ଯହିଁ ପଞ୍ଚ ଜ୍ଞାନେନ୍ଦ୍ରିୟେ ଲଭନ୍ତି ଆଶ୍ରୟ ।
ଦେବତା ରୂପରେ ତାଙ୍କୁ ବିଚାରେ ବେଦାନ୍ତ
ଆତ୍ମାଙ୍କୁ ଯେ କେନ୍ଦ୍ରକରି ଦେହେ ଆତଯାତ ।

ସ୍ୱର୍ଗର ଦେବତା ଅବା ଇନ୍ଦ୍ରିୟ ଦେବତା,
ସର୍ବେ ଆତ୍ମା ଅନୁଗାମୀ ରହନ୍ତି ସର୍ବଦା ।
ଶଗଡ଼ର ଅର ସବୁ ତୁମ୍ବେ ଯେଉଁପରି
ଦେବେ ଆତ୍ମାଠାରେ ସ୍ଥିତ ରହନ୍ତି ସେପରି ।
ତୁମ୍ବ ବିନା ଅର ସବୁ ଯେହ୍ନେ ଅକର୍ମଣ୍ୟ
ଆତ୍ମା ବିନା ଦେବେ, ସବୁ ଇନ୍ଦ୍ରିୟେ ତେସନ ।
ସୂର୍ଯ୍ୟ ପରି ସବୁ ଦେବେ ଆତ୍ମଶକ୍ତି ବଳେ
ନିଜ କର୍ମ ସମ୍ପାଦନ କରନ୍ତି ସତ୍ୱରେ ।''

### ଭେଦଦୃଷ୍ଟିର ଅପ୍ରଶଂସା :

**ଯଦେବେହ ତଦମୁତ୍ର ଯଦମୁତ୍ର ତଦନ୍ୱିହ ।
ମୃତ୍ୟୋଃ ସ ମୃତ୍ୟୁମାପ୍ନୋତି ଯ ଇହ ନାନେବ ପଶ୍ୟତି ॥ ୧୦ ॥**

ଏଠାରେ ଯା' ଅଛି, ତାହା ଅଛି ତ ସେଠାରେ
ସେଠାରେ ଯା' ଅଛି, ତାହା ରହିଛି ଏଠାରେ ।
ଏଠାରେ ଦେଖନ୍ତି ଯିଏ ସବୁ ଭିନ୍ନ ଭିନ୍ନ
ବାରମ୍ବାର ମୃତ୍ୟୁର ସେ ହୁଅନ୍ତି ଅଧୀନ ॥ ୧୦ ॥

Digitized by srujanika@gmail.com

"ଏ ମନ୍ତ୍ର ମରମ ବାବୁ ବୁଝ ଭଲ କରି,
ବୁଝିଲେ ସକଳ ଭ୍ରାନ୍ତି ତୁଟିବ ତୋହରି।
ଏଠାରେ ଆମେ ଯେ ଭାବୁଁ ନିରନ୍ତର ମନେ,
ବ୍ରହ୍ମଙ୍କଠୁଁ ଭିନ୍ନ ନିଶ୍ଚେ ଏ ସଂସାରୀ ଜନେ।
ଏହା ଭ୍ରାନ୍ତି, ଏହା ଆମ ମନର ବିକୃତି
ଜୀବନେ ଲଭିନୁ ଯେଣୁ ଆତ୍ମ ଅନୁଭୂତି ।

ଏଠାରେ ସଂସାରୀ ଜୀବ ହୃଦୟରେ ଜାଣ
ଜୀବ ରୂପେ ପରଂବ୍ରହ୍ମ ନିତ୍ୟ ବିଦ୍ୟମାନ।
ପ୍ରତି ଜୀବ ମଧ୍ୟେ କରେ ଯେ ଭେଦ ଦର୍ଶନ,
ସେ ଥରକୁ ଥର କରେ ମୃତ୍ୟୁ ଆଲିଙ୍ଗନ।

ଆମେ ଏକ ଦେହ ଛାଡ଼ି ଅନ୍ୟ ଏକ ଦେହ
ମୃତ୍ୟୁ ପରେ ଥାଉ ଧରି ଏହା ନିଃସନ୍ଦେହ।
ଏ 'ଆମେ' କିଏ ସେ ଯିଏ ଶରୀର ଧରଇ,
ଏ ପ୍ରଶ୍ନ କି କେବେ ଆମ ମନରେ ଉଠଇ ?
ଅନ୍ୟ ଠାରୁ ଭିନ୍ନ ଭାବି ଆମେ ଜୀବ ଭାବେ
କର୍ତ୍ତା ଭୋକ୍ତା ରୂପେ ମଣୁ ନିଜକୁ ସ୍ୱଭାବେ।
କର୍ତ୍ତା ଭୋକ୍ତା ଭାବେ ଆମେ ଭିନ୍ନ ଯେତେ ଦିନ
ସେତେଦିନ ହେଉଥିବା ମୃତ୍ୟୁର ଅଧୀନ।

ଏଇ କ୍ଷୁଦ୍ର ଜୀବ ଭାବ ହୃଦୁଁ ପରିହରି
ଉପରେ ଉଠିଲେ ମୃତ୍ୟୁ ନ ପାରିବ ଧରି।
ସ୍ୱରୂପରେ ଭୂମା ଯିଏ, ସିଏ ହିଁ କେବଳ
ଜୀବ ରୂପେ ଏଇ ଖେଳ କରେ ନିରନ୍ତର।

ଭିନ୍ନ ରୂପେ ଯେ ଦେଖଇ ନିଜକୁ ନିରତେ,
ସେ ଥରକୁ ଥର ଜନ୍ମ ହୁଅଇ ମରତେ।
ଏକତ୍ୱର ଉପଲବ୍ଧି ହୋଇଲେ ଅନ୍ତରେ,
ଏ ଯିବା ଆସିବା ବନ୍ଦ ହୋଇବ ଶେଷରେ।

ଏଠାରେ ଯା' ଅଛି, ତାହା ରହିଛି ସେଠାରେ,
ସେଠାରେ ଯା'ଅଛି ତାହା ଅଛି ତ ଏଠାରେ।
ଜୀବ ରୂପେ ଦେଖେ ଯାକୁ ସେ ପରମେଶ୍ୱର,
ଯେ ପରମେଶ୍ୱର, ସେହି ସେ ଜୀବ କେବଳ।

Digitized by srujanika@gmail.com

ଆଉ ଏକ କଥା ବାବୁ ବିଚାର ମନରେ,
କାରଣ ନ ଥାଇ କାର୍ଯ୍ୟ ହୁଏ କି ବିଶ୍ୱରେ ?
ସ୍ଥୂଳ ଦେହାଦିକୁ ଆମେ କଲେ ବିଶ୍ଳେଷଣ
ଶେଷେ ମିଳି ଯାଇଥାଏ ତାହାରି କାରଣ ।
କାରଣର କାରଣକୁ ଖୋଜି ଖୋଜି ଗଲେ
ହିରଣ୍ୟଗରଭ ପାଶେ ପହଞ୍ଚୁ ଶେଷରେ ।
ହେଲେ ବି ହିରଣ୍ୟଗର୍ଭ ଜଗତ କାରଣ,
ଶୁଦ୍ଧ ବ୍ରହ୍ମର ତ ସିଏ ପ୍ରକାଶ ଯେସନ ।
ତେଣୁ ଶୁଦ୍ଧ ବ୍ରହ୍ମେ ଏହି ଜଗତ କଳ୍ପିତ,
ବ୍ରହ୍ମସତ୍ତା ବିନା ସତ୍ତା ନ ଅଛି କିଞ୍ଚିତ ।

ବ୍ରହ୍ମସତ୍ତା ହୁଏ ଯଦି ଏକମାତ୍ର ସାର,
ତେବେ ଏ ମରତେ ମୃତ୍ୟୁ ହେଉଛି କାହାର ?
ଆତ୍ମା ତ ଅମର ନିତ୍ୟ ମୃତ୍ୟୁ ତାର ନାହିଁ
କଳ୍ପିତ ବସ୍ତୁର କଣ ସତ୍ତା କାହିଁ ଥାଇ ?
ନିଜକୁ ଭାବିଲେ ପରମାତ୍ମାଙ୍କ ପ୍ରକାଶ
ତେବେ ତ ଆମର କେବେ ନୋହିବ ବିନାଶ ।

ସାଗରଠୁଁ ଭିନ୍ନ ନୁହେଁ ଯେସନେ ଲହରୀ,
ଅଳଙ୍କାର ନୁହେଁ ଭିନ୍ନ ସୁନାଠୁଁ ଯେପରି,
ଅବ୍ୟକ୍ତ ବ୍ରହ୍ମଙ୍କ ଠାରୁ ଏ ବିଶ୍ୱ ଜଗତ
କେତେବେଳେ ହେଲେ ଭିନ୍ନ ନୁହଇ ତେମନ୍ତ ।
ନାମରେ କେବଳ ମାତ୍ର ବିରାଜେ ଭିନ୍ନତା
ନାମ ବ୍ୟତିରେକେ ଥାଏ କେବଳ ପୂର୍ଣ୍ଣତା ।

ବ୍ରହ୍ମ ଜୀବ ଓ ଜଗତ ଅଭିନ୍ନ ସତତ,
ଆତ୍ମ-ଜ୍ଞାନୀ ଜାଣି ପାରିଥାନ୍ତି ଏହି ତତ୍ତ୍ୱ ।
ଯାହା କିଛି ଅଛି ରହି ଅଖିଳ ବିଶ୍ୱରେ
ସେ ସକଳ ଅଛି ବ୍ରହ୍ମେ ବା ଆତ୍ମଜ୍ଞାନରେ ।"

**ମନସୈବେଦମାପ୍ତବ୍ୟଂ ନେହ ନାନାସ୍ତି କିଞ୍ଚନ ।**
**ମୃତ୍ୟୋଃ ସ ମୃତ୍ୟୁଂ ଗଚ୍ଛତି**
**ଯ ଇହ ନାନେବ ପଶ୍ୟତି ॥ ୧୧ ॥**

Digitized by srujanika@gmail.com

"ମନରେ କେବଳ କେହି ତାହାଙ୍କୁ ଲଭନ୍ତି
ତହୁଁ ଆଉ କିଛି ଭିନ୍ନ ଏଥି ନ ଦେଖନ୍ତି।
ନାନାତ୍ୱ ଦେଖନ୍ତି ଯେଉଁ ପୁରୁଷ ଏଥିରେ
ସେ ଭୋଗନ୍ତି ବାରମ୍ବାର ମୃତ୍ୟୁ ଏ ଶରୀରେ।" ।୧୧।

"ଅରୂପ ଅସ୍ପର୍ଶ ବ୍ରହ୍ମ ଅଶବ୍ଦ ଅବ୍ୟୟ
କେସନେ ମଣିଷ ତାଙ୍କୁ କରିପାରେ ଥୟ?
ବିଷୟକୁ ଉପଲବ୍ଧି କରିବା ନିମନ୍ତେ
ପାଞ୍ଚ ଜ୍ଞାନେନ୍ଦ୍ରିୟ ଅଛି ଏ ଶରୀର ଗତେ।
କିନ୍ତୁ ନିର୍ବିଷୟ ଯିଏ ତାହାଙ୍କୁ କିପରି
କେଉଁ ଜ୍ଞାନେନ୍ଦ୍ରିୟେ ଅବା କେ ପାରିବ ଧରି?
କେବଳ ଏ ମନେ ତାଙ୍କୁ ଧରି ହୋଇପାରେ
ତେଣୁ ମନ କଥା ପୁତ୍ର କହୁଛି ଏଠାରେ।

ଯେ ମନକୁ ଭାବୁ ଆମେ ଖଣ୍ଡିତ ମଳିନ,
ବିନାଶୀ ଓ ପରିଣାମୀ ସଂଶୟ ଅଧୀନ,
ସେହି ମନ କ୍ରମେ ଶାସ୍ତ୍ର ଗୁରୁ ଉପଦେଶେ,
ଶୁଦ୍ଧ ବ୍ରହ୍ମ ସ୍ୱରୂପରେ ଜଣା ପରିଶେଷେ।
କରାଯାଏ ଏ ମନକୁ ଶୁଦ୍ଧ ଯେତେ ଯେତେ,
କ୍ରମେ ସ୍ଥୂଳ ସ୍ୱରୂପ ସେ ଛାଡ଼େ ସେତେ ସେତେ।
ଏ ପ୍ରକାରେ ପୂର୍ଣ୍ଣ ଶୁଦ୍ଧି ହୋଇଗଲା ପରେ
ବ୍ରହ୍ମ ସ୍ୱରୂପତା ଲାଭ ହୁଅଇ ଶେଷରେ।
ସାଧନାରେ ଏ ଆତ୍ମାଙ୍କୁ ଖୋଜେ ଯେଉଁ ମନ
ସେ ମନ ସେ ଆତ୍ମା ବୋଲି ଜାଣଇ ନନ୍ଦନ।

ଏଠି ଦୁଇ ପକ୍ଷୀ କଥା ବାବୁ ହେତୁ କର,
ତଳ ପକ୍ଷୀ ଭୁଞ୍ଜେ ସୁଖ ଦୁଃଖ ଖାଇ ଫଳ।
ଉପର ନ ଖାଇ କିଛି ଆନନ୍ଦେ ରହଇ
ତା' ଦେଖି ଏ ତଳ ପକ୍ଷୀ ଉପରେ ଉଠଇ।
ଉପରେ ପହଞ୍ଚି ତଳ ପକ୍ଷୀ ଦେଖେ ତହିଁ,
ସେ ନିଜେ ଉପର ପକ୍ଷୀ, ଭିନ୍ନ ତ ନୁହଇ।
ସ୍ୱରୂପ ଲଭିଲା ତାର ଏବେ ତଳ ପକ୍ଷୀ,
ମନ ବିଷୟରେ ତେତ୍ନେ ଥିବୁ ମନେ ରଖି।।"

Digitized by srujanika@gmail.com

**ହୃଦୟ କନ୍ଦରରେ ବ୍ରହ୍ମ :**

**ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ ମଧ୍ୟ ଆତ୍ମନି ତିଷ୍ଠତି ।**
**ଈଶାନୋ ଭୂତଭବ୍ୟସ୍ୟ ନ ତତୋ ବିଜୁଗୁପ୍ସତେ**
**ଏତଦ୍ ବୈ ତତ୍ ॥ ୧୨ ॥**

ବୃଦ୍ଧାଙ୍ଗୁଳି ପରିମାଣ ପୁରୁଷଟି ଜାଣ,
ହୃଦୟ କନ୍ଦରେ କରିଥାନ୍ତି ଅବସ୍ଥାନ ।
ଅଥଚ ସେ ଭୂତ ଭବ୍ୟ ତ୍ରିକାଳ ଈଶ୍ୱର,
ଏପରି ଜାଣନ୍ତି ତାଙ୍କୁ ଯେଉଁ ସବୁ ନର
ସେମାନେ ରଖନ୍ତି ନାହିଁ ନିଜକୁ ଗୋପନେ,
ଏହି ସେହି ଆତ୍ମା ବୋଲି ଜାଣି ରଖ ମନେ । ॥ ୧୨ ॥

"ଯେ ଆତ୍ମାଙ୍କ ଉପଲବ୍ଧି ହୁଏ ଶୁଦ୍ଧ ମନେ,
ତାଙ୍କ ରୂପ ହୋଇଥିବ ବାବୁରେ କେସନେ ?
ତାଙ୍କୁ ଜାଣି ହେବ ଅବା କାହିଁ କେଉଁପରି
ସେ ସବୁ କହୁଛି, ଭ୍ରମ ନରହୁ ତୋହରି ।

ବୃଦ୍ଧାଙ୍ଗୁଳି ପରିମାଣ ପୁରୁଷ ମହାନ,
ଆତ୍ମା ସେହି ଜୀବ ହୃଦେ ନିତ୍ୟ ବିଦ୍ୟମାନ ।
ଏ ଦେହ ପୁରୀରେ ବାବୁ ଯେଣୁ ନିରନ୍ତରେ
ଜୀବ ବ୍ୟାପୀ ରହିଛନ୍ତି ସମସ୍ତ ଅଂଶରେ,
ତେଣୁ ସେ ପୁରୁଷ ବୋଲି ହୁଅନ୍ତି କଥିତ
ଜୀବ ହୃଦେ ସେହି ବୃଦ୍ଧାଙ୍ଗୁଳି ପରିମିତ ।

ଏହା ଶୁଣି ହେବୁ ତୁହି ନିଶ୍ଚେ ସନ୍ଦିହାନ,
ସର୍ବବ୍ୟାପୀ ଆତ୍ମା କେହ୍ନେ ଅଙ୍ଗୁଷ୍ଠ ପ୍ରମାଣ ?
ଧ୍ୟାନ କରିବାକୁ ପୁତ୍ର ଏପରି କଥିତ
ହୃଦାକାଶ ଯେଣୁ ବୃଦ୍ଧାଙ୍ଗୁଳି ପରିମିତ ।
ତାଙ୍କୁ ଚିନ୍ତା କରାଯାଏ ଯେଣୁ ହୃଦାକାଶେ,
ଅଙ୍ଗୁଷ୍ଠ ପ୍ରମାଣ ତେଣୁ କହିଲି ତୋ'ପାଶେ ।

Digitized by srujanika@gmail.com

ଆହୁରି କଥାଏ ବାବୁ ମନେ କର ଧ୍ୟାନ,
ବହିରାକାଶ ଯେ ହୃଦାକାଶ ପରିମାଣ।
ହୃଦୟ ତ ଅତି କ୍ଷୁଦ୍ର ଅତ୍ୟନ୍ତ ସୀମିତ
ତାହା କେଉଁପରି ବାହ୍ୟାକାଶ ପରିମିତ ?
ଏ ବିଶ୍ୱ ବ୍ରହ୍ମାଣ୍ଡ ଯେଣୁ ମନରେ ସୀମିତ
ପୁଣି ସେହି ମନ ଗୋଟି ହୃଦେ ଅବସ୍ଥିତ,
ତେଣୁ ତ ହୃଦୟେ ବିଶ୍ୱ ବ୍ରହ୍ମାଣ୍ଡ ସୀମିତ
ବ୍ରହ୍ମାଣ୍ଡର ଆଦି ତେଣୁ ହୃଦ ପରିମିତ।
ବିଶ୍ୱବ୍ୟାପୀ ବୋଲି ତାଙ୍କୁ ହୃଦେ କଲେ ଧ୍ୟାନ,
ଆତ୍ମାଙ୍କ ବିଷୟେ କିଛି ନ ହୁଅଇ ଜ୍ଞାନ
ତେଣୁ ଏହି ହୃଦାକାଶ ପରିମିତ ସ୍ଥାନେ,
ଧ୍ୟାନ କରିଥାନ୍ତି ତାଙ୍କୁ ଯୋଗୀ ଜନମାନେ।

ଘଟରେ ରଖିଲେ ଆମେ ଆଣି ଗଙ୍ଗାଜଳ,
ଘଟ ପରିମାଣ ହୁଏ ସେ ଜଳ କେବଳ।
ଗଙ୍ଗା ତ ନୁହଁଇ କିନ୍ତୁ ଘଟ ପରିମାଣ
ଘଟ ଜଳେ ଆମେ କରିଥାଉଁ ଗଙ୍ଗା ଜ୍ଞାନ।
ଆମେ ଯେବେ ସ୍ପର୍ଶ କରୁ ଏହି ଗଙ୍ଗା ଜଳ
ଆମେ ଭାବୁ ସ୍ପର୍ଶ କଲୁ ଗଙ୍ଗାକୁ କେବଳ।
ସେତେବେଳେ ଭାବୁ ନାହିଁ ଆମେ ଆମ ମନେ,
ସୀମିତ ଗଙ୍ଗାକୁ ସ୍ପର୍ଶ କରିଛୁ ଯେସନେ।
ସୀମିତ ହେଲେ ବି ଗଙ୍ଗା ଆମରି ଘଟରେ
ପରିପୂର୍ଣ୍ଣ ଗଙ୍ଗା ଚିନ୍ତା କରୁ ଏ ମନରେ।
ଅଖଣ୍ଡ ବ୍ରହ୍ମଙ୍କୁ ତେହ୍ନେ ହୃଦେ ଚିନ୍ତା କରି
ଭାବୁନା ସୀମିତ ବୋଲି ସେ ହୃଦେ ଆମରି।

ପୁଣି ସର୍ବବ୍ୟାପୀ ବ୍ରହ୍ମ ଯେଉଁ ହୃଦ କଣେ,
ସେ ହୃଦ ସୀମିତ ଅବା ହୋଇବ କେସନେ ?
ଅଙ୍ଗୁଷ୍ଠ ମାତ୍ରକ ଯିଏ ଆମ ହୃଦାକାଶେ
ସେ ତ୍ରିକାଳ ପ୍ରଭୁ ବୋଲି କହିଛି ତୋ ପାଶେ।
ତେଣୁ ଯିଏ କ୍ଷୁଦ୍ର ସିଏ ଅଟନ୍ତି ମହାନ,
ଆତ୍ମା ରୂପେ ସର୍ବଭୂତେ ସେ ତ ବିଦ୍ୟମାନ।

Digitized by srujanika@gmail.com



ଅସୀମକୁ ଚିନ୍ତା କରି ସମୀମ ରୂପରେ,
ଧ୍ୟାନ କଉଶଳ ଏକ ଥୁଏ ତୋ' ଆଗରେ
ମାଟି ପଥରରେ ଗଢ଼ି ଦୁର୍ଗାଙ୍କ ମୂରତି,
ଜଗତ ଈଶ୍ୱରୀ ଭାବି ଆମେ ତାଙ୍କୁ ଭଜି।

ଓଁକାର ପ୍ରତୀକାକ୍ଷରେ ବ୍ରହ୍ମ କଳପନା,
କରି ଆମେ କରିଥାଉଁ ତାଙ୍କ ଉପାସନା।
ଯେ ଅସୀମ, ସିଏ ହୋଇ ଅଛନ୍ତି ସୀମିତ,
ସର୍ବବ୍ୟାପୀ ବ୍ରହ୍ମ ତେହ୍ନେ ହୃଦୟେ ନିହିତ।

ଜୀବ ରୂପୀ ତୁ ଯାହାଙ୍କୁ ଜାଣିବାକୁ ଚାହୁଁ,
ସେ ତୋ ଆତ୍ମ-ସତ୍ତା ବିନା କିଛି ନୁହେଁ ଆଉ।

କ୍ଷୁଦ୍ର ଜୀବ କେହ୍ନେ ହେବ ଅସୀମ ଅନନ୍ତ,
ଏ ସଂଶୟ ଆମ ମନେ ରହିଅଛି ସତ।
ଏ ସଂଶୟ-ଡେରେ ଗୋଟି କରିବାକୁ ନାଶ,
ଗୁରୁ ଶାସ୍ତ୍ର ଉପଦେଶ କରନ୍ତି ପ୍ରୟାସ।

ଏଠି ସେ କାହାଣୀ ଗୋଟି ପକାଅରେ ମନେ,
ସିଂହ ଶିଶୁ ଥିଲା ଯେଉଁ ମେଣ୍ଢାଙ୍କ ଗହଣେ।
ସେ ନିଜକୁ ମେଣ୍ଢା ଛୁଆ ବୋଲି ଭାବୁଥିଲା
ସିଂହ ନାଆଁ ଶୁଣି ଭୟେ କମ୍ପି ଉଠୁଥିଲା।
ଦିନେ ଅନ୍ୟ ସିଂହ ଏକ ସେ ଶିଶୁକୁ ନେଇ,
ନଦୀ ଜଳେ ତାର ନିଜ ମୁହଁକୁ ଦେଖେଇ,
କହିଲା, 'ରେ ମୂର୍ଖ ଜଳେ ନିଜ ମୁହଁ ଦେଖ
ପୁଣି ମତେ ଚାହିଁ ଜାଣ ତୁ ହିଁ ସିଂହ ଏକ।
ଆରେ କରୁଅଛି ମୁହିଁ ଯେସନେ ଗର୍ଜନ,
ତୁ ମଧ ପାରିବୁ ଗର୍ଜି କରୁ ଯେବେ ମନ ?

ତେହ୍ନେ ଶାସ୍ତ୍ର ବାର ବାର ଦିଅଇ ଚେତେଇ,
ଅମୃତର ପୁତ୍ର ଆରେ, ''ତୁଭ ମଧ ସେହି'।
ହୃଦ ସ୍ଥିତ ଆତ୍ମା ଯିଏ ପରମାତ୍ମା ସେହି,
ଏ ଆତ୍ମ-ତତ୍ତ୍ୱକୁ ଯଦି ଜାଣିପାରେ କେହି,

Digitized by srujanika@gmail.com

ରଖିବାକୁ ସେ ନିଜକୁ ଆଉ ସୁରକ୍ଷିତ
କେତେବେଳେ ହେଲେ ଯତ୍ନ କରିବ ନାହିଁ ତ।
ଭୟହୀନ ହୋଇ ସେହି ବୁଲିବ ଜଗତେ,
ପରମାତ୍ମା କୋଳେ ଆତ୍ମା ବିଳସିବ ସତେ।''

**ଅଙ୍ଗୁଷ୍ଠମାତ୍ରଃ ପୁରୁଷୋ ଜ୍ୟୋତିରିବାଧୂମକଃ ।**
**ଈଶାନୋ ଭୂତଭବ୍ୟସ୍ୟ ସ ଏବାଦ୍ୟ ସ ଉ ଶ୍ୱଃ ।**
**ଏତଦ୍ ବୈ ତତ୍। ॥ ୧୩॥**

''ଯେ ଅଙ୍ଗୁଷ୍ଠ ପରିମାଣ ପୁରୁଷ ମହାନ,
ଅଧୂମକ ଜ୍ୟୋତି ରୂପେ ହୃଦେ ଦୀପ୍ୟମାନ,
ସେ ଭୂତ ଭବିଷ୍ୟ କାଳ ଶାସକ ଅଟନ୍ତି,
ସେ ପୁରୁଷ ଏଇ ଦେଖ ଆଜି ରହିଛନ୍ତି।
କାଲିକି ରହିବେ ପୁଣି ସେହି ଏକାପରି
ଏହି ସେହି ଆତ୍ମା ବୋଲି ଜାଣ ଭଲ କରି।''।୧୩।

''ଅଙ୍ଗୁଷ୍ଠ ପ୍ରମାଣ ଯେଉଁ ପୁରୁଷ ମହାନ,
ଜ୍ୟୋତି ରୂପେ ହୃଦୟରେ ସ୍ୱପ୍ରକାଶମାନ,
ଭୂତ ବର୍ତ୍ତମାନ ଭବିଷ୍ୟତେ ସେ ରହନ୍ତି,
ନିତ୍ୟ ସନାତନ ସେହି କୂଟସ୍ଥ ଅଟନ୍ତି,
ପ୍ରତି ଜୀବ ହୃଦୟେ ସେ ଏବେ ବିଦ୍ୟମାନ,
କାଲିକି ରହିବେ ସେହି ପୁରୁଷ ମହାନ।
କାଳାତୀତ ସନାତନ ଏ ଆତ୍ମା ଗୋସାଇଁ,
କାଳ ବଦଳିଲେ ସିଏ ବଦଳନ୍ତି ନାହିଁ।
ମୃତ୍ୟୁ ଅନ୍ତେ ଆତ୍ମା କାହିଁ କରନ୍ତି ଗମନ,
ଯେ ପ୍ରଶ୍ନ ପଚାରିଥିଲୁ ରେ ପ୍ରିୟ ନନ୍ଦନ,
ତା' ଉତ୍ତର ଏହି, ଆତ୍ମା ନିତ୍ୟ ଓ ଶାଶ୍ୱତ,
ସର୍ବବ୍ୟାପୀ ହେତୁ କାହିଁ ହେବେ ଗତାଗତ ?''

**ଭେଦଦର୍ଶନ :**

**ଯଥୋଦକଂ ଦୁର୍ଗେ ବୃଷ୍ଟଂ ପର୍ବତେଷୁ ବିଧାବତି ।**
**ଏବଂ ଧର୍ମାନ୍ ପୃଥକ୍ ପଶ୍ୟଂସ୍ତାନେବାନୁବିଧାବତି ॥ ୧୪॥**

ଦୁର୍ଗମ ପର୍ବତ ଶିଖେ ବରଷିଲେ ଜଳ,
ବହୁଧାରା ଯୁକ୍ତ ହୋଇ ଖସି ଆସି ତଳ,
ପର୍ବତର ନିମ୍ନ ଦେଶେ ବହଇ ଯେସନେ,
ଭିନ୍ନତା ଦେଖାଇ ଭୋଗେ ଦୁର୍ଦ୍ଦଶା ତେସନେ।
ଭିନ୍ନ ଦେହ ଧର୍ମ ଅନୁସାରେ ସେହି ଜନ,
ଆତ୍ମା ସବୁ ଭିନ୍ନ ଭିନ୍ନ କରଇ ଦର୍ଶନ।''

''ଏକ ଅଦ୍ୱିତୀୟ ବ୍ରହ୍ମ ଭିନ୍ନ ଦେହେ ରହି,
ଜଗତରେ ଭିନ୍ନ ଭିନ୍ନ ରୂପ ପ୍ରକାଶଇ।
ସକଳ ଜୀବର ହୃଦେ ଏସନ ଏକତା
ଅଜ୍ଞାନୀ ଜୀବନେ ତାର ବୁଝେନି ଏ କଥା।
ସେ ଭାବେ ବ୍ରହ୍ମଠୁଁ ଜୀବ ପୃଥକ ଅଟଇ
ଜୀବ ଜୀବ ମଧ୍ୟେ ତେଣୁ ଭିନ୍ନତା ଘଟଇ।''

**ଯଥୋଦକଂ ଶୁଦ୍ଧେ ଶୁଦ୍ଧମାସିକ୍ତଂ ତାଦୃଗେବ ଭବତି ।**
**ଏବଂ ମୁନେର୍ବିଜାନତ ଆତ୍ମା ଭବତି ଗୌତମ ॥ ୧୫ ॥**

ଶୁଦ୍ଧ ଜଳେ ଶୁଦ୍ଧ ଜଳ ହୋଇଲେ ମିଶ୍ରିତ,
ଗୌତମ ତା ହୁଏ ଶୁଦ୍ଧ ଜଳ ସୁନିଶ୍ଚିତ।
ସୁଜ୍ଞାନୀ ଏକତ୍ୱଦର୍ଶୀ ଜନଙ୍କ ସେପରି
ଆତ୍ମା ବାବୁ ବ୍ରହ୍ମଭାବ ଥାଏ ଲାଭ କରି।।୧୫।

''ପୂର୍ବ ଶ୍ଳୋକେ ଭେଦଦର୍ଶୀ ଅଜ୍ଞାନୀ ଚରିତ,
କହିଥିଲି ପୁତ୍ର ତାର ବିନାଶ ନିଶ୍ଚିତ।
ଏ ଶ୍ଳୋକେ ଅଭେଦ ଦର୍ଶୀ ଜ୍ଞାନୀ ବିପରୀତେ
ବ୍ରହ୍ମଭାବ ଲାଭ କରି ଥାଆନ୍ତି ନିଶ୍ଚିତେ।
ସାଧନାରେ ମନ ମଳ ଗଲେ ଅପସରି
ଜୀବ ହୃଦେ ଶୁଦ୍ଧ ମନ ଉଠେ ପୁଣି ଝଳି।
ଶୁଦ୍ଧ ଚିତ୍ତେ ଆତ୍ମଜ୍ଞାନ ହେଲେ ପ୍ରତିଭାତ
ଜୀବର ଜୀବନେ ଆସେ ନବୀନ ପ୍ରଭାତ।
କରନ୍ତି ହୃଦୟେ ସିଏ ଏହି ଉପଲବ୍ଧି
ତାଙ୍କ ଆତ୍ମା ପରମାତ୍ମା ଏକ ନିରବଧି।''

Digitized by srujanika@gmail.com

# ଦ୍ୱିତୀୟ ଅଧ୍ୟାୟ

## ଦ୍ୱିତୀୟ ବଲ୍ଲୀ

**ବ୍ରହ୍ମାନୁସନ୍ଧାନ :**

**ପୁରମେକାଦଶଦ୍ୱାରମଜସ୍ୟାବକ୍ରଚେତସଃ ।**
**ଅନୁଷ୍ଠାୟ ନ ଶୋଚତି ବିମୁକ୍ତଶ୍ଚ ବିମୁଚ୍ୟତେ ।**
**ଏତଦ୍ୱୈତତ୍ ॥ ୧ ॥**

''ଶୁଦ୍ଧ ଜ୍ଞାନ ଘନ ଆତ୍ମା ଅଜନ୍ମା ନୃପତି,
ଏକାଦଶ ଦ୍ୱାର ଯୁକ୍ତ ପୁରେ ନିବସନ୍ତି ।
ତାଙ୍କୁ ଧ୍ୟାନ କରି ଜୀବ ହୁଏ ବୀତଶୋକ
ଦେହ-କର୍ମ-ବନ୍ଧ ଭାଙ୍ଗି ତରେ ମୃତ୍ୟୁଲୋକ ।
ଏହି ସେହି ଆତ୍ମା ବୋଲି ଜାଣିବୁ ନିଶ୍ଚିତ
ଯାହାକୁ ଜାଣିବା ପାଇଁ ତୁ ଆକୁଳ ଚିତ୍ତ ।'' ।୧।

''ଦେହକୁ ଗୋଟିଏ ପୁର କରି କଳପନା
ସଂଶିତ ଶ୍ଳୋକରେ ମୁହିଁ କରୁଛି ବର୍ଣ୍ଣନା
ପୁର ବାହାରକୁ କେହି କଲେ ଗତାଗତ,
ପୁରେ ରହିଥାଏ ଯେହ୍ନେ ଭିନ୍ନ ଭିନ୍ନ ପଥ,
ତେସନେ ଏ ଦେହ ପୁରେ ଏକାଦଶ ଦ୍ୱାର,
ଯହିଁରେ ଚାଲଇ ନିତି ଜଗତ ବେଭାର ।

ବେନି ଚକ୍ଷୁ ବେନି କର୍ଣ୍ଣ ବେନି ନାସାପୁଟ
ନାଭି ଶିଶ୍ନ ମଳଦ୍ୱାର ଆଉ ପୁଣି ମୁଖ ।
ଶିର ପରେ ବ୍ରହ୍ମ ରନ୍ଧ୍ର ଏଇ ଏକାଦଶ
ଦେହ ରୂପ ପୁରର ଏ ଦୁଆର ଅବଶ୍ୟ ।

Digitized by srujanika@gmail.com



ଦେହର ପ୍ରତିଟି ଅଙ୍ଗ କଲେ ବିଶ୍ଳେଷଣ
ଆମେ ଦେଖୁ କେଉଁ ଗୋଟି ନୁହଁଇ ଚେତନ।
ପ୍ରତ୍ୟେକଟି ଜଡ଼, ଯେଣୁ ଭୋକ୍ତା କେ ନୁହଇ
ଦେହ ତ ଦେହର ଭୋକ୍ତା ହୋଇ ନ ପାରଇ।
କିଏ ସେହି, ଯାହା ପାଇଁ ଏ ଘର ଦୁଆର
ଯାହା ପାଇଁ ଚାଲେ ଏତେ ଜଗତ ବେଭାର।
ଏ ପୁର ମାଲିକ କେବେ ଏ ପୁର ସହିତ
ଏକ ସାଥେ ଜନ୍ମ ନୋହିଥିବେ କଦାଚିତ।
ଘରର ମାଲିକ ଆଗେ ପରେ ମାଲିକାନା;
ମାଲିକ ବିହୁନେ ପୁର ଖାଲି ଭୂତ ଖାନା।
ତେଣୁ ଯେ ମାଲିକ ଗୃହେ କରନ୍ତି ନିବାସ,
ଦେହ ସାଥେ ନାହିଁ ତାଙ୍କ ଉତ୍ପତ୍ତି ବିନାଶ।
ସେ ନିତ୍ୟ ଶାଶ୍ୱତ ଆତ୍ମା, ସେ ଜନ୍ମ ରହିତ
ଦେହ ଇନ୍ଦ୍ରିୟରେ ସେହି ନୁହନ୍ତି ଜଡ଼ିତ।
ତାଙ୍କୁ ଧ୍ୟାନ କଲେ ଚିତ୍ତେ ନିର୍ମଳ ବୁଦ୍ଧିରେ
ଦେହ-କର୍ମ-ବନ୍ଧୁ ମୁକ୍ତି ମିଳଇ ଅଚିରେ।''

**ହଂସଃ ଶୁଚିଷଦ୍ ବସୁ ରନ୍ତ ରିକ୍ଷସ**
**ହୋତା ବେଦିଷଦତିଥିର୍ଦ୍ଦୁରୋଣସତ୍**
**ନୃଷଦ୍ବରସଦୃତସଦ୍ବ୍ୟୋମସଦବ୍ଜା**
**ଗୋଜା ଋତଜା ଅଦ୍ରିଜା ଋତଂ ବୃହତ୍। ॥ ୨ ॥**

''ସୂର୍ଯ୍ୟ ରୂପେ ଭ୍ରମନ୍ତି ସେ ଦ୍ୟୁଲୋକ ଅଙ୍ଗନେ,
ବାୟୁ ରୂପେ ଚଳାଚଳ କରନ୍ତି ଗଗନେ।
ଅଗ୍ନି ରୂପେ ପୃଥିବୀରେ କରନ୍ତି ନିବାସ
ଅତିଥି ରୂପରେ ଗୃହ ତାଙ୍କରି ଆବାସ।
ମଣିଷ ଦେବତା ଆଦି ସର୍ବ ଚରାଚରେ
ଅବସ୍ଥାନ କରନ୍ତି ସେ ନିତ୍ୟ ନିରନ୍ତରେ।
ଜଳରେ ସେ ଜାତ ସେହି ଜାତ ପୃଥିବୀରେ
ଯଜ୍ଞରେ ସେ ଜାତ, ସେହି ଜାତ ଶସ୍ୟାଦିରେ।
ସେହି ଆତ୍ମା ସତ୍ୟ ସେହି ଅଟନ୍ତି ମହତ,
ଅଦ୍ୱିତୀୟ ସର୍ବବ୍ୟାପୀ ସେହି ସର୍ବଗତ॥ ୨ ॥''

Digitized by srujanika@gmail.com

"ସୁନାପାତ୍ର ସ୍ୱର୍ଣ୍ଣେ ପରିବ୍ୟାପ୍ତ ଯେଉଁପରି
ବିଶ୍ୱେ ପରିବ୍ୟାପ୍ତ ଏକ ଆତ୍ମା ସେହିପରି।
ଆତ୍ମା ସର୍ବମୟ ସର୍ବସ୍ଥିତ ସର୍ବବ୍ୟାପୀ
କେବଳ ସେ ଦେହସ୍ଥିତ ନୁହନ୍ତି କଦାପି।
ଗମନ କରନ୍ତି ଆତ୍ମା ସଭିଙ୍କ ଭିତରେ
ତେଣୁ 'ହଂସ' ବୋଲି ସିଏ ବିହିତ ବିଶ୍ୱରେ।
ତାଙ୍କ ସର୍ବବ୍ୟାପକତା କହୁଛି ଏ ଶ୍ଳୋକେ,
ସୂର୍ଯ୍ୟ ରୂପେ ସେ ଯାଆନ୍ତି ଅଖିଳ ଦ୍ୟୁଲୋକେ।
ଚଳନ୍ତି ସେ ଶୁଚିମନ୍ତ ସୂର୍ଯ୍ୟଙ୍କ ପରାୟେ
ତେଣୁ ତାଙ୍କୁ 'ଶୁଚିସତ' ବୋଲି କୁହାଯାଏ।
ସର୍ବାଶ୍ରୟ ଦାତା ରୂପେ ରହିଛନ୍ତି ଯେଣୁ
ଏ ଆତ୍ମାଙ୍କୁ 'ବସୁ' ବୋଲି କୁହାଯାଏ ତେଣୁ।

ବାୟୁ ରୂପେ ଅନ୍ତରିକ୍ଷେ ଯେଣୁ ସେ ଚଳନ୍ତି
'ଅନ୍ତରିକ୍ଷ ସଦ୍' ବୋଲି ତାହାଙ୍କୁ କହନ୍ତି।
ଅଗ୍ନି ସ୍ୱରୂପ ସେ ବୋଲି କୁହାଯାଏ 'ହୋତା',
ପୃଥିବୀ ବେଦୀରେ ସେ ତ ଯଜ୍ଞାଦିର ଭୋକ୍ତା।
ପୃଥିବୀ ବେଦୀରେ ଯେଣୁ ରହନ୍ତି ନିରତେ
"ବେଦିଷଦ୍" ବୋଲି ତାଙ୍କୁ କହନ୍ତି ଜଗତେ।
ସେ ଅତିଥି-ସୋମ ହୋଇ କଳସୀରେ ସ୍ଥିତ
ସେ ପାଇଁ 'ଦୁରୋଣସଦ୍' ବୋଲି ସେ କଥିତ।
ଅଥବା ଅତିଥି ରୂପେ ରହନ୍ତି ଭବନେ
'ଅତିଥି ଦୁରୋଣ ସନ୍ତୁ' କହିଥାନ୍ତି ଜନେ।

ଯେ ହେତୁ ଯାଆନ୍ତି ସେହି ମଣିଷ ଭିତରେ
ସେ ପାଇଁ 'ନୃଷଦ୍' ବୋଲି କହନ୍ତି ସକଳେ।
ଦେବତାଙ୍କ ଭିତରେ ସେ ଯାଇଛନ୍ତି ଯେଣୁ
'ବରସଦ୍' ବୋଲି ତାଙ୍କୁ କୁହାଯାଏ ତେଣୁ।
ସତ୍ୟ ବା ଯଜ୍ଞରେ ଯେଣୁ କରନ୍ତି ଗମନ
'ଋତସଦ୍' ବୋଲି ସିଏ ହୁଅନ୍ତି ଗଣନ।
ଆକାଶେ ଚଳନ୍ତି ବୋଲି ସିଏ 'ବ୍ୟୋମ ସଦ୍',
ସର୍ବତ୍ର ଗମନକାରୀ ଜାଣଇ ଜଗତ।

Digitized by srujanika@gmail.com



ଜଳେ ଶଙ୍ଖ ଶିପ ମତ୍ସ୍ୟ ମକରାଦି ରୂପେ
ଉତ୍ପନ୍ନ ବୋଲି ସେ 'ଅବ୍ଜା' ଅଟନ୍ତି ସ୍ୱରୂପେ।
ପୃଥିବୀରେ ଯବ ଶସ୍ୟ ରୂପେ ସେ ଉତ୍ପନ୍ନ
ତେଣୁ ତାଙ୍କୁ 'ଗୋଜା' ବୋଲି କହିଥାନ୍ତି ଜନ।
ଯଜ୍ଞାଙ୍ଗ ରୂପରେ ଯେଣୁ ତାଙ୍କରି ଉତ୍ପତ୍ତି
ସେଥିପାଇଁ ତାଙ୍କୁ ଲୋକେ 'ଋତଜା' କହନ୍ତି।

ନଦୀ ରୂପେ ପର୍ବତରୁ ଯେଣୁ ସେହି ଜାତ,
'ଅଦ୍ରିଜା' ନାମରେ ତେଣୁ ଜଗତେ ବିଖ୍ୟାତ।
ସଭିଙ୍କର ଆତ୍ମା ବୋଲି ସଭିଙ୍କ କାରଣ
ସେ 'ଋତ' ମହତ ନିତ୍ୟ ଆଦି ନାରାୟଣ।

ଏ ଶ୍ଳୋକ ତାତ୍ପର୍ଯ୍ୟ ଏହି ଆତ୍ମା ସର୍ବସ୍ଥିତ,
ସବୁ ବଦଳଇ ଆତ୍ମା ଅପରିବର୍ତ୍ତିତ।
ସର୍ବବ୍ୟାପୀ ଏକ ଆତ୍ମା ଜଗତେ ସବୁଠି,
ଆତ୍ମାଙ୍କର କିଛି ଭେଦ ନ ଅଛି କେଉଁଠି।

ବାବୁ ସାର କଥା ଏଇ ରଖିଥିବୁ ମନେ,
ବିଚାର କରିବୁ ପୁଣି ହୃଦେ ସଂଗୋପନେ।
ଦେହ ଅଭିମାନୀ ଜୀବ ଦେହେ ଯେଉଁ ଆତ୍ମା
ଅଖିଳରେ ପରିପୂର୍ଣ୍ଣ ସେହି ପରମାତ୍ମା।''

**ଊର୍ଦ୍ଧ୍ୱଂ ପ୍ରାଣମୁନ୍ନୟତ୍ୟପାନଂ ପ୍ରତ୍ୟଗସ୍ୟତି।**
**ମଧ୍ୟେ ବାମନମାସୀନଂ ବିଶ୍ୱେ ଦେବା ଉପାସତେ ।।୩।।**

''ପ୍ରାଣ ବାୟୁକୁ ଯେ ଊର୍ଦ୍ଧ୍ୱେ କରନ୍ତି ପ୍ରେରଣ,
ଅପାନ ବାୟୁକୁ ନିମ୍ନ ଦେଶକୁ କ୍ଷେପଣ,
ହୃଦୟ କମଳାକାଶେ ସ୍ଥିତ ଯେ ବାମନ
କରନ୍ତି ସକଳ ଦେବେ ତାଙ୍କରି ପୂଜନ ।।୩।।''

''ଦେହ-ପୁରେ ସ୍ୱାମୀ ରୂପେ ଯେ ଆତ୍ମା ରହନ୍ତି,
ଦେହର ସେ ଯେଉଁ ଯେଉଁ କର୍ମ ଆଚରନ୍ତି,
ଏଠାରେ କେତୋଟି ଶ୍ଳୋକେ ତାର ବିବରଣ
କହୁଅଛି ପୁତ୍ର ତାହା କର ତୁ ଶ୍ରବଣ।

Digitized by srujanika@gmail.com

ପାଞ୍ଚ ଭାଗେ ବିଭକ୍ତ ଯେ ଜୀବର ଏ ପ୍ରାଣ
ପ୍ରାଣ ଅପାନ ସମାନ ଉଦାନ ଓ ବ୍ୟାନ।
ଆଉ ପୁଣି ପଞ୍ଚ ଉପପ୍ରାଣ ଅଛି ରହି,
ଦେହେ ପ୍ରତ୍ୟେକର କର୍ମ ପୃଥକ ଅଟଇ।

ଏକ ମୁଖ୍ୟ ପ୍ରାଣ ଧରି ଦଶଗୋଟି ନାମ
ବୃତ୍ତି ଭେଦେ କରିଥାନ୍ତି, ଦଶବିଧ କାମ।
'ପ୍ରାଣ' କରେ ଶ୍ୱାସ କର୍ମ, 'ଅପାନ' ଯେ ରହି
ଦେହାଦିରୁ ମଳମୂତ୍ର ବର୍ଜନ କରଇ।
'ସମାନ'ରେ ଖାଦ୍ୟ ସବୁ ହୁଏ ପରିପାକ
'ଉଦାନ' ବାୟୁରେ ମୁଖେ ସ୍ଫୁରଇ ତ ବାକ।
'ବ୍ୟାନ'ରେ ହୁଅଇ ଦେହେ ରକ୍ତ ସଞ୍ଚାଳନ
ଦେହେ ନାନା ଭେଦେ କର୍ମ ହୁଅଇ ଏସନ।

କିନ୍ତୁ ଶ୍ୱାସ ପ୍ରଶ୍ୱାସ ତ ନ ବୁଝାଏ ପ୍ରାଣ,
ଜୀବ ଦେହେ ଏ ଜୀବନୀ ଶକ୍ତି ବୋଲି ଜାଣ।
ପ୍ରାଣର ବିବିଧ କ୍ରିୟା ଭିତରୁ ଗୋଟିଏ
ଶ୍ୱାସ କ୍ରିୟା ଏକ ବୋଲି କହନ୍ତି ଜ୍ଞାନୀଏ।

ବାବୁ ଏ ବାୟୁଙ୍କ ନାହିଁ ସ୍ୱତନ୍ତ୍ର ଶକତି
ଆତ୍ମ-ଶକ୍ତି ବଳେ ସବୁ ସ୍ୱକର୍ମ କରନ୍ତି।
ପ୍ରାଣ ଓ ଅପାନ ବାୟୁ ଯହିଁ ସମ୍ମିଳିତ
ସେହି ମଧ ଭାଗେ ହୃଦେ ଆତ୍ମା ଅବସ୍ଥିତ।
ସବୁ ପ୍ରାଣବାୟୁ ଆଉ ଇନ୍ଦ୍ରିୟ ନିକର
ବରଣୀୟ ଆତ୍ମାଙ୍କର ପୂଜାରେ ତତ୍ପର।
ପ୍ରଜାଏ ଭେଟନ୍ତି ଯେହ୍ନେ ରଜାଙ୍କୁ ଆଦରେ,
ନାନାବିଧ ଉପହାରମାନ ଧରି କରେ,
ରୂପ ରସାଦିର ଅନୁଭୂତିମାନ ଧରି,
ଇନ୍ଦ୍ରିୟେ ଆତ୍ମାଙ୍କୁ ଭେଟି ଦିଅନ୍ତି ସେପରି।
ଆତ୍ମାଙ୍କ ସକାଶେ ପ୍ରାଣ ଇନ୍ଦ୍ରିୟେ ଓ ମନ
ରହନ୍ତି ସତତ କର୍ମଶୀଳ ସଚେତନ।
ଆତ୍ମାଙ୍କ ହୁକୁମ ପାଇ ଏହିମାନେ ସବୁ
ସଦା କର୍ମରତ, ଭାବି ଆତ୍ମା ତାଙ୍କ ପ୍ରଭୁ।"

Digitized by srujanika@gmail.com



## ଦେହସ୍ଥ ଆତ୍ମା ହେଉଛି ଜୀବନ :

**ଅସ୍ୟ ବିସ୍ରଂସମାନସ୍ୟ ଶରୀରସ୍ଥସ୍ୟ ଦେହିନଃ ।**
**ଦେହାଦ୍ ବିମୁଚ୍ୟମାନସ୍ୟ କିମତ୍ର ପରିଶିଷ୍ୟତେ ।**
**ଏତଦ୍ ବୈ ତତ୍ ॥୪॥**

"ଶରୀରସ୍ଥ ଆତ୍ମା ହୋଇ ଶରୀରୁ ବିଚ୍ଛିନ୍ନ
ଦେହ ମୁକ୍ତି ଲଭି କଲେ ଅନ୍ୟତ୍ର ଗମନ,
ତେବେ ଦେହେ ଅବଶିଷ୍ଟ କିଛି ନ ରହଇ,
ପୁତ୍ର ଜାଣି ରଖ ଏହି ସେହି ତ ଅଟଇ ॥ ୪ ॥

ଜୀବ ହୃଦାକାଶେ ଯେଉଁ ଆତ୍ମା ଅବସ୍ଥିତ
ଦେହର ସକଳ କ୍ରିୟା କରାନ୍ତି ସେହି ତ ।
ଦେହର ଇନ୍ଦ୍ରିୟ ମନ ବୁଦ୍ଧି କରଣାଦି
ଆତ୍ମା ବଳେ ନିଜ କର୍ମ ଥାଆନ୍ତି ସମ୍ପାଦି ।
ଏ ଆତ୍ମା ଶରୀରୁ ଯେବେ ମୁକତି ଲଭଇ,
ଦେହେ ଅବଶିଷ୍ଟ ଆଉ କିଛି ନ ରହଇ ।
କିଛି ରହେ ନାହିଁ ପିଣ୍ଡ ପାଲଟଇ ଜଡ଼,
ଗାଆଁ ଲୋକ କହେ, "ଆରେ ଶୁଖା ଖଡ଼ଖଡ଼ ।"
ପ୍ରାଣବାୟୁ କରେ ନାହିଁ ଆଉ ଚଳାଚଳି.
କାର୍ଯ୍ୟକ୍ଷମ ନ ହୁଅନ୍ତି ଇନ୍ଦ୍ରିୟେ ସେପରି ।
ପୁର-ସ୍ୱାମୀ ପୁର ଛାଡ଼ି ହୋଇଲେ ଅନ୍ତର
କି ଦୁର୍ଦ୍ଦଶା ହୋଇଥାଏ ପୁରବାସୀଙ୍କର ?
ତେସନେ ଏ ଦେହୁଁ ଆତ୍ମା ଲଭିଲେ ମୁକତି
ପ୍ରାଣ ଓ ଇନ୍ଦ୍ରିୟେ ସବୁ ହରାନ୍ତି ଶକତି ।
ନଷ୍ଟ ଭ୍ରଷ୍ଟ ହୁଏ ପୁର ପଚି ସଢ଼ି ଯାଏ
ଦେହ-ପୁର ଛାଡ଼ି ଯେବେ ଆତ୍ମା ଚାଲିଯାଏ ।

**ନ ପ୍ରାଣେନ ନାପାନେନ ମର୍ତ୍ତ୍ୟୋ ଜୀବତି କଶ୍ଚନ ।**
**ଇତରେଣ ତୁ ଜୀବନ୍ତି ଯସ୍ମିନ୍ନେତାବୁପାଶ୍ରିତୌ ॥୫॥**

Digitized by srujanika@gmail.com

"ପ୍ରାଣେ ବା ଅପାନେ ମର୍ତ୍ତ୍ୟ କଉଣସି ଜନ,
ଜୀବନ ଧାରଣ କରେ ନାହିଁ କଦାଚନ।
ବରଂ ଯହିଁ ଏହି ହୋଇ ଅଛନ୍ତି ଆଶ୍ରିତ,
ଯିଏ ପୁଣି ନିଃସନ୍ଦେହେ ଦେହ ଅତିରିକ୍ତ,
ସେ ଆତ୍ମାଙ୍କ ଦ୍ୱାରା ହୁଏ ଜୀବନ ଧାରଣ,
ତାହାଙ୍କୁ ତୁ ଭଲ ଭାବେ ଜାଣ ରେ ନନ୍ଦନ ॥୫॥"

"ପ୍ରାଣାପାନ ବିନା ଦେହ ନ ହୁଏ ବିନାଶ
ଯେ ଯାଏଁ ସେ ଦେହେ ଆତ୍ମା କରିଥାନ୍ତି ବାସ।
ଘରର ମାଲିକ ପାଇଁ ଘର ଥାଏ ରହି,
ନ ରହିଲେ ସ୍ୱାମୀ ଘର ଭୁଷୁଡ଼ି ପଡ଼ଇ।
ପ୍ରାଣ ଓ ଅପାନ ବାୟୁ ଇନ୍ଦ୍ରିୟେ ଓ ମନ,
ଆତ୍ମାଙ୍କ ଇଙ୍ଗିତେ କର୍ମ କରନ୍ତି ସାଧନ।
ଏମାନେ ସମସ୍ତେ ଜଡ଼, ନୁହନ୍ତି ଚେତନ
ଶକ୍ତି ବିନା ସ୍ୱ ସ୍ୱ କର୍ମ କରିବେ କେସନ ?
ଇଟା ବାଲି ପାଣି ଆଉ ସିମେଣ୍ଟରେ ଘର
ତିଆରି ହୁଅଇ ବୋଲି ସଭିଙ୍କି ଗୋଚର।
ଏ ଉପକରଣମାନେ ନିଜେ ନିଜେ କଣ,
ମିଳିମିଶି ତୋଳା କାର୍ଯ୍ୟ କରନ୍ତି ସାଧନ ?
ନା ଆଉ କିଏ ସେ ଜଣେ ଦିଅଇ ଇଙ୍ଗିତ
ତା' ପାଇଁ ସକଳ କର୍ମ ହୁଏ ସମାହିତ ?

ସେପରି ଏ ପ୍ରାଣବାୟୁ ଇନ୍ଦ୍ରିୟେ ଓ ମନ
ଆତ୍ମାଙ୍କ ସକାଶେ କର୍ମ କରନ୍ତି ସାଧନ।
ଇଟା ବାଲି ପାଣି ପରି ଦଶ ପ୍ରାଣ ବାୟୁ
ଇନ୍ଦ୍ରିୟେ ଯେ ଦଶ ଗୋଟି ବୁଦ୍ଧି ମନ ଆଉ।
ସର୍ବେ ଜଡ଼, ଆତ୍ମା କିନ୍ତୁ ସଭିଠୁଁ ସ୍ୱତନ୍ତ୍ର
ଆତ୍ମାଙ୍କ ସକାଶେ କର୍ମଶୀଳ ସେ ସମସ୍ତ।
ଆତ୍ମାଙ୍କ ନିମନ୍ତେ ସର୍ବେ ହୋଇ ସୁସଂହତ,
ଏ ଦେହରେ କରିଥାନ୍ତି କର୍ମ ଅବିରତ।"

Digitized by srujanika@gmail.com

## ମୃତ୍ୟୁ ପରେ ଆତ୍ମାର ଗତି :

**ହନ୍ତ ତ ଇଦଂ ପ୍ରବକ୍ଷ୍ୟାମି ଗୁହ୍ୟଂ ବ୍ରହ୍ମ ସନାତନମ୍ ।**
**ଯଥା ଚ ମରଣଂ ପ୍ରାପ୍ୟ ଆତ୍ମା ଭବତି ଗୌତମ ॥ ୬ ॥**

"କହୁଅଛି ଏବେ ପୁଣି ପ୍ରିୟ ଶିଷ୍ୟ ମମ,
ସନାତନ ବ୍ରହ୍ମ କଥା, ଯା' ଗୁହ୍ୟ ପରମ ।
ମୃତ୍ୟୁ ପରେ ଆତ୍ମାଙ୍କର ହୁଏ ଯେଉଁ ଗତି
ସେ ସକଳ କଥା ଶୁଣ ସ୍ଥିର ରଖି ମତି ॥ ୬ ॥"

**ଯୋନିମନ୍ୟେ ପ୍ରପଦ୍ୟନ୍ତେ ଶରୀରତ୍ୱାୟ ଦେହିନଃ ।**
**ସ୍ଥାଣୁମନ୍ୟେଽନୁସଂୟନ୍ତି ଯଥାକର୍ମ ଯଥାଶ୍ରୁତମ୍ ॥ ୭ ॥**

"ନିଜ ନିଜ କର୍ମ ଆଉ ଜ୍ଞାନ ଅନୁସାରେ,
କୌଣସି କୌଣସି ଜୀବ ଏ ଭବ ସଂସାରେ
ଦେହ ପାଇଁ ଜରାୟୁରେ କରନ୍ତି ପ୍ରବେଶ,
ବାକି ସବୁ ହୋଇଥାନ୍ତି ସ୍ଥାବର ବିଶେଷ ॥ ୭ ॥"

"ମୃତ୍ୟୁ ପରେ ଜୀବର କି ହୁଅଇ ଅବସ୍ଥା
ଏ ଶ୍ଳୋକରେ ପୁତ୍ର ତୋତେ କହୁଛି ସେ କଥା ।
କେତେ ଜୀବ ନିଜ କର୍ମ ଜ୍ଞାନ ଅନୁସାରେ,
ପୁଣି ଶରୀରଧାରୀ ହୋଇବା ଆଶାରେ,
ପଶନ୍ତି ଜରାୟୁ ମଧ୍ୟେ, ବାକି ଜୀବଗଣ
ଲଭନ୍ତି ସ୍ଥାବର ଭାବ, ବୃକ୍ଷାଦି ଯେସନ ।"

**ଯ ଏଷ ସୁପ୍ତେଷୁ ଜାଗର୍ତ୍ତି କାମଂ କାମଂ ପୁରୁଷୋ ନିର୍ମିମାଣଃ ।**
**ତଦେବ ଶୁକ୍ରଂ ତଦ୍ବ୍ରହ୍ମ ତଦେବାମୃତମୁଚ୍ୟତେ ।**
**ତସ୍ମିଁଲ୍ଲୋକାଃ ଶ୍ରିତାଃ ସର୍ବେ ତଦୁ ନାତ୍ୟେତି କଶ୍ଚନ ।**
**ଏତଦ୍ୱୈ ତତ୍ ॥ ୮ ॥**

"ଆମେ ଶୋଇଯିବା ପରେ ଯେ ଜାଗ୍ରତ ରହି
ଏକ ଏକ କାମନାର ସପନ ରଚଇ,

Digitized by srujanika@gmail.com

ସେ ପୁରୁଷ ଶୁଦ୍ଧ ଦେହୀ ବ୍ରହ୍ମ ଯେ ଅଟନ୍ତି
ଅମୃତ ବୋଲି ସେ ପୁଣି କଥିତ ହୁଅନ୍ତି।
ବ୍ରହ୍ମାଣ୍ଡର ତିନିଲୋକ ତାଙ୍କଠି ଆଶ୍ରିତ
ଅତିକ୍ରମି ପାରେ ନାହିଁ ତାହାଙ୍କୁ କେହି ତ
ଏହି ସେହି ଆତ୍ମା ବୋଲି ଜାଣିବୁ କୁମର
ସେହି ନିତ୍ୟ ଅବିନାଶୀ ବ୍ରହ୍ମ ପରାତ୍ପର ॥୮॥"

"ଜାଗ୍ରତ ସ୍ୱପନ ଆଉ ସୁଷୁପ୍ତି କାଳରେ,
ବ୍ରହ୍ମ ତିନି ଅବସ୍ଥାରେ ସାକ୍ଷୀ ସ୍ୱରୂପରେ,
ସେ ବ୍ରହ୍ମ ପୁରୁଷ ସଦା ଥାଆନ୍ତି ଜାଗ୍ରତ
ପ୍ରାଣ ମନ ଇନ୍ଦ୍ରିୟାଦି ହେଲେ ବି ସୁପତ।
ଗାଢ଼ ନିଦ୍ରା କାଳେ ଜୀବ ବ୍ରହ୍ମେ ନ ବସଇ,
ଏତେବେଳେ ବ୍ରହ୍ମ ସୁଖ ସେ ଅନୁଭବଇ।
ଅଜ୍ଞାନର ଆବରଣ ଥାଏ କିନ୍ତୁ ତାର,
ତେଣୁ ବ୍ରହ୍ମ ଉପଲବ୍ଧି ହୁଏନା ତାହାର।
ସମାଧିରେ ଥାଏ ନାହିଁ ଏହି ଆବରଣ
ଏତେବେଳେ ହୁଏ ତେଣୁ ବ୍ରହ୍ମ ଦରଶନ।
ଗାଢ଼ ନିଦ୍ରା କାଳେ ଜୀବ ଇନ୍ଦ୍ରିୟେ ଓ ମନ
ଦେହେ ଥାଇଁ କରିଥାନ୍ତି ବିଶ୍ରାମ ଗ୍ରହଣ।
ସେଥିପାଇଁ ବ୍ରହ୍ମ ସୁଖ ମିଳେ ଏଇ କାଳେ
ସୁଖହିଁ କେବଳ ସୁଖ ମିଳଇ ନିଦ୍ରାରେ।

ନାନାଦି ବିଷୟବସ୍ତୁ ଭରା ଏ ଜଗତେ
ଆମେ ଅନୁଭବ କରୁ କେବଳ ଜାଗ୍ରତେ।
ରୂପକୁ ପ୍ରକାଶ କରି ଦେଖଇ ନୟନ
ଶବ୍ଦକୁ ପ୍ରକାଶି କର୍ଣ୍ଣ କରଇ ଶ୍ରବଣ।
କିନ୍ତୁ ସ୍ୱପ୍ନେ ଇନ୍ଦ୍ରିୟାଦି ହେଲେ ବି ଶାୟିତ
ତଥାପି ଜଗତ ରୂପ ହୁଏ ପ୍ରକାଶିତ।

ସେତେବେଳେ କିଏ ତେବେ ଅଦୃଶ୍ୟରେ ରହି
ନାନାଦି ବିଷୟବସ୍ତୁ ପ୍ରକାଶ କରଇ?
ଯିଏ ଏ ସବୁକୁ ସ୍ୱପ୍ନେ କରାନ୍ତି ପ୍ରକାଶ
ନଚିକେତା ଜାଣ ସେହି ବ୍ରହ୍ମ ଅବିନାଶ।

Digitized by srujanika@gmail.com



ଅବସ୍ଥାକୁ ଅବସ୍ଥା ଯେ ଯାଆଇ ଆସଇ,
ଆତ୍ମାଙ୍କୁ ଅବସ୍ଥା ଭେଦ କିଛି ନ ଲାଗଇ।
ରାଜପଥ ପରେ ବତୀ ଜଳିବା ପରାୟେ
ତଳେ ଯିବା ଯାତ୍ରୀ ଭେଦେ ଉଦାସୀନ ଥାଏ।
ବରଯାତ୍ରୀ ଦଳ ଦେଖି ନ ଲଭେ ଆହ୍ଲାଦ,
ଶବ ଯାତ୍ରାରେ ବି ତା'ର ନ ଥାଏ ବିଷାଦ।
ପ୍ରକାଶର ପରିଧିକୁ ଯା' କିଛି ଆସଇ,
ବତୀ ତା' ସ୍ୱଭାବ ଧର୍ମେ ପ୍ରକାଶ କରଇ।
ଜୀବର ଅନ୍ତରେ ଆତ୍ମା ଥାଇ ସେ ପ୍ରକାରେ
କାହିଁ ଲିପ୍ତ ହୁଅନ୍ତିନି କେଉଁ ଅବସ୍ଥାରେ।
ତେଣୁ ସେହି ଶୁଦ୍ଧ ବୋଲି ଏଠାରେ କଥିତ
ଅମୃତ ନାମରେ ପୁଣି ସେହି ଅଭିହିତ।

ପ୍ରକାଶିତ ବସ୍ତୁ ଯେତେ ତାଙ୍କରି ଆଶ୍ରିତ
ତାଙ୍କ ବିନା ବସ୍ତୁର ତ ନ ଥାଏ ଅସ୍ତିତ୍ୱ।
ଜଗତର ଯେତେ ବସ୍ତୁ ଯେତେ ଅନୁଭବ,
ସେ ବ୍ରହ୍ମ ପ୍ରକାଶ ବିନା ସବୁ ଅସମ୍ଭବ।
ତେଣୁ ତାଙ୍କୁ ଟପି ଯାଇ ନପାରନ୍ତି କେହି,
ଭଲ ଭାବେ ଜାଣି ରଖ ପୁତ୍ର ଆତ୍ମା ସେହି।''

**ଅଗ୍ନିର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ**
**ରୂପଂ ରୂପଂ ପ୍ରତିରୂପୋ ବଭୂବ ।**
**ଏକସ୍ତଥା ସର୍ବଭୂତାନ୍ତରାତ୍ମା**
**ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ॥ ୯ ॥**

''ପୁତ୍ରରେ ଏକଇ ଅଗ୍ନି ପ୍ରବେଶି ଭୁବନେ,
ପ୍ରତିରୂପ ଅନୁରୂପ ହୁଅଇ ଯେସନେ,
ସର୍ବଭୂତେ ଏକ ଅନ୍ତରାତ୍ମା ସେହିପରି
ପ୍ରତି ଜୀବ ରୂପ ଅନୁରୂପ ଥାଏ ଧରି।
ଜୀବର ଅନ୍ତରେ ଆତ୍ମା ଅଛନ୍ତି ଯେପରି
ଜୀବନ ବାହାରେ ମଧ' ଛନ୍ତି ସେହିପରି ॥ ୯ ॥''

Digitized by srujanika@gmail.com

ଏକ ଆତ୍ମା ସର୍ବ ଦେହେ ଭିନ୍ନ ରୂପେ ସ୍ଥିତ
ଅଗ୍ନି ଉପମାରେ ଏଇ ଶ୍ଳୋକରେ କଥିତ ।
ଏକ ଅଗ୍ନି ଭିନ୍ନ ଭିନ୍ନ ଦାହ୍ୟ ପଦାର୍ଥରେ
ପ୍ରବେଶି ଯେସନେ ଭିନ୍ନ ଭିନ୍ନ ରୂପ ଧରେ ।

କଳ ପଙ୍ଖା ବଲ୍‌ବ ଫ୍ରିଜ ରିଫ୍ରେଜିରେଟର
ଏ ସର୍ଭିଁର ଭିନ୍ନ କ୍ରିୟା, ଭିନ୍ନ ପରସ୍ପର ।
ତଥାପି ସେ ସବୁ ମଧ୍ୟେ ବିଜୁଳି ଶକତି
କରାଏ ବିବିଧ କର୍ମ କ୍ରିୟା କରାମତି ।
ଏ ଉପକରଣମାନ ଭିନ୍ନତା କାରଣେ
ବାୟୁ ଜ୍ୟୋତି ଶୀତ ଉଷ୍ଣ ଅନୁଭୂତ ମନେ ।
ଭିନ୍ନ ରୂପ ବୁଦ୍ଧି ମନ ଯୁକ୍ତ ଏ ଶରୀରେ
ଅଭିନ୍ନ ଏକକ ଆତ୍ମା ଖେଳଇ ଏଥିରେ ।
ସେ ସଦା ନିର୍ଲିପ୍ତ ନିର୍ବିକାରୀ ସଦା ଏକ
ଭିନ୍ନ ଘଟେ ରହି ଜଣା ପଡ଼ନ୍ତି ଅନେକ ।

ରାମ ଶ୍ୟାମ ମଧୁ ଯଦୁ ଗୋପାଳ ଶଙ୍କର
ଦେହ ମନ ପ୍ରକୃତିରେ ଭିନ୍ନ ପରସ୍ପର
ପରସ୍ପର ମଧ୍ୟେ ଏହି ଭିନ୍ନତା କାରଣେ
ତାଙ୍କ ଆତ୍ମା ପରସ୍ପର ଭିନ୍ନ ଭାବୁ ମନେ ।
ପ୍ରତ୍ୟେକଙ୍କ ଦେହ ଧର୍ମ ଆରୋପି ଆତ୍ମାରେ
ସଭିଙ୍କ ପୃଥକ ଆତ୍ମା ଭାବୁନ୍ତୁ ବିଚାରେ ।
କିନ୍ତୁ ଦେହ ଇନ୍ଦ୍ରିୟାଦି ସର୍ବେ ନିରନ୍ତର
ଆତ୍ମାଙ୍କ ଆଶ୍ରିତେ ରହି ଥାଆନ୍ତି କେବଳ ।
ବଦଳିଲେ ଦେହ ଧର୍ମ ଆତ୍ମା ନ ବଦଳେ,
ଅପରିବର୍ତ୍ତିତ ରହିଥାଏ ନିରନ୍ତରେ ।

**ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ**
**ରୂପଂ ରୂପଂ ପ୍ରତିରୂପୋ ବଭୂବ ।**
**ଏକସ୍ତଥା ସର୍ବଭୂତାନ୍ତରାତ୍ମା**
**ରୂପଂ ରୂପଂ ପ୍ରତି ରୂପୋ ବହିଶ୍ଚ ॥୧୦॥**

Digitized by srujanika@gmail.com

"ଯେପରି ଏକ ହିଁ ବାୟୁ ପ୍ରାଣ ସ୍ୱରୂପରେ
ଦେହେ ରହି ପ୍ରତି ରୂପ ଅନୁରୂପ ଧରେ,
ସର୍ବଭୂତେ ଏକ ଅନ୍ତରାତ୍ମା ସେହିପରି
ପ୍ରତିରୂପ ଅନୁରୂପ ଦେହ ଥାଏ ଧରି।
ଦେହେ ଆତ୍ମା ପୁଣି ଦେହୁଁ ଭିନ୍ନ ସେ ବାହାରେ
ସୂକ୍ଷ୍ମତା ସକାଶେ ପରିବ୍ୟାପ୍ତ ଏ ପ୍ରକାରେ ॥ ୧୦ ॥

**ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁ-**
**ର୍ନ ଲିପ୍ୟତେ ଚାକ୍ଷୁଷୈର୍ବାହ୍ୟଦୋଷୈଃ।**
**ଏକସ୍ତଥା ସର୍ବଭୂତାନ୍ତରାତ୍ମା**
**ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ ॥ ୧୧ ॥**

"ହୋଇ ବି ଜଗତଚକ୍ଷୁ ଯେହ୍ନେ ସୂର୍ଯ୍ୟଠାରେ,
ଚକ୍ଷୁଗ୍ରାହୀ ଦୋଷାଦୋଷ ନ ଲାଗଇ ବାରେ,
ତେସନେ ଏକଇ ଆତ୍ମା ସର୍ବଭୂତେ ଥାଇ
ସଂସାର ଦୁଃଖରେ ଲିପ୍ତ ନ ହୁଅନ୍ତି କାହିଁ।
ଅନ୍ତରେ ଥାଇ ବି ସେହି ଅନ୍ତର ବାହାରେ,
ସଂସାର ଦୁଃଖ କି ତାଙ୍କୁ ଲିପ୍ତ କରିପାରେ ?" ॥ ୧୧ ॥

ଏକ ପରମାତ୍ମା ଯେଣୁ ସର୍ବଭୂତେ ସ୍ଥିତ,
ତେଣୁ ହେଉଥିବେ ସେହି ସୁଖେ ଦୁଃଖେ ଲିପ୍ତ-
ଏପରି ଆଶଙ୍କା ମନେ ନ ହୋଇବା ପାଇଁ
ସୂର୍ଯ୍ୟ କଥା କହି ଯମ ଦିଅନ୍ତି ବୁଝାଇ।

"ସୂର୍ଯ୍ୟଙ୍କ ସକାଶେ ସର୍ବେ କରନ୍ତି ଦର୍ଶନ,
ତେଣୁ ସେ କଥିତ ସର୍ବଲୋକଙ୍କ ନୟନ।
ପବିତ୍ର ଓ ଅପବିତ୍ର ପଦାର୍ଥ ଉପରେ
ସୂର୍ଯ୍ୟଙ୍କ ବିମଳ ରଶ୍ମି ପଡ଼େ ନିରନ୍ତରେ।
ସୂର୍ଯ୍ୟ କିନ୍ତୁ ନ ଘେନନ୍ତି ଦୋଷଗୁଣ କାର
ପ୍ରକାଶ କରନ୍ତି ମାତ୍ର ରହି ନିର୍ବିକାର।

Digitized by srujanika@gmail.com

ତେହ୍ନେ ଏକ ହୋଇ ମଧ ଆତ୍ମା ସର୍ବଦେହେ,
କା'ର ସୁଖ ଦୁଃଖେ ଲିପ୍ତ ନୁହଁ ନିଃସନ୍ଦେହେ।
ଶୁଚି ବା ଅଶୁଚି ଦ୍ରବ୍ୟ ପ୍ରକାଶିତ କରି,
ଶୁଦ୍ଧ ବା ଅଶୁଦ୍ଧ ସୂର୍ଯ୍ୟ ନୁହନ୍ତି ଯେପରି।

ଆତ୍ମା ପ୍ରତି ଜୀବ ଘଟେ ଥାଇ ସେହିପରି,
ନିଅନ୍ତି ନି କାହା ସୁଖ ଦୁଃଖକୁ ଆଦରି।
ବସ୍ତୁଧର୍ମ ଛୁଏଁ ନାହିଁ ସୂର୍ଯ୍ୟକୁ ଯେସନେ
ସୁଖେ ଦୁଃଖେ ଆତ୍ମା ଲିପ୍ତ ନୁହନ୍ତି ତେସନେ।''

### ଆତ୍ମଦର୍ଶୀ ହିଁ ନିତ୍ୟ ସୁଖୀ :

**ଏକୋ ବଶୀ ସର୍ବଭୂତାନ୍ତରାତ୍ମା**
**ଏକଂ ରୂପଂ ବହୁଧା ଯଃ କରୋତି।**
**ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରା-**
**ସ୍ତେଷାଂ ସୁଖଂ ଶାଶ୍ୱତଂ ନେତରେଷାମ୍ ॥୧୨॥**

''ଏକ ହୋଇ ଯେ ଅଟନ୍ତି ସବୁର ନିୟନ୍ତା,
ସଭିଙ୍କର ଅନ୍ତରାତ୍ମା ଯେ ବିଶ୍ୱକରତା,
ଅଦ୍ୱିତୀୟ ହୋଇ ଯିଏ ବହୁଧା ବିଭକ୍ତ
ଯେ ଧୀରେ ଦେଖନ୍ତି ତାଙ୍କୁ ହୃଦ ଅନ୍ତର୍ଗତ
ସେ ଶାଶ୍ୱତ ସୁଖ ଲାଭ କରନ୍ତି ଜୀବନେ,
ଇତର ଜନେ ସେ ସୁଖ ପାଇବେ କେସନେ ?'' ॥୧୨॥

''ସକଳଙ୍କୁ ନିଜ ବଶେ ଯେ ରଖି ପାରନ୍ତି
ତାଙ୍କୁ ବାବୁ 'ବଶୀ' ବୋଲି ପଣ୍ଡିତେ କହନ୍ତି।
ସେହିଥିଲେ ମାତ୍ର ଏହି ଜଗତ ରହଇ,
ତାଙ୍କ ବିନା ଜଗତଟା ଶୂନ୍ୟ ପାଲଟଇ।
ଆତ୍ମାରେ କେବଳ ହୁଏ ଜଗତ ପ୍ରତୀତ
ଆତ୍ମା ବିନା ସବୁ କିଛି ପ୍ରକାଶ ଅତୀତ।
ତେଣୁ 'ବଶୀ ଆତ୍ମା' କରେ ସବୁ ନିୟନ୍ତ୍ରଣ
ତାଙ୍କ ବିନା ନାହିଁ କିଛି ସୃଷ୍ଟି ବା ସୃଜନ।

Digitized by srujanika@gmail.com



ସେ ଆତ୍ମା କରନ୍ତି ସର୍ବହୃଦେ ଅବସ୍ଥାନ
ଏକ ସେହି ବହୁରୂପେ ସେ ପ୍ରତୀୟମାନ।
ଏ ଏକ ହୁଏନା ବହୁ, ମାତ୍ର ସେହି ଏକ
ଆତ୍ମା ଦ୍ୱାରା ପ୍ରକାଶିତ ହୁଅନ୍ତି ଅନେକ।
ତେଣୁ ଜଣାଯାଏ ଆତ୍ମ-ଚୈତନ୍ୟ ଯେସନେ
ନିଜକୁ ବିଭକ୍ତ କରିଛନ୍ତି ବହୁ ବର୍ଣ୍ଣେ ।
ଭିନ୍ନ ରୂପ ନାମ ଗୁଣ ଯେଣୁ ପ୍ରକାଶଇ
ଆମକୁ ଏ ଆତ୍ମା ତେଣୁ ବହୁତ ଲାଗଇ।
ତାହାଙ୍କୁ ଦୂରେ ନ ଦେଖି ଯେଉଁ ଧୀର ଜନେ,
ଭାବନ୍ତି ଆତ୍ମସ୍ଥ ରୂପେ ସ୍ଥିତ ହୃଦକଣେ,
ସେ ପରମ ତତ୍ତ୍ୱେ ପୁଣି ସ୍ୱରୂପ ନିଜର,
ବୋଲି ଅନୁଭବନ୍ତି ଯେ ହଦେ ନିରନ୍ତର
ସେ ଶାଶ୍ୱତ ସୁଖ ଭୋଗ କରନ୍ତି ଜୀବନେ,
ଇତର ଜନେ ସେ ସୁଖ ପାଇବେ କେସନେ ?''

**ନିତ୍ୟୋଽନିତ୍ୟାନାଂ ଚେତନଶ୍ଚେତନାନାମ୍**
**ଏକୋ ବହୂନାଂ ଯୋ ବିଦଧାତି କାମାନ୍ ।**
**ତମାତ୍ମସ୍ଥଂ ଯେ ଅନୁପଶ୍ୟନ୍ତି ଧୀରା–**
**ସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥ ୧୩॥**

''ଅନିତ୍ୟ ପଦାର୍ଥେ ଯିଏ ନିତ୍ୟ ସନାତନ,
ଚେତନଗଣଙ୍କ ମଧ୍ୟେ ଯେ ପୁଣି ଚୈତନ୍ୟ,
ଏକ ହୋଇ ମଧ୍ୟ ଯିଏ ସବୁ ପ୍ରାଣୀଙ୍କର
କର୍ମଫଳ ବିଧାନରେ ଅଟନ୍ତି ତତ୍ପର,
ସେ ପରମାତ୍ମାଙ୍କୁ ଯେଉଁ ଜ୍ଞାନୀ ଧୀର ଜନ,
ଆତ୍ମା ରୂପେ ନିଜ ହୃଦେ କରନ୍ତି ଦର୍ଶନ,
ସେ ଶାଶ୍ୱତ ଶାନ୍ତି ଲାଭ କରନ୍ତି ଜୀବନେ
ଅପରେ ଲଭନ୍ତି ନାହିଁ ସେ ସୁଖ ସପନେ'' ॥ ୧୩॥

ଦୁନିଆ ବଦଳି ଯାଏ କ୍ଷଣେ ପ୍ରତିକ୍ଷଣେ
କିଛି ସ୍ଥିର ନୋହେ ବାବୁ ଏ ବିଶ୍ୱ ଭୁବନେ।

Digitized by srujanika@gmail.com

ଭିନ୍ନ ରୂପାକୃତି ବସ୍ତୁ ଯା' ଦେଖୁ ଏ କ୍ଷଣେ
ବଦଳି ଯାଉଚି ଅଜାଣତେ ପ୍ରତିକ୍ଷଣେ ।
ଜୀବନ ତମାମ ଆମ ଶରୀର ତେସନେ
ବଦଳି ଯାଉଛି ଆରେ ପୁତ୍ର ପ୍ରତିକ୍ଷଣେ ।
ନାମ ରୂପ ଗୁଣଯୁକ୍ତ ଅନିତ୍ୟ ସଂସାର
ବଦଳଇ ପ୍ରତିକ୍ଷଣେ ବିଚିତ୍ର ପ୍ରକାର ।
ପ୍ରତି ଦେଶ କାଳ ବସ୍ତୁ ବ୍ୟକ୍ତି ପରିସ୍ଥିତି
ନୋହି ସ୍ଥିର ବଦଳଇ ନିଇତି ନିଇତି ।
ଛାଇ ସମ କ୍ଷଣସ୍ଥାୟୀ ସଂସାର ବଦଳେ
ନିତ୍ୟ ସନାତନ ଏକ ବ୍ରହ୍ମ ସତ୍ତାପରେ ।
ସିନେମା ପରଦା ଯେହ୍ନେ ସ୍ଥିର ଅଚଞ୍ଚଳ,
ଆସେ ଯାଏ ତହିଁ ନାନା ଚିତ୍ର ମନୋହର ।
ନରନାରୀ ଜୀବଜନ୍ତୁ ପାହାଡ଼ ସରିତ
ନିରେଖି ଦର୍ଶକ ଚିତ୍ତ ହୁଅଇ ମୋହିତ ।
ସ୍ଥିର ଧଳା ପରଦାଟି ନଥିଲେ ପଛରେ
ଘଟି ପାରନ୍ତା କି ଏତେ ଦୃଶ୍ୟ ତାହାପରେ ?
ନାହିଁ ଯଦି ସ୍ଥିର ନିତ୍ୟ ମହୋଦଧି ତଟ
ହୁଅନ୍ତା କି ଏତେ ଢେଉ ଲହରୀ ପ୍ରକଟ ?
ଆଧାର ସ୍ୱରୂପେ ରଜ୍ଜୁ ଯେବେ ନାହିଁ ପଡ଼ି,
ମନେ ମିଥ୍ୟା ସର୍ପ ଭ୍ରାନ୍ତି କେହ୍ନେ ହେବ ଗଢ଼ି ?

ତେସନେ ବଦଳୁଥିବା ଅନିତ୍ୟ ସଂସାର
ସମ୍ଭବ କେବଳ ପାଇଁ କୂଟସ୍ଥ ଆଧାର ।
ସ୍ଥିର ଶକ୍ତ ନଦୀ ଶଯ୍ୟା ଆଧାର ନପାଇ
ନାଚି ନାଚି ଝରଣା କି କେବେ ପାରେ ଧାଇଁ ?
କଳା ମେଘେ ଝଲେ ସିନା ସେ ବିଦ୍ୟୁତ-ପ୍ରଭା
ଧଳା ଫୁଲେ ଶୋଭେ ଯେହ୍ନେ ଘନକୃଷ୍ଣ ଗଭା ।
ବ୍ରହ୍ମ ତ ସର୍ବଦା ସ୍ଥିର ପରଦା ଯେସନେ
ତହିଁ ପରେ ଏ ସଂସାର ନାଚେ ପ୍ରତିକ୍ଷଣେ ।

ପୁଣି ଜ୍ଞାନ ଚେତନାରେ ସେହି ଯେ ଚେତନ
ତାଙ୍କ ସ୍ପର୍ଶେ ଜଡ଼ ହୋଇ ଉଠେ ସଚେତନ ।

Digitized by srujanika@gmail.com



ଲୁହା ଖଣ୍ଡ ଛୁଇଁ ଯେବେ ପୋଡ଼ିଯାଏ ହାତ,
ତେବେ ତ ସହଜେ ଆମେ ହୋଇଥାଉ ଜ୍ଞାତ–
ଅଗ୍ନି ସଂସ୍ପର୍ଶରେ ଆସି ଲୁହାର ଏ କର୍ମ,
ଯେହେତୁ ଉଷ୍ଣତା ନୁହେଁ ଲୁହାର ଧରମ।

**ତଦେତଦିତି ମନ୍ୟନ୍ତେଽନିର୍ଦ୍ଦେଶ୍ୟଂ ପରମଂ ସୁଖମ୍ ।**
**କଥଂ ନୁ ତଦ୍ୱିଜାନୀୟାଂ କିମୁ ଭାତି ବିଭାତି ବା ॥ ୧୪ ॥**

"ଅନିର୍ଦ୍ଦେଶ୍ୟ ସେ ପରମ ସୁଖକୁ ଯୋଗୀଏ
ଅନୁଭବି କହିଥାନ୍ତି, "ତାହା ହିଁ ତ ଇଯେ"।

ସେ ସୁଖ ସ୍ୱରୂପ ବ୍ରହ୍ମ ଆପେ ପ୍ରକାଶିତ,
ଅଥବା ହୁଅନ୍ତି ଅନ୍ୟ ଆଲୋକେ ବିଦିତ?
କହ ତାହା ମୁହିଁ ଜାଣି ପାରିବି କେସନେ
ଉପଲବ୍ଧି ଯା' କରନ୍ତି ହୃଦେ ଯୋଗୀଜନେ।"

"ହେ ଯମ ରାଜନ, ତୁମେ ଯାହା ଗଲ କହି,
ମୋ ବାଳୁତ ବୁଦ୍ଧି କିଛି ଧରି ନ ପାରଇ।
କହ, ସୁଖ ସ୍ୱରୂପ ଯେ ହୋଇଛନ୍ତି କେହି,
ଅନୁଭବି ପାରିଛନ୍ତି ଏ ସୁଖକୁ ସେହି।
ପୁଣି ଏ ସୁଖକୁ 'ଅନିର୍ଦ୍ଦେଶ୍ୟ' ବୋଲି କହ,
ସେଲାଗି ଅନ୍ତରେ ମୋର ଜାଗଇ ସଂଶୟ।
ସେ ସୁଖ କି ଆପେ ଆପେ ପ୍ରକାଶ ଅନ୍ତରେ?
ଅବା ପ୍ରକାଶିତ ଅନ୍ୟ କାହା ସାହାଯ୍ୟରେ?
ବ୍ରହ୍ମ ସ୍ୱପ୍ରକାଶ ଅବା ବୁଦ୍ଧିରେ ହୁଅନ୍ତି?
ଭାବିଲେ ନିଶ୍ଚିତେ ଭ୍ରମି ଯାଉଅଛି ମତି।

ମୋର କ୍ଷୁଦ୍ର ସୀମାୟିତ ବୁଦ୍ଧିରେ କିପରି
ଅସୀମ ଆତ୍ମାକୁ ମୁହିଁ ପାରିବି ବା ଧରି?
ବୁଦ୍ଧି ଜଡ଼, ଏଇ ଜଡ଼ ବୁଦ୍ଧି ସାହାଯ୍ୟରେ
ଚୈତନ୍ୟକୁ କେମନ୍ତେ ଜାଣିପାରିବି ଅନ୍ତରେ?
ସେ ପାଇଁ ସଂଶୟ ଜାଗେ ଚିତ୍ତେ ବାର ବାର
ବ୍ରହ୍ମଙ୍କ ପ୍ରକାଶ ହୃଦେ ହେବ କି ପ୍ରକାର?"

Digitized by srujanika@gmail.com

ନଚିକେତା ହୃଦୟର ଆକୁଳ ମିନତି
ଶୁଣି ବୁଝାଇଲେ ତାଙ୍କୁ ସ୍ନେହେ ଜନ୍ତୁପତି
'ବ୍ରହ୍ମ ପ୍ରକାଶିବେ ନିଶ୍ଚେ ହୃଦୟେ ତୋହରି,
କିନ୍ତୁ ନୁହେଁ ଜଡ଼ ବସ୍ତୁ ହୁଅଇ ଯେପରି।
ସ୍ୱପ୍ରକାଶ ଯିଏ ତାଙ୍କ ପ୍ରକାଶ ନିମନ୍ତେ
ଅନ୍ୟବସ୍ତୁ ପ୍ରୟୋଜନ ନୁହଁଇ ଜଗତେ।
ସୂର୍ଯ୍ୟଙ୍କ ପ୍ରକାଶ ପାଇଁ ନୁହେଁ ପ୍ରୟୋଜନ
ପ୍ରଦୀପ ବା ଅନ୍ୟ କିଛି ବସ୍ତୁ ପ୍ରଜ୍ୱଳନ।

ତେବେ ସ୍ୱପ୍ରକାଶ ଆତ୍ମବସ୍ତୁ ଆମ୍ଭେମାନେ
ଯେଣୁ ଅବିରତେ ରଖି ନ ପାରୁ ଧିଆନେ,
ତେଣୁ ସେହି ଅପ୍ରକାଶ ସଦା ଆମ ପାଇଁ
ପ୍ରକାଶ ବା ଅପ୍ରକାଶ ଆତ୍ମାଙ୍କର ନାହିଁ।

ଆମେ ଯଦି ଦେଖି ସବୁ ନ ଦେଖିବା କିଛି,
ତେବେ ବ୍ରହ୍ମ ଉପଲବ୍ଧି ହୋଇବ କେମିତି ?
ଯା' କିଛି ପ୍ରକାଶ ଦେଖୁଁ ଆମ ଏ ନୟନେ
ସବୁ ବ୍ରହ୍ମ ବୋଲି ସ୍ପଷ୍ଟ ନ ହୁଅଇ ମନେ।
ତେଣୁ ବ୍ରହ୍ମ ଅପ୍ରକାଶ ଆମରି ନିକଟେ,
ଦେଖି ନଜାଣିଲେ କେବେ କାହିଁ ଭ୍ରାନ୍ତି କଟେ ?
ଆମେ ଯେତେ ଯାହା ଦେଖୁଁ ଆମ ଚଉପାଶ
ଆମ ପାଶେ ହୁଏ ସେହି ସବୁର ପ୍ରକାଶ।
କିନ୍ତୁ ସେ ସବୁର ଏହି ପ୍ରକାଶ ଯା'ହୁଏ
ସେ ବ୍ରହ୍ମ-ପ୍ରକାଶ ଛଡ଼ା ଆଉ କିଛି ନୁହେଁ।

ପ୍ରକାଶ ସ୍ୱରୂପ ବ୍ରହ୍ମ-ସତ୍ତାର ଉପରେ,
ବସ୍ତୁ ଆରୋପିତ ହୋଇ ନାନା ରୂପ ଧରେ।
ଏ ବ୍ରହ୍ମ ପ୍ରକାଶ ମଧ୍ୟେ ଯେତେ ଯା'ବୈଚିତ୍ର୍ୟ
ଆମରି ଦୃଷ୍ଟିକୁ ସେ ତ କରଇ ମୋହିତ।
ବସ୍ତୁ ଦେଖୁଁ ବସ୍ତୁଠିକୁ ନ ଦେଖୁ ତାହାର
ତେବେ ବ୍ରହ୍ମ ଦରଶନ ହେବ କି ପ୍ରକାର ?
ଦୃଶ୍ୟ ପଦାର୍ଥକୁ ସତ୍ୟ ବସ୍ତୁ ମନେ କରି
ମିଛେ ସୁଖ ଦୁଃଖ ଭୋଗୁ ଜୀବନେ ଆମରି।

Digitized by srujanika@gmail.com

ଯାହାର ଜ୍ୟୋତିରେ ଏଇ ସୃଷ୍ଟି ପ୍ରକାଶିତ
ସେ ଆତ୍ମବସ୍ତୁକୁ ଧାନେ ନ ଆଣୁ କିଞ୍ଚିତ ।
ଚକ୍ଷୁ ବୁଜି ବସି ଆଣୁ ଈଶ୍ୱରଙ୍କୁ ଧାନେ,
ଚକ୍ଷୁ ଖୋଲି କିନ୍ତୁ ତାଙ୍କୁ ଭୁଲୁ ଆମ୍ଭେମାନେ ।

ପୁତ୍ରରେ ପ୍ରକାଶ ଯେତେ ଏ ବିଶ୍ୱଭୁବନେ ।
ସବୁ ଏକ ବ୍ରହ୍ମ ବୋଲି ଜାଣି ରଖ ମନେ ।
ଆମେ ସଦା ଭାବୁଥାଇ ଆମରି ମନରେ
ଯଦି ବ୍ରହ୍ମ ଛନ୍ତି ତେବେ ସେ କେଉଁ ରୂପରେ ?
ଆମ ଅନୁଭବେ ସେ ତ ଆସନ୍ତିନି କାହିଁ ?
ଜାଣ ବାବୁ, ତାଙ୍କୁ ଛାଡ଼ି ଅନୁଭବ ନାହିଁ ।
ବ୍ରହ୍ମଙ୍କୁ ନ ଦେଖି ଆମେ ନ ଲଭୁ ସନ୍ତୋଷ,
ଭାବ ତାହା ଆମ ବୁଦ୍ଧି ନେତ୍ରର ତ ଦୋଷ ।
ଓତଃପ୍ରୋତ ହୋଇ ସେ ତ ଅନ୍ତରେ ବାହାରେ,
ତାଙ୍କୁ ଭୁଲି ହଜିଅଛୁ ଏ ମାୟା ସଂସାରେ ।
ଖୋଜିବା ଜାଣଇ ଯିଏ ସେହି ଭାଗ୍ୟବାନ
ତା'ପାଇଁକି ସତ୍ୟଯୁଗ ଏଇ ବର୍ତ୍ତମାନ ।
ଆମେ ନିଜେ ନଷ୍ଟ ହୋଇ ଯାଉଛୁ, ଅଥଚ
ଭାବୁଛୁ ହେଲାଣି ନଷ୍ଟ ଏ ସାରା ଜଗତ ।

ବୈଚିତ୍ର୍ୟର ପ୍ରକାଶ ଯେ, ତାଙ୍କରି ପ୍ରକାଶ
ଏ ରୂପରେ ଦେଖିବାକୁ କରିନୁ ଅଭ୍ୟାସ ।
ଏ ରୂପେ ଦେଖିଲେ ତାଙ୍କ ଅବାରିତ ସତ୍ତା
ସେ ଅଖଣ୍ଡ ଅସ୍ତିତ୍ୱର ମିଳିଯିବ ପତ୍ତା ।
ଦେଶକାଳ ପାତ୍ରେ ଯାହା ନୁହଁଇ ସୀମିତ
ସେଥିପାଇଁ ବୁଦ୍ଧି ସୂକ୍ଷ୍ମ ହୋଇବା ଉଚିତ ।
ଆରୋପିତ ବସ୍ତୁ ଭ୍ରାନ୍ତି ବିଶୁଦ୍ଧ ବୁଦ୍ଧିରେ
ପ୍ରତି ଦରଶନେ ଲୋପ ହୁଅଇ ଅଚିରେ ।
ଆରୋପିତ ବସ୍ତୁ ପଛେ ବଇଠି ଧିଆନ
କରି ଯୋଗୀ ଲଭିଥାନ୍ତି ହୃଦେ ବ୍ରହ୍ମଜ୍ଞାନ ।
ଜଗତ ଆଧାର ସେହି ଆଧେୟ ବି ସିଏ
ଆଧେୟକୁ କିନ୍ତୁ ସତ୍ୟ ଭାବନ୍ତି ସର୍ଭିଏଁ ।

Digitized by srujanika@gmail.com

ଜାତି ଗୁଣକ୍ରିୟାରେ ତ ମଣିଷ ଜଗତେ,
ବସ୍ତୁକୁ ନିର୍ଦ୍ଦେଶ କରିଥାଏ ହୃଦଗତେ।
ବ୍ରହ୍ମଙ୍କର ଯେଣୁ ଜାତି ଗୁଣ କ୍ରିୟା ନାହିଁ,
ଅନିର୍ଦ୍ଦେଶ୍ୟ ବୋଲି ତାଙ୍କୁ କହିଲି ସେ ପାଇଁ।
ଏଇ ସାର କଥା ବାବୁ ରଖିଥିବୁ ମନେ,
ଯାହା କିଛି, ସବୁ ସେହି ଏ ବିଶ୍ୱ ଭୁବନେ।

**ତାଙ୍କୁ କିଏ ପ୍ରକାଶ ପାରେନା :**

**ନ ତତ୍ର ସୂର୍ଯୋ ଭାତି ନ ଚନ୍ଦ୍ରତାରକମ୍**
**ନେମା ବିଦ୍ୟୁତୋ ଭାନ୍ତି କୁତୋଽୟମଗ୍ନିଃ ?**
**ତମେବ ଭାନ୍ତମନୁଭାତି ସର୍ବଂ**
**ତସ୍ୟ ଭାସା ସର୍ବମିଦଂ ବିଭାତି ॥ ୧୫ ॥**

"ତହିଁ ପ୍ରକାଶନ୍ତି ନାହିଁ ସୂର୍ଯ୍ୟ ଯେଉଁପରି,
ପ୍ରକାଶନ୍ତି ନାହିଁ ଶଶି ତାରକା ସେପରି,
ଚମକଇ ନାହିଁ ବିଦ୍ୟୁ ଝଲକ ଯେଉଁଠି,
ଛାର ଅଗ୍ନି କଥା ଅବା ଆସଇ କେଉଁଠି ?
ଆତ୍ମାଙ୍କ ପ୍ରକାଶେ ମାତ୍ର ହୋଇ ଅନୁଗତ
ଜ୍ୟୋତି ଲଭି ପ୍ରକାଶନ୍ତି ସର୍ବେ ଏ ଜଗତ।
ତାଙ୍କରି ଜ୍ୟୋତିରେ ହୋଇ ସର୍ବେ ଜ୍ୟୋତିଷ୍ମାନ,
ପ୍ରକାଶନ୍ତି ଚରାଚର ଜଗତକୁ ଜାଣ । ୧୫ ।

"ଶ୍ରେଷ୍ଠ ଜ୍ଞାନ ରୂପୀ ଆତ୍ମ-ଲୋକ ବିଷୟରେ
କହୁଅଛି ଏହି ମନ୍ତ୍ରେ ଶୁଣ ତୁ ପୁତ୍ରରେ।
କରିବାକୁ ଏହି ଦିବ୍ୟଧାମ ପ୍ରକାଶିତ
ଅନ୍ୟ କା' ପ୍ରକାଶ ଲୋଡ଼ା ହୁଅଇ ନାହିଁ ତ।
ଚନ୍ଦ୍ରମା ତପନ ତାରା ବିଦ୍ୟୁତ ଝଲକ
ତାଙ୍କୁ ପ୍ରକାଶିବା ପାଇଁ ନୁହଁନ୍ତି ସମର୍ଥ।

Digitized by srujanika@gmail.com

ପାରେନା ପ୍ରକାଶି ତାଙ୍କୁ ଲୌକିକ ପ୍ରକାଶ
ସେ ଶାଶ୍ୱତ ଜ୍ୟୋତି ରୂପ, ସେ ସ୍ୱୟଂ ପ୍ରକାଶ।

ତୋତେ କହିଥିଲି ପରା ପୂରୁବ ଶ୍ଳୋକରେ
ସୁଖ ରୂପେ ପ୍ରକାଶନ୍ତି ସେ ଯୋଗୀ ହୃଦରେ।
ଏବେ ଜ୍ୟୋତି ରୂପେ ସେହି ଅଖିଳ ଭୁବନ
ପ୍ରକାଶ କରନ୍ତି ବୋଲି ଜାଣରେ ନନ୍ଦନ।
ଯେତେ ଜ୍ୟୋତିଷ୍ମାନ ବସ୍ତୁ ଦେଖୁ ଆକାଶରେ
ଶଶି ସୂର୍ଯ୍ୟ ବିଦ୍ୟୁତାଦି ନକ୍ଷତ୍ର ନିକରେ
ତାଙ୍କରି ଜ୍ୟୋତିରେ ହୋଇ ସର୍ବେ ଜ୍ୟୋତିଷ୍ମାନ
ଜଗତକୁ ତାଙ୍କ ଜ୍ୟୋତି କରନ୍ତି ପ୍ରଦାନ ।

ଯେ ସ୍ୱଂୟ ପ୍ରକାଶମୟ ସେ କିଆଁ ଅନ୍ୟର
ଆଲୋକ ପାଇବା ପାଇଁ ହେବ ଆଗଭର ?
ଗରମ ପାଣିର ତାତି ନୁହଁଇ ଜଳର
ଏ ତାତି ଲଭଇ ଜଳ ଅନଳୁ କେବଳ।
ଜଳର ନ ଥାଏ ଯେହ୍ନେ ଉତ୍ତାପ ଶକତି
ଶଶି ସୂର୍ଯ୍ୟ ତାରା ଅଗ୍ନି ସେପରି ଅଟନ୍ତି।
ସ୍ୱତନ୍ତ୍ର ପ୍ରକାଶ ଶକ୍ତି ନାହିଁ ତ ତାଙ୍କର
ଆତ୍ମାଙ୍କ ଦୀପ୍ତିରେ ମାତ୍ର ସେ ଦୀପ୍ତ ସକଳ।

ତାଙ୍କୁ ଆଶ୍ରା କରି ଯେତେ ଜ୍ୟୋତିଷ ନିକରେ
ପ୍ରକାଶନ୍ତି ଅନୁଗତ ରୂପେ ଆକାଶରେ।
ଆତ୍ମ-ଚୈତନ୍ୟରେ ସିନା ନିଖିଳ ଜଗତ
ପ୍ରକାଶିତ ହେଉଅଛି ବାବୁ ଅବିରତ।

ଜୀବନରେ ଯେତେ ସବୁ କାର୍ଯ୍ୟ ଓ କରଣ
ସବୁର ଆଧାର ଆତ୍ମା ଜାଣିଚୁ ନନ୍ଦନ।
ଜୀବନର ଅନ୍ତେ ମନ ବୁଦ୍ଧି ଓ ଇନ୍ଦ୍ରିୟ,
ଏହି ତିନି ଶକ୍ତି ହୋଇ ପଡ଼ନ୍ତି ନିଷ୍କ୍ରିୟ ।
ଏସବୁ ନିଷ୍କ୍ରିୟ ହେଲେ ବ୍ୟକ୍ତି ପାଇଁ ଆଉ,
ସୂର୍ଯ୍ୟ ଚନ୍ଦ୍ର ତାରା ଜ୍ୟୋତି ପ୍ରକାଶିବେ କାହୁଁ?

Digitized by srujanika@gmail.com

# ଦ୍ୱିତୀୟ ଅଧ୍ୟାୟ

## ତୃତୀୟ ବଲ୍ଲୀ

**ସଂସାର ରୂପ ଅଶ୍ୱତ୍ଥ ବୃକ୍ଷ :**

**ଊର୍ଦ୍ଧ୍ୱମୂଲୋଽବାକ୍‌ଶାଖ ଏଷୋଽଶ୍ୱତ୍ଥଃ ସନାତନଃ ।**
**ତଦେବ ଶୁକ୍ରଂ ତଦ୍ ବ୍ରହ୍ମ ତଦେବାମୃତମୁଚ୍ୟତେ ।**
**ତସ୍ମିନ୍ ଲୋକାଃ ଶ୍ରିତାଃ ସର୍ବେ ତଦୁ ନାତ୍ୟେତି କଶ୍ଚନ ।**
**ଏତଦ୍ ବୈ ତତ୍ ॥ ୧ ॥**

''ସଂସାର ରୂପକ ଏହି ଅନାଦି ଅଶ୍ୱତ୍ଥ
ଉର୍ଦ୍ଧ୍ୱେ ଯାର ମୂଳ, ନିମ୍ନେ ଶାଖା ଡାଳ ଶତ ।
ସେ ମୂଳ ସ୍ୱରୂପେ ଶୁଦ୍ଧ ବ୍ରହ୍ମ ଜ୍ୟୋତିର୍ମୟ
ଅବିନାଶୀ, ତାଙ୍କ ଠାରେ ଜଗତ ଆଶ୍ରୟ ।
ତାଙ୍କୁ ଅତିକ୍ରମ କରି ପାରେ ନାହିଁ କେହି,
ତୁମେ ପ୍ରଶ୍ନ କରିଥିବା 'ଆତ୍ମତତ୍ତ୍ୱ' ସେହି ॥ ୧ ॥''

''ଏ ଶେଷ ବଲ୍ଲୀରେ ବାବୁ ଜଗତ କାରଣ-
ବ୍ରହ୍ମଙ୍କ ସ୍ୱରୂପ କହୁଅଛି ଦିଅ ମନ ।
ସହଜେ ଏ ଆତ୍ମ-ତତ୍ତ୍ୱ ବୁଝି ହୁଏ ନାହିଁ,
ତେଣୁ ନାନା ଭାବେ ତୋତେ କହୁଛି ବୁଝାଇ ।

କାର୍ଯ୍ୟ ଦେଖି ଅନୁମିତ ହୁଅଇ କାରଣ,
ସଂସାର କାରଣ ପୂତ୍ର ଏ ବ୍ରହ୍ମ ତେସନ ।
କାରଣ ସ୍ୱରୂପ ବ୍ରହ୍ମ ଅଟନ୍ତି କିପରି
ତାଙ୍କରି ସ୍ୱରୂପ କଥା ନ ହୁଅଇ କହି ।
ତେଣୁ ନାନା ଉପମାଦି ଦୃଷ୍ଟାନ୍ତ ଆକାରେ
ବ୍ରହ୍ମକଥା କିଛି ଅବା କୁହାଯାଇପାରେ ।

Digitized by srujanika@gmail.com

ସାଧାରଣ ବୃକ୍ଷ ମୂଳ ନିମ୍ନ ଭାଗେ ଥାଇ
ଶାଖା ଡାଳ ପତ୍ର ତାର ଉର୍ଦ୍ଧ୍ବକୁ ମେଲାଇ ।
ସଂସାର ବୃକ୍ଷର ମୂଳ କିନ୍ତୁ ଉର୍ଦ୍ଧ୍ବେ ସ୍ଥିତ
ଶାଖା ଡାଳ ପତ୍ର ସବୁ ତଳକୁ ଲମ୍ବିତ ।
ଥିଲେ ହେଁ ଏ ବୃକ୍ଷମୂଳ ଅଦୃଶ୍ୟରେ ରହି
କିନ୍ତୁ ବୃକ୍ଷ ଦେଖି ମନେ ଧାରଣା ଜନ୍ମଇ ।
ସେପରି ସଂସାର ରୂପ ବୃକ୍ଷକୁ ଅନାଇ
ଜାଣିବା ନିଶ୍ଚୟ ତାର ମୂଳ ଅଛି କାହିଁ ।

ପ୍ରଥମେ ଜଗତ ଥିଲା ବ୍ରହ୍ମେ ଅବ୍ୟକତ,
ପରେ ସୃଷ୍ଟି ରୂପେ ତାହା ହୋଇଅଛି ବ୍ୟକ୍ତ ।
ଯେସନେ ମୂଳରୁ ରସ ହୋଇ ସଞ୍ଚାରିତ,
ବୃକ୍ଷକୁ ରଖଇ ସଦା ସର୍ବଦା ଜୀବିତ,
ଏ ସଂସାର ହୋଇ ତେହ୍ନେ ବ୍ରହ୍ମୁ ଉତପତି,
ବ୍ରହ୍ମଙ୍କ ସତ୍ତାରେ ସତ୍ତାବାନ ହୋଇଅଛି ।
ସେ ମୂଳର ଶାଖା ଆଉ ପ୍ରଶାଖା ନିକରେ
ଜଡ଼ ଜୀବ ସୃଷ୍ଟି ରୂପେ ନିମ୍ନକୁ ପ୍ରସରେ ।
ଯେସନେ ଅଶ୍ୱତ୍ଥ ବୃକ୍ଷ ନିରତେ ଅଚିର
ତେସନେ ସଂସାର କ୍ଷଣ କ୍ଷଣକେ ଅସ୍ଥିର ।
ଆଜି ଯାହା ଅଛି ତାହା କାଲିକି ନ ରହେ
ପରିବର୍ତ୍ତନର ସ୍ରୋତ ଅବିରତେ ବହେ ।
ସଂସାର ସ୍ୱରୂପ ବାବୁ ହୃଦୟୁ ନ ଭୁଲ,
ଜନ୍ମ ଜରା ମୃତ୍ୟୁ ଶୋକ ଅନର୍ଥ ସଙ୍କୁଳ;
ଯାଦୁକର ଯାଦୁମାୟା କଳ୍ପିତ ଯେପରି
ମରୁଭୂମି ମରୀଚିକା, ଶିପେ ରୂପା ଭଳି
ଆକାଶେ ନିର୍ମିତ ଚାରୁ ଅଟ୍ଟାଳୀ ଯେସନେ
ସଂସାର ସ୍ୱରୂପ ବାବୁ ଅଟଇ ତେସନେ ।
ସତ୍ୟ-ରଜ୍ଜୁ ଭିତ୍ତି ପରେ ସର୍ପ ଯେହ୍ନେ ଭ୍ରମ
ବ୍ରହ୍ମ ଭିତ୍ତି ପରେ ମିଥ୍ୟା ଜଗତ ତା' ସମ ।
ପ୍ରବାହ କ୍ରମେ ଏ ସୃଷ୍ଟି ନିତ୍ୟ ସନାତନ
ତା' ଆରମ୍ଭ ଶେଷ କିଏ କରିବ କଳନ ?
ଏ ସଂସାର ମୂଳ ରୂପେ ଯିଏ ସୁବିଦିତ
ସେ ଶୁଦ୍ଧ, ସେ ବ୍ରହ୍ମ ପୁଣି ଅମୃତ କଥିତ ।

Digitized by srujanika@gmail.com

ସମୁଦାୟ ଲୋକ ସେହି ବ୍ରହ୍ମଙ୍କ ଆଶ୍ରିତ
ସେ ଆଶ୍ରୟ ଛାଡ଼ି ରହି ନପାରେ କେହି ତ।
ମାଟି ଛାଡ଼ି ମାଟିପାତ୍ର ନ ଅଛି ଯେସନେ
ବ୍ରହ୍ମଙ୍କୁ ନ ଛାଡ଼ି ରହେ ଜଗତ ତେସନେ।''

**ଅମୃତତ୍ୱ ପ୍ରାପ୍ତି :**

**ଯଦିଦଂ କିଞ୍ଚ ଜଗତ ସର୍ବଂ**
**ପ୍ରାଣ ଏଜତି ନିଃସୃତମ୍ ।**
**ମହଦ୍‌ଭୟଂ ବଜ୍ରମୁଦ୍ୟତଂ ଯ**
**ଏତଦ୍‌ବିଦୁରମୃତାସ୍ତେ ଭବନ୍ତି ॥ ୨ ॥**

''ଏଇ ଯାହା କିଛି ସାରା ଜଗତ ରହିଛି,
ସବୁ ପ୍ରାଣ ବ୍ରହ୍ମରୁ ହିଁ ନିଃସୃତ ହୋଇଛି।
ସେ ପୁଣି ସେ ପ୍ରାଣ ଶକ୍ତି ଦ୍ୱାରା କ୍ରିୟାଶୀଳ
ବ୍ରହ୍ମ ହିଁ ଜଗତ ମୂଳ ଏ କଥାଟି ସ୍ଥିର।
ଏହି ବଜ୍ରହସ୍ତ ବ୍ରହ୍ମ ପୁରୁଷ ରେ ଧନ
ସାରା ଜଗତର ମହାଭୟର କାରଣ।
ତାହାଙ୍କୁ ଏପରି ଭାବେ ଜାଣିଛନ୍ତି ଯିଏ
ଜୀବନରେ ଅମୃତତ୍ୱ ଲଭିଥାନ୍ତି ସିଏ'' ॥ ୨ ॥

''ପ୍ରାଣଙ୍କୁ ତୁ ଜାଣ ବାବୁ ବ୍ରହ୍ମ ନାରାୟଣ,
ଯେ ଅଟନ୍ତି ଏ ଅଖିଳ ଜଗତ କାରଣ।
ସେ ବ୍ରହ୍ମଙ୍କ ବିଷୟରେ ହୋଇଗଲେ ଜ୍ଞାନ,
ମଣିଷ ହୁଅଇ ନିଶ୍ଚେ ଅମୃତ ସମାନ।

ସଂସାରର ସକ୍ରିୟତା ଅବା ଚଞ୍ଚଳତା,
ହୁଅଇ ଥିବାରୁ ଏକ ସ୍ଥିର ବ୍ରହ୍ମସତ୍ତା।
ବ୍ରହ୍ମରେ କେବଳ ହୁଏ ଜଗତ ସ୍ପନ୍ଦିତ,
ବ୍ରହ୍ମ-ସତ୍ତା ପରେ ହୋଇ ସଦା ଅବସ୍ଥିତ।

Digitized by srujanika@gmail.com

ବ୍ରହ୍ମୁଁ ଜାତ, ବ୍ରହ୍ମେ ସ୍ଥିତ ବ୍ରହ୍ମରେ ବିଳୟ
ଜଗତରେ ନାହିଁ କିଛି ଇତର ଆଶ୍ରୟ।

ଦଣ୍ଡ ଅବଲୋକି ଯେହ୍ନେ ନୃପତିଙ୍କ ହସ୍ତେ,
ଅଶେଷ ଡରନ୍ତି ପ୍ରଜା ସହିତେ ସମସ୍ତେ,
ତେସନେ ସୃଷ୍ଟିରେ ସର୍ବେ ପରା ଅହରହ
ବ୍ରହ୍ମଙ୍କର ନିର୍ଦ୍ଦେଶକୁ କରିଥାନ୍ତି ଭୟ।
ସୃଷ୍ଟି ସ୍ଥିତି ଲୟ ଆଦି ତାଙ୍କରି ଶାସନେ
ସୁକଠୋର ନିୟମରେ ଚାଲେ ଅନୁକ୍ଷଣେ।
"ମହାଭୟ" ବୋଲି ତେଣୁ ସୁବିଦିତ ସେହି
ତାଙ୍କ ଶାସନକୁ ଡେଢ଼ି ନ ପାରଇ କେହି।
ଉତ୍ପତ୍ତି କାରଣ, ସ୍ଥିତି ସଂହାର କାରଣ,
ସେ ପରମ ବ୍ରହ୍ମେ ଯିଏ ଜାଣନ୍ତି ଏସନ,
ସେହି ଅମୃତତ୍ୱ ଲାଭ କରନ୍ତି ଜୀବନେ,
ଏହି ସାର କଥା ବାବୁ ରଖିଥିବୁ ମନେ।"

**ସର୍ବଶାସକ ପ୍ରଭୁ :**

**ଭୟାଦସ୍ୟାଗ୍ନିସ୍ତପତି ଭୟାତ୍ ତପତି ସୂର୍ଯ୍ୟଃ।**
**ଭୟାଦିନ୍ଦ୍ରଶ୍ଚ ବାୟୁଶ୍ଚ ମୃତ୍ୟୁର୍ଧାବତି ପଞ୍ଚମଃ ॥ ୩ ॥**

"ତାଙ୍କ ଭୟେ ସିନା ଅଗ୍ନି ଉତ୍ତାପ ଦିଅଇ
ତାଙ୍କ ଭୟେ ନଭେ ସୂର୍ଯ୍ୟ କିରଣ ଢାଳଇ
ତାଙ୍କରି ଭୟରେ ଇନ୍ଦ୍ର ବାୟୁ ଜନ୍ତୁପତି,
ନିଜ ନିଜ କର୍ମେ ସଦା ପ୍ରବୃତ୍ତ ରହନ୍ତି॥୩।

"କେବଳ ତ ଜଡ଼ ଜୀବ ଜଗତ ନିକର
ନ ହୁଅନ୍ତି ସେ ବ୍ରହ୍ମଙ୍କ ଭୟେ ଥରହର।
ଦେବେ ଲୋକପାଳେ ମଧ ହୋଇ ଭୟଭୀତ
ତାଙ୍କରି ଶାସନେ ହୋଇ ଥାଆନ୍ତି ଚାଳିତ।

Digitized by srujanika@gmail.com

ଅଗ୍ନି ସୂର୍ଯ୍ୟ ଇନ୍ଦ୍ର ବାୟୁ ବରୁଣ ଦେବତା
ବ୍ରହ୍ମ ଶାସନକୁ ସଦା ନୋଇଁଥାନ୍ତି ମଥା ।
ସର୍ବସଂହାରକ ମୁହିଁ ସେ ବ୍ରହ୍ମଙ୍କୁ ଡରି
ତାଙ୍କରି ଶାସନେ ମୋର କର୍ମ ଥାଏ କରି'' ॥୩॥

**ପୂର୍ଣ୍ଣଜନ୍ମ ପ୍ରାପ୍ତି :**

**ଇହ ଚେଦଶକଦ୍ ବୋଦ୍ଧୁଂ ପ୍ରାକ୍ ଶରୀରସ୍ୟ ବିସ୍ରସଃ ।**
**ତତଃ ସର୍ଗେଷୁ ଲୋକେଷୁ ଶରୀରତ୍ୱାୟ କଳ୍ପତେ ॥୪॥**

''ଦେହ ନାଶ ଆଗୁଁ ଯଦି ଏ ଶରୀରେ କେହି
ଏ ବ୍ରହ୍ମଙ୍କ ଜ୍ଞାନ ପାଇ ଯାଏ, ତେବେ ସେହି,
ସଂସାରର ବନ୍ଧନରୁ ହୁଅଇ ମୁକତ
ଆଉ ନ ଭ୍ରମଇ କେବେ ମୃତ୍ୟୁମୟ ପଥ ।
ସେପରି ନ ଜାଣି ପାରି ବ୍ରହ୍ମଙ୍କୁ ଜୀବନେ,
ଅଶେଷ ଅବିଦ୍ୟା ଆଉ ଅଜ୍ଞତା କାରଣେ,
ସୃଷ୍ଟିର ନାନାଦି ଲୋକେ ସେ ଅଜ୍ଞାନୀ ଜନ
ପୁଣି ପୁଣି କରିଥାଏ ଶରୀର ଧାରଣ ॥୪॥

''ଏ ଶରୀର ନାଶ ଆଗୁଁ ଆତ୍ମ-ଦରଶନ
ଯଦି କେ ପାରଇ କରି ଧନ୍ୟ ତା ଜୀବନ ।
ସଂସାର ବନ୍ଧନୁ ସେହି ମୁକତି ଲଭଇ
ମୃତ୍ୟୁମୟ ଜଗତକୁ ଆଉ ନ ଫେରଇ ।
ଏ ଦେହେ କେବଳ ପୁତ୍ର ଆତ୍ମ ଦରଶନ
କରିବା ପାଇଁକି ଆମେ କରିବା ଯତନ ।

ଏଣୁ ଏ ଶରୀର ବାବୁ ଅତି ଉପଯୋଗୀ
ଯତନେ ସାଇତି ଥାନ୍ତି ମୁନି ଋଷି ଯୋଗୀ ।
ନିଜର ଦେହକୁ ଜାଣି ଜୀବିକା ସାଧନ
ରୂପଜୀବା କରେ ଯେହ୍ନେ ଦେହର ଯତନ ।

Digitized by srujanika@gmail.com

ସାଧନା ପାଇଁକି ତେହ୍ନେ ସାଧୁ ସନ୍ଥ ଜନେ
ନିଜର ଦେହକୁ ସଦା ରଖନ୍ତି ଯତନେ।

ଆ... ...କ ମିଳେଇ ଯାଏ ଯେହ୍ନେ ଅନ୍ଧକାର
ଜ୍ଞାନରେ ଅଜ୍ଞାନ ନାଶ ହୁଏ ସେ ପ୍ରକାର।
ଯା' ହୃଦୟେ ଆତ୍ମ-ଜ୍ଞାନ ହୁଅଇ ଉଦିତ
ସେ ମିଥ୍ୟା ସଂସାର ମୋହେ ନୁହେଁ ବିମୋହିତ।
ସ୍ୱପ୍ନ ଅନ୍ତେ ସ୍ୱପ୍ନ ପ୍ରିୟତମାକୁ କଅଣ
ସ୍ୱଭୁଜ ବଳୟେ କିଏ କରେ ଆଲିଙ୍ଗନ ?
ମଣିଷ ଜନମ ପାଇ ଅଭାଗା ପୁରୁଷ,
ଜୀବନରେ ନ ଚାଖିଲେ ଆତ୍ମାର ପୀୟୂଷ,
ତେବେ ସେ ସଂସାର ଚକ୍ରେ ପଡ଼ି ବାରବାର
ସହଇ ଶରୀରେ ଦୁଃଖ ଯାତନା ଅପାର।''

**ଯଥାଦର୍ଶେ ତଥାତ୍ମନି ଯଥା ସ୍ୱପ୍ନେ ତଥା ପିତୃଲୋକେ।**
**ଯଥାପ୍ସୁ ପରୀବ ଦଦୃଶେ ତଥା ଗନ୍ଧର୍ବ ଲୋକେ**
**ଛାୟାତପୟୋରିବ ବ୍ରହ୍ମଲୋକେ ॥୫॥**

''ମୁହଁ ଦେଖାଯାଏ ଯଥା ନିର୍ମଳ ଦର୍ପଣେ,
ନିର୍ମଳ ବୁଦ୍ଧିରେ ଆତ୍ମା ଦିଶନ୍ତି ତେସନେ।
ସ୍ୱପ୍ନେ ଦେଖା ବସ୍ତୁ ଦିଶେ ଅସ୍ୱଷ୍ଟ ଯେପରି
ପିତୃଲୋକେ ଏହି ଆତ୍ମା ଦିଶନ୍ତି ସେପରି।
ଆତ୍ମା ସ୍ୱଷ୍ଟ ନ ଦିଶନ୍ତି ଗନ୍ଧର୍ବ ଲୋକରେ
ପ୍ରତିବିମ୍ବ ଯେହ୍ନେ ସ୍ୱଷ୍ଟ ନ ଦିଶଇ ଜଳେ।
କେବଳ ତ ବ୍ରହ୍ମ ଲୋକେ ଆତ୍ମ-ଦରଶନ
ହୁଅଇ ସୁସ୍ୱଷ୍ଟ ଛାଇ ଆଲୁଅ ଯେସନ।୫।

''ଆଗରୁ ମୁଁ ତୋତେ କହି ରଖିଛି ନନ୍ଦନ
ଆତ୍ମ-ଜ୍ଞାନ ଲାଭେ ହୁଏ ସାର୍ଥକ ଜୀବନ।
ଅନ୍ୟ ସବୁ ଜନ୍ମ ଠାରୁ ମଣିଷ ଜନ୍ମରେ
ଆତ୍ମ-ଉପଲବ୍ଧି ହୁଏ ନିର୍ମଳ ଭାବରେ।

Digitized by srujanika@gmail.com

ଆତ୍ମା କେହ୍ନେ ପ୍ରକାଶିତ ଜ୍ଞାନ ଭିନ୍ନ ସ୍ତରେ
ସେହି କଥା କହୁଅଛି ଏବେ ତୋ' ଆଗରେ ।
ମଣିଷର ବୁଦ୍ଧି ଯେବେ ଅଜ୍ଞାନେ ଆଚ୍ଛନ୍ନ
ତେବେ ଆତ୍ମାଙ୍କର ହୁଏ ନାହିଁ ଦରଶନ ।
ମଳିନ ଦର୍ପଣେ ମୁହଁ ନ ଦିଶେ ଯେସନେ
ନ ଦିଶନ୍ତି ଆତ୍ମା ମନ୍ଦ ବୁଦ୍ଧିରେ ତେସନେ ।
କିନ୍ତୁ ସାଧନାରେ ବୁଦ୍ଧି ହେଲେ ସୁନିର୍ମଳ
ଆତ୍ମ-ଦରଶନ ତେବେ ହୁଅଇ ନିର୍ମଳ ।
ପିତୃଲୋକ ବାସୀ ଚିତ୍ତ ନୁହେଁ ପରିଷ୍କାର
ଥାଏ ସେହି ଚିତ୍ତେ ପୂର୍ବ ଜନ୍ମର ସଂସ୍କାର ।
ସୁସ୍ପଷ୍ଟ ନୁହଇ ତହିଁ ଆତ୍ମ-ଦରଶନ
ସ୍ୱପ୍ନରେ ଯେସନେ ହୁଏ ଅସ୍ପଷ୍ଟ ଦର୍ଶନ ।

ଜଳେ ପ୍ରତିବିମ୍ବ ଯେହ୍ନେ ସଦା ଚହଲଇ,
ଭିନ୍ନ ଲୋକେ ସ୍ପଷ୍ଟ ଆତ୍ମ-ଦର୍ଶନ ନୁହଇ ।
କେବଳ ତ ବ୍ରହ୍ମଲୋକେ ହୁଅଇ ଦର୍ଶନ,
ଦିଶଇ ସୁସ୍ପଷ୍ଟ ଛାଇ ଆଲୁଅ ଯେସନ ।
ବ୍ରହ୍ମଲୋକ ଲାଭ କିନ୍ତୁ ସହଜ ନୁହଁଇ,
ବହୁ ଉପାସନା କର୍ମଜ୍ଞାନ ଲୋଡ଼ା ତହିଁ ।
ତେଣୁ ଏ ଶରୀରେ ପୁତ୍ର ଆତ୍ମଜ୍ଞାନ ପାଇଁ
ସକଳ ସାଧନା କର, କହୁଛି ବୁଝାଇ ।

**ଇନ୍ଦ୍ରିୟାଣାଂ ପୃଥଗ୍‌ଭାବମୁଦୟାସ୍ତମୟୌ ଚ ଯତ୍ ।**
**ପୃଥଗୁତ୍ପଦ୍ୟମାନାନାଂ ମତ୍ୱା**
**ଧୀରୋ ନ ଶୋଚତି ॥୬॥**

"ଆକାଶ ପବନ ଅଗ୍ନି ଆଦି ପଞ୍ଚଭୂତ
ତହୁଁ ଏକୁ ଏକୁ ଭିନ୍ନ ଇନ୍ଦ୍ରିୟେ ଉଦ୍ଭୂତ ।
ଚୈତନ୍ୟ ସ୍ୱରୂପ ଆତ୍ମାଠାରୁ ଏ ଇନ୍ଦ୍ରିୟେ,
ନିଶ୍ଚିତ ପୃଥକ ବୋଲି ଜାଣିଛନ୍ତି ଯିଏ,

Digitized by srujanika@gmail.com

ପୁଣି ଜାଣିଛନ୍ତି ତାଙ୍କ ଉତ୍ପତ୍ତି ବିଲୟ
ସେହି ଧୀରେ କେବେ ଶୋକେ ନୁହଁନ୍ତି ଅଥୟ'' ॥୬॥

''ଆକାଶାଦି ଭିନ୍ନ ଭିନ୍ନ ଭୂତରୁ ଉତ୍ପନ୍ନ
ଭିନ୍ନ ଭିନ୍ନ ଇନ୍ଦ୍ରିୟାଦି ହୋଇଛି, ନନ୍ଦନ।
ଶରୀରେ ଇନ୍ଦ୍ରିୟେ ସୃଷ୍ଟି ଭୂତାଦିରୁ ଯେଣୁ
ଇନ୍ଦ୍ରିୟେ ପୃଥକ ଏଇ ଆତ୍ମାଠାରୁ ତେଣୁ।

ଜାଗ୍ରତରେ ଇନ୍ଦ୍ରିୟର ହୁଅଇ ଉତ୍ପତ୍ତି
ସ୍ୱପ୍ନାବସ୍ଥାରେ ତ ସବୁ ବିଲୟ ଭଜନ୍ତି।
ଅନାତ୍ମ ବସ୍ତୁର ହୁଏ ଉତ୍ପତ୍ତି ଓ ଲୟ
ଆତ୍ମାଙ୍କ ଉତ୍ପତ୍ତି ନାହିଁ, ନାହିଁ ବି ବିଲୟ।
ଅନାତ୍ମ ବସ୍ତୁରେ ଆତ୍ମା ଯେଣୁ ରହେ ମିଶି,
ତେଣୁ ଆତ୍ମା କାହାରିକୁ ନ ଥାଆନ୍ତି ଦିଶି।
ତପ୍ତ ଲୁହା ଖଣ୍ଡେ ତାତି ନ ଦିଶେ ଯେପରି
ଅନାତ୍ମ ବସ୍ତୁରେ ଏହି ଆତ୍ମା ସେହିପରି।

ଆତ୍ମ-ସ୍ୱରୂପକୁ ଜାଣିଥିବା ଜ୍ଞାନୀ ଜନ
ଜୀବନରେ ନ ହୁଅନ୍ତି ଶୋକେ ନିମଗନ।
ଶୋକ ତ ଅଟଇ ଅନ୍ତଃକରଣ ଧରମ
ସେ ଆତ୍ମାହୁଁ ଭିନ୍ନ ବୋଲି ଜାଣ ପୁତ୍ର ମମ।''

**ଇନ୍ଦ୍ରିୟେଭ୍ୟଃ ପରଂ ମନୋ ମନସଃ ସତ୍ତ୍ୱମୁତ୍ତମମ୍।**
**ସତ୍ତ୍ୱାଦଧି ମହାନାତ୍ମା ମହତୋଽବ୍ୟକ୍ତମୁତ୍ତମମ୍ ॥୭॥**

''ଇନ୍ଦ୍ରିୟ ସକଳ ଠାରୁ ଶ୍ରେଷ୍ଠ ଏଇ ମନ
ମନ ଠାରୁ ବୁଦ୍ଧି ଶ୍ରେଷ୍ଠ ଜାଣରେ ନନ୍ଦନ।
ବୁଦ୍ଧିଠାରୁ ଶ୍ରେଷ୍ଠ ପରା ସେ ମହତ ତତ୍ତ୍ୱ
ଉତ୍କୃଷ୍ଟ ମହତ ଠାରୁ ଅଟଇ ଅବ୍ୟକ୍ତ।
ଯାହାର ନ ଅଛି ଗୁଣ ଧର୍ମ ଅଭିବ୍ୟକ୍ତି
ସେ ପାଇଁ ଅବ୍ୟକ୍ତ ବୋଲି ତାହାଙ୍କୁ କହନ୍ତି।୭।

Digitized by srujanika@gmail.com

**ଅବ୍ୟକ୍ତାତ୍ତୁ ପରଃ ପୁରୁଷୋ ବ୍ୟାପକୋଽଲିଙ୍ଗ ଏବ ଚ ।**
**ଯଂ ଜ୍ଞାତ୍ୱା ମୁଚ୍ୟତେ ଜନ୍ତୁରମୃତତ୍ୱଂ ଚ ଗଚ୍ଛତି ॥୮॥**

"ଅବ୍ୟକ୍ତଙ୍କ ଠାରୁ ଶ୍ରେଷ୍ଠ ପୁରୁଷ ଅଟନ୍ତି
ଅଲିଙ୍ଗ ହୋଇ ଯେ ବିଶ୍ୱବ୍ୟାପି ରହିଛନ୍ତି ।
ମଣିଷ ତାହାଙ୍କୁ ଜାଣି ଲଭଇ ମୁକତି
ଇହ ଲୋକେ ଅମୃତତ୍ୱ ଅବଶ୍ୟ ଲଭନ୍ତି ॥୮॥

"ପ୍ରଳୟର କାଳେ ଯେତେ ଏ ବ୍ୟକ୍ତ ଜଗତ
ଅବ୍ୟକ୍ତରେ ଆସି ଲୀନ ହୁଅଇ ସମସ୍ତ ।
ଅବ୍ୟକ୍ତ ଅଟଇ ପରା ପ୍ରକୃତି ବା ମାୟା
ତାଙ୍କରି କି ଥାଏ କିଛି କାୟା ଅବା ଛାୟା ?

ଏ ଅବ୍ୟକ୍ତ ଠାରୁ ଶ୍ରେଷ୍ଠ ପୁରୁଷ ଅଟନ୍ତି
ଆକାଶାଦି ସବୁକୁ ଯେ ବ୍ୟାପି ରହିଛନ୍ତି ।
ପୁରୁଷ ଅର୍ଥରେ ଏହି ଆତ୍ମାଙ୍କୁ ବୁଝାଏ,
ସବୁ କାଳେ ସ୍ଥାନେ ଆତ୍ମା ବ୍ୟାପି ରହିଥାଏ ।
ଶ୍ରେଷ୍ଠ ବୋଲି ଯାହା ମୁହିଁ କହିଲି ରେ ତତେ
ସେ ଅଧିକ ସୂକ୍ଷ୍ମ ଆଉ ବ୍ୟାପକତା ଅର୍ଥେ ।

ଯେଉଁ ଗୁଣେ ଧର୍ମେ ବସ୍ତୁ ହୁଅଇ ବିଦିତ
'ଲିଙ୍ଗ' ବୋଲି ହୋଇଥାଏ ତାହା ଅଭିହିତ ।
ଗୁଣ ଧର୍ମ କାରଣାଦି ଯାହାର ନଥାଏ
ତାହାକୁ ଅଲିଙ୍ଗ ବୋଲି ପୁତ୍ର କୁହାଯାଏ ।
ମନ ଓ ବୁଦ୍ଧିରେ ଆତ୍ମା ନୁହନ୍ତି ବିଦିତ
ସେ 'ଅଲିଙ୍ଗ' ନାମେ ତେଣୁ ହୁଅନ୍ତି କଥିତ ।

ପ୍ରତ୍ୟକ୍ଷ ଗୋଚରୀଭୂତ ନ ହେଲେ ବି ଏହି
ବ୍ୟାପ୍ତ ହୋଇ ରହିଛନ୍ତି ସବୁଠାରେ ସେହି ।
ସତ୍ତା ରୂପେ ଅସ୍ତି ରୂପେ ନଥିଲେ ସେ କଣ
ଜଗତ ଅସ୍ତିତ୍ୱ ତେବେ ଥାଆନ୍ତା ଏସନ ?

ଜଗତ ବସ୍ତୁକୁ ସୂର୍ଯ୍ୟ କରଇ ପ୍ରକାଶ
ଏକ ଏକ ବସ୍ତୁ ନାଶେ ସୂର୍ଯ୍ୟ ନୋହେ ନାଶ ।

Digitized by srujanika@gmail.com

ତେସନେ ଜଗତ ବସ୍ତୁ ହୋଇଗଲେ ନାଶ
କେବେ କାହିଁ ଅସ୍ତିତ୍ୱର ନ ଘଟେ ବିନାଶ ।

କିନ୍ତୁ ବସ୍ତୁ ଆଉ ଏହି ଅସ୍ତିତ୍ୱକୁ କିଏ
ପୃଥକ ଭାବରେ କିଏ କରଇ ଦର୍ଶନ ?

ଅସ୍ତିତ୍ୱ ବ୍ୟାପକ ବସ୍ତୁ ସୀମିତ ପ୍ରକାଶ,
ବସ୍ତୁ ନାଶେ ଅସ୍ତିତ୍ୱର ନ ଘଟେ ବିନାଶ ।
ତେଣୁ ସର୍ବବ୍ୟାପି ଏଇ ଅସ୍ତିତ୍ୱହିଁ ଏକ,
ତାହାପରେ ଆରୋପିତ ଏ ବସ୍ତୁ ଅନେକ ।
ଅସ୍ତିତ୍ୱ ଉପରେ ହେଲେ ବସ୍ତୁ ଆରୋପିତ
'ଅସ୍ତି' ରୂପେ ହୋଇଥାଏ ବସ୍ତୁ ପ୍ରକାଶିତ ।
ଏପରି ବୁଝିଲେ ହୁଏ ସହଜେ ବିଦିତ
ଏକ ଆତ୍ମା ପରେ ସବୁ କିଛି ଆରୋପିତ ।
ଅସ୍ତିତ୍ୱ ଓ ଆରାପିତ ପଦାର୍ଥ ଅଭିନ୍ନ
ବୋଧ ହେଉଥିଲେ ମଧ୍ୟ ପ୍ରକୃତରେ ଭିନ୍ନ ।

ଏକ ନାଶଶୀଳ ଆନ ନିତ୍ୟ ଅବିନାଶୀ
ତା'ପ୍ରକାଶେ ଦୃଶ୍ୟହୁଏ ଯେତେ ବସ୍ତୁରାଶି ।
ସେହି ତ 'ପୁରୁଷ' 'ଆତ୍ମା' ସର୍ବ ଘଟେ ସ୍ଥିତ
ଜାଣିଲେ ଅମୃତ ଗତି ହୁଅଇ ନିଶ୍ଚିତ ।

**ନ ସଂଦୃଶେ ତିଷ୍ଠତି ରୂପମସ୍ୟ**
**ନ ଚକ୍ଷୁଷା ପଶ୍ୟତି କଶ୍ଚନୈନମ୍ ।**
**ହୃଦା ମନୀଷା ମନସାଭିକ୍ଳୃପ୍ତୋ**
**ଯ ଏତଦ୍‌ବିଦୁରମୃତାସ୍ତେ ଭବନ୍ତି ॥୯॥**

''ସ୍ୱରୂପ ତାଙ୍କର କେବେ ଦୃଶ୍ୟ ନହୁଅଇ
ତେଣୁ ତାଙ୍କୁ ଆକ୍ଷିରେ କେ ଦେଖି ନପାରଇ ।
ହୃଦସ୍ଥ ନିଶ୍ଚୟାତ୍ମିକା ବୁଦ୍ଧି ସାହାଯ୍ୟରେ
କେବଳ ମନନେ ସେହି ପ୍ରକାଶ ଅନ୍ତରେ ।
ଏହି ପୁରୁଷଙ୍କୁ ଯେଉଁ ଜ୍ଞାନୀଏ ଜାଣନ୍ତି
ସେମାନେ ଅମର ହୋଇ ସଂସାର ତରନ୍ତି ।॥୯॥

Digitized by srujanika@gmail.com

"ପୁତ୍ର ନଚିକେତା, ତୋତେ ବାର ବାର କୁହେ
ଆତ୍ମାହୁଁ ପୃଥକ ଏଇ ଇନ୍ଦ୍ରିୟ ସମୂହେ।
ଜାଣି ନ ପାରନ୍ତି ଏହି ଆତ୍ମାଙ୍କୁ ଇନ୍ଦ୍ରିୟେ
ତେବେ ତାଙ୍କୁ କେଉଁ ପରି ଜାଣିବ ବା କିଏ ?
ସିଏ ତ ନୁହନ୍ତି କେଉଁ ଇନ୍ଦ୍ରିୟ ବିଷୟ
ଇନ୍ଦ୍ରିୟରେ କିଏ ତାଙ୍କୁ ଜାଣିବ ବା କହ ?

ସେ ଉପାୟ ତୋତେ ପୁତ୍ର କହିବି ଯେପରି
ତୁ ତାହାକୁ ମନୋଗତେ ରଖିଥିବୁ ଧରି।
ବିଷୟ କଳ୍ପନା ହୀନ ବୁଦ୍ଧିରେ ରେ ଧନ
ଅବିରତେ ଏ ଆତ୍ମାଙ୍କୁ କରିବ ମନନ।
ମନ ନିୟନ୍ତାକୁ ବାବୁ 'ମନୀଷା' ବୋଲାଏ
ପ୍ରତି ହୃଦ ଗୁହାରେ ସେ ଅବସ୍ଥିତ ଥାଏ।
ସଂକଳ୍ପ ବିକଳ୍ପାତ୍ମକ ଅଟଇ ଏ ମନ
ଏ ମନେ ହୁଅଇ ନାହିଁ ଆତ୍ମ-ଦରଶନ।
ମନ ନାଥ ବୁଦ୍ଧି, ଯେବେ ସଂଶୟ ରହିତ
ସେ ବୁଦ୍ଧିରେ ମାତ୍ର ଆତ୍ମା ହୁଅନ୍ତି ବିମ୍ବିତ।
ଆତ୍ମା ଲାଭ ପାଇଁ ଆର ଉପାୟ ଏହିତ
ଶୁଦ୍ଧ ବୁଦ୍ଧିରେ ହିଁ ଆତ୍ମା ହୁଅନ୍ତି ବିଦିତ॥"

**ପରମପଦ ପ୍ରାପ୍ତି :**

**ଯଦା ପଞ୍ଚାବତିଷ୍ଠନ୍ତେ ଜ୍ଞାନାନି ମନସା ସହ ।**
**ବୁଦ୍ଧିଶ୍ଚ ନ ବିଚେଷ୍ଟତି ତାମାହୁଃ ପରମାଂ ଗତିମ୍ ॥ ୧୦ ॥**

ପଞ୍ଚ ଜ୍ଞାନେନ୍ଦ୍ରିୟେ ହୋଇ ବିଷୟୁଁ ନିବୃତ୍ତ
ଯେବେ ସ୍ଥିର ଶାନ୍ତ ମନେ ହୁଅନ୍ତି ସଂଯୁକ୍ତ,
ପୁଣି ଯେବେ ବୁଦ୍ଧି ଲଭେ ସ୍ୱକାର୍ଯ୍ୟୁଁ ବିରତି
ଯୋଗିଜନେ କହିଥାନ୍ତି ସେ ପରମ ଗତି" ॥ ୧୦ ॥

"ଶୁଣ ବାବୁ , ଯୋଗୀ ଜନେ ସାଧନା ସମୟେ,
ଜ୍ଞାନ ପ୍ରକାଶକ ଯେତେ ଇନ୍ଦ୍ରିୟ ନିଚୟେ,
ବିଷୟ ବୃତ୍ତିଙ୍କ ଠାରୁ ଅପସାରି ଦୂରେ
ମନ ସହ ଯୁକ୍ତ କରୁଥିଲେ ଅନ୍ତଃପୁରେ।

Digitized by srujanika@gmail.com

ବିଷୟ ବିମୁକ୍ତ ମନ ସ୍ଥିର ଅଚଞ୍ଚଳ
ସଂକଳ୍ପ ବିକଳ୍ପେ ହୁଏ ନାହିଁ ହଲଚଲ।
ସଂକଳ୍ପ ବିକଳ୍ପେ ହେଲେ ଏ ମନ ଅସ୍ଥିର
ତହିଁ ବୁଦ୍ଧି ଯାଇ କରେ ଏକ କଥା ସ୍ଥିର।
କିନ୍ତୁ ସ୍ଥିର ମନେ ବୁଦ୍ଧି ସ୍ଥିର ହୋଇଯାଏ
ମନ ବୁଦ୍ଧି ଓ ଇନ୍ଦ୍ରିୟେ ଏକତ୍ର ମିଳାଏ।
ଏହି ଅବସ୍ଥାକୁ ଯୋଗୀ ଋଷିଏ କହନ୍ତି
ଯୋଗର ତ ଶ୍ରେଷ୍ଠାବସ୍ଥା, ସେ ପରମଗତି।''

**ତାଂ ଯୋଗମିତି ମନ୍ୟନ୍ତେ ସ୍ଥିରାମିନ୍ଦ୍ରିୟଧାରଣାମ୍ ।**
**ଅପ୍ରମତ୍ତସ୍ତଦା ଭବତି ଯୋଗୋ ହି ପ୍ରଭବାପ୍ୟୟୌ ॥ ୧୧ ॥**

''ସକଳ ପ୍ରକାର ସ୍ଥିର ଇନ୍ଦ୍ରିୟ ଧାରଣା
ଯୋଗ ସ୍ୱରୂପରେ ହୋଇଥାଏ ବିବେଚନା।
ଯୋଗ କାଳେ ଯୋଗୀ ହେବେ ପ୍ରମାଦ ରହିତ,
ଯେଣୁ ଯୋଗେ ସିଦ୍ଧି ଆଉ ବିନାଶ ଅଛି ତ।''।୧୧।

''ବିଷୟର ପଛେ ପଛେ ଇନ୍ଦ୍ରିୟେ ନ ଧାଇଁ
ରହିଲେ କିଙ୍କର ପ୍ରାୟେ ମନ ପାଶେ ଯାଇ,
ଆଉ ପୁଣି ସେହି ସ୍ଥିର ଅଚଞ୍ଚଳ ମନ,
ଆତ୍ମା ସାଥେ ଯେବେ ଲାଖି ରହେ ଅନୁକ୍ଷଣ,
ତେବେ ସେ ସ୍ଥିତିକୁ ଯୋଗ କହନ୍ତି ଯୋଗୀଏ
ଯୋଗୀ ଜନଙ୍କର ଆତ୍ମ ସମାଧି ତ ସିଏ।
ପାର୍ଥିବ ଜଗତ ଠାରୁ ସମ୍ପୂର୍ଣ୍ଣ ବିଯୋଗ
ଆତ୍ମିକ ସ୍ତରରେ କୁହାଯାଇଥାଏ ଯୋଗ।

କହି ନ ହୁଅଇ ମୁଖେ, ନେତ୍ରେ ନ ଦିଶଇ
କର୍ଣ୍ଣେ ନ ଶୁଭଇ ସେ ତ ଅଦ୍ଭୁତ ଲାଗଇ।
ଯୋଗ ସମାଧିର ଯୋଗୀ ଲଭନ୍ତି ଯେ ସୁଖ
ପାରିବ କେ ବର୍ଣ୍ଣି ହେଲେ ମଧ୍ୟ ଶତମୁଖ।
କିନ୍ତୁ ଏହି ସ୍ଥିତି ବହୁକାଳ ରହେ ନାହିଁ,
ଯୋଗର ଉତ୍ପତ୍ତି ଆଉ ପତନ ଯେ ଥାଇ।

Digitized by srujanika@gmail.com

ଯେତେବେଳେ ଯୋଗକାଳ ହୁଅଇ ଅତୀତ,
ଇନ୍ଦ୍ରିୟେ ପୁଣି ହୋଇଥାନ୍ତି ଉଜ୍ଜୀବିତ।
ଚଞ୍ଚଳ ନୁହଁଇ ଯେହ୍ନେ ସେ ସମୟେ ଚିତ୍ତ,
ସେ ପାଇଁ ସତର୍କ ହେବା ଯୋଗୀଏ ଉଚିତ।
ଆହୁରି କଥାଏ ବାବୁ ରଖିବୁ ତୁ ମନେ,
ଯୋଗ ବୋଲି ଯା' କହନ୍ତି ଶାସ୍ତ୍ରବିତ୍ ଗଣେ,
ଚିତ୍ତବୃତ୍ତି ନିରୋଧକୁ ସେ ଯୋଗ କହନ୍ତି
କିନ୍ତୁ ଏଠି ଆତ୍ମଜ୍ଞାନୀ ଏ ପ୍ରଶ୍ନ କରନ୍ତି–
ବୃତ୍ତି ନିରୋଧିଲେ ଆଉ ରହେନି ତ ଜ୍ଞାନ
ବ୍ରହ୍ମଜ୍ଞାନ ପାଇଁ ତେବେ ଆଉ କାହିଁ ସ୍ଥାନ ?
ମନବୃତ୍ତି ଶୂନ୍ୟ ହେବା, ନ ରହିବା ଜ୍ଞାନ,
ଜାଣିବୁରେ ବାବୁ ତାହା ସୁଷୁପ୍ତି ସମାନ।
ସୁଷୁପ୍ତି ତ ଅଜ୍ଞାନତା, ଏହି ସ୍ଥିତି ଲଭି
କିଏ କି ପାରଇ କରି ବ୍ରହ୍ମ ଉପଲବ୍ଧି ?
ମନ ବୃତ୍ତି ଶୂନ୍ୟ ତେଣୁ ନ କରି ନନ୍ଦନ,
ବ୍ରହ୍ମାକାର ବୃତ୍ତି ପାଇଁ କରିବ ଯତନ।
ମନ ଚଞ୍ଚଳତା ହୀନ ହୋଇବା ବିଧେୟ,
ତା' ବୋଲି ନିଷ୍କ୍ରିୟ ହେଉ– ନୁହେଁ ଏହା ଧେୟ।
ନିଷ୍କ୍ରିୟ ନ କରି ତାକୁ ଏକାଗ୍ର କରିବ
ତେବେ ଆତ୍ମ-ଦରଶନ ଅବଶ୍ୟ ହୋଇବ।

**ଆତ୍ମୋପଲବ୍ଧି ସାଧନ ହିଁ ସଦ୍‌ବୁଦ୍ଧି :**

**ନୈବ ବାଚା ନ ମନସା ପ୍ରାପ୍ତୁଂ ଶକ୍ୟୋ ନ ଚକ୍ଷୁଷା ।**
**ଅସ୍ତୀତି ବ୍ରୁବତୋଽନ୍ୟତ୍ର କଥଂ ତଦୁପଲଭ୍ୟତେ ॥ ୧୨ ॥**

''କହି ନ ହୁଅଇ ଏହି ଆତ୍ମାକୁ ବଚନେ,
ପାଇ ନ ହୁଅଇ ତାକୁ ଚକ୍ଷୁ ଆଉ କର୍ଣ୍ଣେ;
ସେ ଅଛନ୍ତି, ଏହା କହି ଥାଆନ୍ତି ଯେ ଜନେ
ତାଙ୍କ ଛଡ଼ା ଅନ୍ୟ ତାକୁ ପାଇବେ କେସନେ ?'' ॥ ୧୨ ॥

Digitized by srujanika@gmail.com

"ମନ ବୁଦ୍ଧି ଇନ୍ଦ୍ରିୟରେ ଏ ମଣିଷ ଯେବେ,
ବ୍ରହ୍ମଙ୍କୁ ପାରନ୍ତାଜାଣି, ସେ କହନ୍ତା ତେବେ,
'ଏପରି ସେପରି ବ୍ରହ୍ମ' ତେବେ ତା' ବଚନ
ଅନ୍ୟ ଲୋକେ ଅବା କରି ପାରନ୍ତେ ଗ୍ରହଣ।
ଯେଣୁ ସିଏ ଉପଲବ୍ଧ ନୁହନ୍ତି ଏପରି
ତେଣୁ ବ୍ରହ୍ମ ଥିବା କଥା ଭାବିବା କିପରି ?
ଇନ୍ଦ୍ରିୟ ଗୋଚର ବସ୍ତୁ ଯେତେ ଏ ଜଗତେ
ତାହା 'ସତ୍' ବୋଲି ଭାବି ଥାଆନ୍ତି ସମସ୍ତେ।
ଏପରି ଯା ନୁହେଁ ତାହା ଅସତ୍ ନିଶ୍ଚିତ
ତେଣୁ "ବ୍ରହ୍ମ ନାସ୍ତି" ମତେ ହୁଅନ୍ତି ସେ ସ୍ଥିତ।
ଏ ପ୍ରକାର ଲୋକେ କେବେ ଜୀବନେ ତାଙ୍କରି
ଆତ୍ମାଙ୍କୁ ପାଆନ୍ତି ନାହିଁ ଶତ ଚେଷ୍ଟା କରି।

ବାକ୍ୟ ମନ ନେତ୍ରେ ବ୍ରହ୍ମ ହେଲେ ବି ଅଜ୍ଞେୟ
ତଥାପି ଜଗତ ମୂଳ ରୂପେ ସେ ତ ଜ୍ଞେୟ।
ଏପରି ଆସ୍ତିକ ବାଦୀ ପୁରୁଷ ନିକରେ
ଆତ୍ମ-ଉପଲବ୍ଧି କରି ପାରନ୍ତି ଅନ୍ତରେ।"

**ଅସ୍ତୀତ୍ୟେବୋପଲବ୍ଧବ୍ୟସ୍ତତ୍ତ୍ୱଭାବେନ ଚୋଭୟୋଃ।**
**ଅସ୍ତୀତ୍ୟେବୋପଲବ୍ଧସ୍ୟ ତତ୍ତ୍ୱଭାବଃ ପ୍ରସୀଦତି ॥ ୧୩॥**

"ସେ ଅଛନ୍ତି ଏ ଭାବରେ ଦୃଢ଼ କରି ଚିତ୍ତ,
ଆତ୍ମ-ଉପଲବ୍ଧି କେହି କରିବା ଉଚିତ।
ନତୁବା ସେ "ତତ୍ତ୍ୱ ଭାବେ ହୁଅନ୍ତି ପ୍ରାପତ",
ଦୁଇ ଉପଲବ୍ଧି ମଧ୍ୟେ ଏ ମୋହର ମତ,
ଅଛନ୍ତି ଭାବରେ ଯିଏ ଆତ୍ମାଙ୍କୁ ଜାଣନ୍ତି
ତାଙ୍କ ପାଶେ ତତ୍ତ୍ୱଜ୍ଞାନ ଆପେ ପ୍ରକାଶନ୍ତି।"।୧୩।

"ଆତ୍ମାଙ୍କ ଅସ୍ତିତ୍ୱ ଅବା ସତ୍ତା ବିଷୟରେ
ଆଗରୁ କହିଛି ପୁତ୍ର କେତେ ତୋ ଆଗରେ।
କିନ୍ତୁ କଣ ଖାଲି 'ବ୍ରହ୍ମ ଅଛନ୍ତି' ଜାଣିଲେ
ବ୍ରହ୍ମ ଉପଲବ୍ଧି ହୋଇ ପାରିବ ଏଥିରେ ?
ତେଣୁ ତାଙ୍କ 'ତତ୍ତ୍ୱ ଭାବ' ସ୍ୱରୂପ ବିଷୟ
ଭଲ ଭାବେ ଜାଣିବାକୁ ପଡ଼ିବ ନିଶ୍ଚୟ।

Digitized by srujanika@gmail.com

କାରଣ ଜ୍ଞାତବ୍ୟ ଯେଣୁ ଏହି ଆତ୍ମ ଦେବ,
ସ୍ୱରୂପ ନ ଜାଣି ତାଙ୍କୁ କେହ୍ନେ ଜାଣିହେବ ?
ଆତ୍ମାଙ୍କର ମୁଖ୍ୟ ମୁଖ୍ୟ ଯେତେ ତତ୍ତ୍ୱଭାବ,
'ସତ୍ୟ-ଜ୍ଞାନ ଆନନ୍ଦ'ରେ ହୋଇପାରେ ଠାବ।
ଆସ୍ତିକ ନାସ୍ତିକ' ଏଇ ବେନିଙ୍କ ମଧ୍ୟରେ
କେବଳ ଆସ୍ତିକ ବ୍ରହ୍ମ ଉପଲବ୍ଧି କରେ।
ନାସ୍ତିକର ନାହିଁ ଯେଣୁ ଆତ୍ମାରେ ପ୍ରତୀତି
ଆତ୍ମ-ଉପଲବ୍ଧି ତାର ହୋଇବ କେମିତି ?
ଜଗତ କାରଣ ରୂପେ ଏକ ଅଦ୍ୱିତୀୟ
ସଦ୍‌ବସ୍ତୁ ଅଛନ୍ତି ବୋଲି ଆଗେ ଭାବି ନିଅ।
ସୋପାଧିକ ରୂପେ ତାଙ୍କୁ ପ୍ରଥମେ ଜାଣିବ
ତହୁଁ ତାଙ୍କ ତତ୍ତ୍ୱ ଭାବ ପରେ ଉକୁଟିବ।
ଉପାଧି ରହିତ ନିର୍ବିଶେଷ ଚଇତନ୍ୟ
ଧ୍ୟାନରେ କରିବ ଏହି ପ୍ରକାରେ ଚିନ୍ତନ।
ଜଗତ କାରଣ ଯେଣୁ ଅଟନ୍ତି ଏ ସତ୍
କାର୍ଯ୍ୟ ଏ ଜଗତ କେହ୍ନେ ହୋଇବ ଅସତ୍ ?
ଜଗତ ଉପାଧି ଧରି ଯିଏ ପ୍ରକାଶିତ
ଉପାଧି ରହିତ ଭାବେ ସେ ଆତ୍ମା ନିଶ୍ଚିତ।
ତେଣୁ ତାଙ୍କୁ ଏ ଜଗତ କାରଣ ରୂପରେ,
ଭାବିବାକୁ ଆମେ ବାଧ ହେଉ ନିରନ୍ତରେ।
କିନ୍ତୁ ସେ ତ ସବୁ କାର୍ଯ୍ୟ କାରଣ ଅତୀତ,
ବୁଝିବାକୁ 'ଅସ୍ତି' 'ସତ୍' ରୂପରେ ବିଦିତ ॥"

**ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେଽସ୍ୟ ହୃଦି ଶ୍ରିତାଃ।**
**ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ ॥ ୧୪ ॥**

"ମଣିଷ ହୃଦୟେ ଯେତେ କାମନା ଆଶ୍ରିତ,
ସେହି ସବୁ ଯେତେବେଳେ ହୁଏ ବିଦୂରିତ,
ତେବେ ତ ମରଣଶୀଳ ନର ଅମୃତତ୍ୱ
ଲାଭ କରିବାକୁ ହୋଇ ପାରଇ ସମର୍ଥ।
ବନ୍ଧନ ବିମୁକ୍ତ ହୋଇ ଏଇ ଶରୀରରେ
ନିଃସଂଶୟ ଭାବେ ବ୍ରହ୍ମ ଭାବ ଲାଭ କରେ। ୧୪।

Digitized by srujanika@gmail.com

‘‘ମଣିଷ ଏ ଲୋକେ ବ୍ରହ୍ମ ଉପଲବ୍ଧି କରି
ଅମୃତତ୍ୱ ଲାଭ କରି ପାରିବ ଯେପରି,
ତାହା ମୁହିଁ କହିଅଛି ପୁତ୍ର ବାରବାର
ଯେଉଁ ଲାଭେ ହୋଇଥାଏ ପୁରୁଷାର୍ଥ ସାର ।

ଏହି ଲକ୍ଷ୍ୟ ସିଦ୍ଧି ପଥେ ଯେତେ ଅନ୍ତରାୟ
ଜାଣି ଦୂର କରିବାକୁ କହୁଛି ତନୟ ।
ଯେତେକ ବିଷୟ ବାବୁ ଆପଦର ସ୍ଥଳି
ବୁଦ୍ଧି ବିଚାରକୁ ଦିଏ ନିମିଷକେ ଦଳି ।
ଦୁର୍ଜ୍ଜୟ ଲାଳସା ମନ-ଘୋଡ଼ାକୁ ତାହାରି
ଆକାଶେ ଉଡ଼ାଇ ନିଏ କିଛି ନ ବିଚାରି ।
ତାଡ଼ନା ଭର୍ତ୍ସନା ସହି ଶ୍ୱାନ ନ ଛାଡ଼ଇ
ଅଇଁଠା ପତର ଅବା ଉଚ୍ଛିଷ୍ଟରେ କାହିଁ ।
ଗଧୁଣୀର ପଛପାଦ ପ୍ରହାରେ ନ ଚେତି
ଯେସନେ ପଛରେ ଧାଏଁ ଗଧ ଅବିବେକୀ,
ବଳି ପକା ଛେଳି ବେକ ବେଲ ପତ୍ର ମାଳ
ଜିଭ ଲାଳସାରେ ଯେହ୍ନେ ଖାଏ ବାର ବାର,
ଚୋରୀ ନାରୀ ବେଶ୍ୟା ଅର୍ଥ ଅନର୍ଥର ମୂଳ
ତାହାଙ୍କୁ ସେବିଲେ ସାର ଯିବା ନର୍କ ପୁର ।
ତେସନେ ଉଦିତ କାମ କାମନା ନିକର
ମଣିଷର ମନ କରେ ନିରତେ ଚଞ୍ଚଳ ।

ବିଷୟେ ଆସକ୍ତି ଆଉ ତହିଁରେ କାମନା,
ମଣିଷର ଯେତେ ଯେତେ କାମନା ବାସନା,
ସବୁ ଅନ୍ତରାୟ ହୁଏ ଆତ୍ମଜ୍ଞାନ ପଥେ
ବିଚଳିତ ଚିତ୍ତେ ଢେଉ ଉଠେ ଅବିରତେ ।

ଏ ଶରୀରେ ଜଣେ ଯଦି ହୁଅଇ ନିଷ୍କାମ
ଅମୃତତ୍ୱ ଲାଭ ତାର ଶେଷ ପରିଣାମ ।।’’

ଯଦା ସର୍ବେ ପ୍ରଭିଦ୍ୟନ୍ତେ ହୃଦୟସ୍ୟେହ ଗ୍ରନ୍ଥୟଃ ।
ଅଥ ମର୍ତ୍ତ୍ୟୋଽମୃତୋ ଭବତ୍ୟେତାବଦ୍ଧ୍ୟନୁଶାସନମ୍ ।।୧୫।।

‘‘ମଣିଷର ହୃଦ ସ୍ଥିତ ଗ୍ରନ୍ଥି ସମୁଚ୍ଚୟ,
ଆତ୍ମ-ଜ୍ଞାନେ ଯେତେବେଳେ ହୁଅଇ ବିଲୟ,

Digitized by srujanika@gmail.com

ସେତେବେଳେ ମୃତ୍ୟୁଶୀଳ ଏ ସାଧକ ନର
ସକଳ ବନ୍ଧନ ଛେଦି ହୁଅଇ ଅମର ।
ଏ ଯାଏ କେବଳ ମାତ୍ର ବେଦାନ୍ତ ଆଦେଶ
ବ୍ରହ୍ମଭାବ ପ୍ରାପ୍ତି ପରେ ତାହା ହୁଏ ଶେଷ ।୧୫।

"ହୃଦୟ ଗ୍ରନ୍ଥିକୁ ବାବୁ ବୁଝ ଭଲ ରୂପେ,
ତେବେ ତ ପଡ଼ିବୁ ନାହିଁ ଅନ୍ଧକାର କୂପେ ।
ଗ୍ରନ୍ଥି ପରି ଦୃଢ଼ ଏଇ ସଂସାର ବନ୍ଧନ
ଏ ବନ୍ଧନ ଭୟେ ଭାଜିଯାନ୍ତି ଯୋଗୀଜନ ।
'ମୁଁ ଦେହ', 'ମୋହର ଧନ ଐଶ୍ୱର୍ଯ୍ୟ ବଢ଼ାଇ'
ମୃତ୍ୟୁର କବଳେ ପୁତ୍ର କିଛି ରହେ ନାହିଁ ।
ଅବିଦ୍ୟାରୁ ଏହି ଭ୍ରାନ୍ତ ପ୍ରତୀତି ସଂସାର
କିଛି ତ କାହାରି ନୁହଁ, କେହି ବା କାହାର ।
ବେଦାନ୍ତ ଦର୍ଶନେ ଏହି ସବୁ ହୃଦ-ଗ୍ରନ୍ଥି,
ଅବିଦ୍ୟା ଅଜ୍ଞାନ ମୋହ ପ୍ରକଟ କରନ୍ତି ।

ଏ ଦର୍ଶନେ ନିଜେ ହିଁ ତ ନିତ୍ୟ ଶୁଦ୍ଧ ବୁଦ୍ଧ,
ସେ କିନ୍ତୁ ଅନିତ୍ୟେ ସଦା ହୁଅଇ ପ୍ରଲୁବ୍ଧ ।
ଏ ସତ୍ୟ-ସ୍ୱରୂପ ଜୀବ ଅନିତ୍ୟ ନିରେଖି
ସୁଖ ଦୁଃଖ କରେ ଭୋଗ ହୋଇ ଅବିବେକୀ ।
ଅନ୍ଧାରେ ଦଉଡ଼ି ଦେଖି ଯେହ୍ନେ ଭ୍ରମ ବଶେ,
'ସର୍ପଭୟ' କେହ୍ନେ ତାର ଛାତି ମାଡ଼ି ବସେ ।
ପାଟି ଖନି ମାରିଯାଏ, ଉଠଇ ଚମକି
ଜୀବନର ଆଶା ଆଉ ନ ପାରଇ ରଖି ।
ଜୀବର ସ୍ୱରୂପ ଜ୍ଞାନ ନଥିବା କାରଣେ
କାମ କାମନାରେ ଛନ୍ଦି ହୁଏ ଅକାରଣେ ।
ଆତ୍ମଜ୍ଞାନେ ହୃଦଗ୍ରନ୍ଥି ସବୁହେଲେ ନାଶ,
ତେବେ ବ୍ରହ୍ମଭାବ ହୁଏ ହୃଦୟେ ପ୍ରକାଶ ।
ଏ ଭାବ ଉଦୟେ ଏହି ମୃତ୍ୟୁଶୀଳ ନର
ଏହି ଏ ଶରୀରେ ହୋଇ ପାରଇ ଅମର ।

ଯେତେ ଗୁରୁ ଶିକ୍ଷା ଯେତେ ଶାସ୍ତ୍ର ଉପଦେଶ,
ଏହି ଭାବ ପ୍ରାପ୍ତି ପରେ ସବୁ ହୁଏ ଶେଷ ।"

Digitized by srujanika@gmail.com

**ଶତଞ୍ଚୈକା ଚ ହୃଦୟସ୍ୟନାଡ୍ୟ**
**ସ୍ତାସାଂ ମୂର୍ଦ୍ଧାନମଭିନିଃସୃତୈକା ।**
**ତୟୋର୍ଦ୍ଧ୍ୱମାୟନ୍ନମୃତତ୍ୱମେତି**
**ବିଷ୍ୱଙ୍ଙନ୍ୟା ଉତ୍କ୍ରମଣେ ଭବନ୍ତି ॥୧୬॥**

"ଏକ ଶତ ଏକ ନାଡ଼ି ଏ ହୃଦେ ରହିଛି
ତହୁଁ ଏକ ତାଳୁ ଭେଦି ବାହାରେ ଯାଇଛି
ଏ ନାଡ଼ିରେ ଯାହାଙ୍କର ହୁଏ ଉର୍ଦ୍ଧ୍ୱଗତି,
ସେ ପୁରୁଷେ ଅମୃତତ୍ୱ ଅବଶ୍ୟ ଲଭନ୍ତି
ଅନ୍ୟ ପଥଗାମୀ ଭିନ୍ନ ନାଡ଼ି ଗୁଡ଼ିକରେ
ପ୍ରାଣବାୟୁ ଚାଲି ଯାଏ ମୃତ୍ୟୁ ସମୟରେ । ୧୬ ।

"ଏ ସମ୍ପୂର୍ଣ୍ଣ ଶରୀରର ନିୟନ୍ତା ରୂପରେ
ଯେଉଁ ସ୍ଥାନେ ବାବୁ ଜୀବ ଅବସ୍ଥାନ କରେ,
ସେ ହୃଦୟ, ତହୁଁ ଏକ ଶତ ଏକ ନାଡ଼ି
ଦେହ ସାରା ଚଉଦିଗେ ରହିଛି ବିଛାଡ଼ି ।
ପ୍ରାଣବାୟୁ ଗତାଗତ କରେ ଯେଉଁ ପଥେ
ତାହା ନାଡ଼ି ବୋଲି କହି ଥାଆନ୍ତି ସମସ୍ତେ ।
ତା ଭିତରୁ ଏକ ନାଡ଼ି ଧରି ଉର୍ଦ୍ଧ୍ୱପଥ
ବ୍ରହ୍ମ ତାଳୁ ଭେଦ କରି ହୋଇଛି ନିର୍ଗତ ।
ଏହି ନାଡ଼ି ଦେଇ ଯଦି ପ୍ରାଣବାୟୁ ଯାଏ
ତେବେ ସେହି ଜୀବ ନିଶ୍ଚେ ଅମୃତତ୍ୱ ପାଏ ।
ସେ ନାଡ଼ି ବ୍ୟତୀତ ଅନ୍ୟ ଯେତେ ସବୁ ନାଡ଼ି
ଜୀବକୁ ଶରୀରୁ ମାତ୍ର ଦେଇଥାଏ କାଢ଼ି ।
ଏହିସବୁ ନାଡ଼ି ପଥେ ଗତି କଲେ ଜୀବ
ଭିନ୍ନ ଭିନ୍ନ ଲୋକକୁ ସେ ଅବଶ୍ୟ ଲଭିବ ।

ସେହି ସୂକ୍ଷ୍ମ ନାଡ଼ି ଗୋଟି ସୁଷୁମ୍ନା କଥିତ
ବ୍ରହ୍ମ-ରନ୍ଧ୍ର ଭେଦ କରି ନିଃସୃତ ସେହିତ ।
ମରଣେ ସୁଷୁମ୍ନା ନାଡ଼ି ପଥେ କଲେ ଗତି
ଏ ଶରୀରେ ମଣିଷର ହୁଅଇ ମୁକତି ।
ଅମୃତତ୍ୱ ମିଳେ ଆଉ ନହୁଏ ଜନମ
ଭୋଗେନା ସଂସାର କ୍ଲେଶ ଯନ୍ତ୍ରଣା ଚରମ ।"

Digitized by srujanika@gmail.com

**ଉପସଂହାର :**

**ଅଙ୍ଗୁଷ୍ଠମାତ୍ରଃ ପୁରୁଷୋଽନ୍ତରାତ୍ମା**
**ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ ।**
**ତଂ ସ୍ୱାତ୍ ଶରୀରାତ୍ ପ୍ରବୃହେନ୍ମୁଞ୍ଜାଦିବେଷୀକାଂ ଧୈର୍ଯ୍ୟେଣ ।**
**ତଂ ବିଦ୍ୟାଦ୍ ଶୁକ୍ରମମୃତଂ ତଂ ବିଦ୍ୟାତ୍ ଶୁକ୍ରମମୃତମିତି ॥ ୧୭ ॥**

''ଅନ୍ତରାତ୍ମା ପୁରୁଷ ଯେ ଅଙ୍ଗୁଷ୍ଠ ପ୍ରମାଣ
ସର୍ବଜୀବ ହୃଦୟରେ ସଦା ବିଦ୍ୟମାନ
ମୁଞ୍ଜା ଘାସୁ ଈଷିକାକୁ ଯେସନ ପ୍ରକାର,
ଧୀରେ ଅତି ଧୀରେ କରା ହୁଅଇ ବାହାର,
ତେସନେ ମୁମୁକ୍ଷୁ ଧୀର ବିଚାର ପୂର୍ବକ
ନିଜ ଦେହୁଁ ଏ ଆତ୍ମାକୁ କରିବେ ପୃଥକ ।
ସେ ପୃଥକୀକୃତ ଆତ୍ମାପୁରୁଷ ମହାନ
ବିଶୁଦ୍ଧ ଅମୃତ ପରମାତ୍ମା ବୋଲି ଜାଣ ॥ ୧୭ ॥''

''ମୁକ୍ତିକାମୀ ସାଧକର କର୍ତ୍ତବ୍ୟ କଅଣ,
ଏ ଅନ୍ତିମ ଶ୍ଳୋକେ ପୁତ୍ର କର ତୁ ଶ୍ରବଣ ।
ଯେଉଁ ପରମାତ୍ମା ସର୍ବଜୀବ ହୃଦେ ସ୍ଥିତ
ସେ ପୁରୁଷ ସବୁ ପୂର୍ଣ୍ଣ କରି ପ୍ରତିଷ୍ଠିତ ।
ଜୀବର ହୃଦରେ ପୁଣି ବିଶ୍ୱ ଚରାଚରେ
ପରାତ୍ପର ରୂପେ ପୂରିଛନ୍ତି ନିରନ୍ତରେ ।

ଈଷିକା ଯେସନେ ଥାଏ ମୁଞ୍ଜାରେ ଗୋପନେ
ତେସନେ ଆବୃତ ଆତ୍ମା ଦେହେନ୍ଦ୍ରିୟେ ମନେ ।
ମୁଞ୍ଜାରୁ ଈଷିକା ଯେହ୍ନେ କରନ୍ତି ବାହାର
ମୁକ୍ତିକାମୀ ସାଧକେ ତ ତେସନ ପ୍ରକାର,
ଅଶେଷ ଧୈର୍ଯ୍ୟର ସହ ବିଚାର ବୁଦ୍ଧିରେ
ଆତ୍ମାକୁ କରନ୍ତି ଭିନ୍ନ ପଞ୍ଚକୋଷୁ ଧୀରେ ।
ଅନ୍ତରାତ୍ମା ସ୍ୱରୂପତଃ ପରମାତ୍ମା ଜାଣ
ସେ ବିଶୁଦ୍ଧ, ସେହି ପୁଣି ଅମୃତ ସମାନ ॥ ୧୭ ॥

Digitized by srujanika@gmail.com



**ମୃତ୍ୟୁପ୍ରୋକ୍ତାଂ ନଚିକେତୋଽଥ ଲବ୍ଧ୍ବା**
**ବିଦ୍ୟାମେତାଂ ଯୋଗବିଧିଂ ଚ କୃତ୍ସ୍ନମ୍**
**ବ୍ରହ୍ମପ୍ରାପ୍ତୋ ବିରଜୋଽଭୂଦ୍ ବିମୃତ୍ୟୁ-**
**ରନ୍ୟୋଽପ୍ୟେବଂ ଯୋ ବିଦଧ୍ୟାତ୍ମମେବ ॥ ୧୮ ॥**

— ଇତି କଠୋପନିଷତ୍ସମାପ୍ତା —

ଏ ଉତ୍ତାରୁ ନଚିକେତା ଯମଙ୍କ କଥିତ,
ବ୍ରହ୍ମବିଦ୍ୟା ଯୋଗବିଧି ହୋଇ ଅବହିତ,
ବ୍ରହ୍ମପ୍ରାପ୍ତ ହେଲେ, ହେଲା ସୁନିର୍ମଳ ଚିତ୍ତ
ଯଥାକାଳେ ହେଲେ ପୁଣି ସଂସାର ଅତୀତ ।
ଅପର ଯେ କେହି ମଧ୍ୟ ଏସନ ପ୍ରକାରେ
ଆତ୍ମଜ୍ଞାନ ଲାଭ କରି ପାରିବେ ଏଠାରେ ॥ ୧୮ ॥

ବିବେକ ବୈରାଗ୍ୟବାନ ଗୌତମ ନନ୍ଦନ
ଯମ-ଦତ୍ତ-ବିଦ୍ୟା କରି ବିନୟେ ଶ୍ରବଣ,
ସମ୍ପୂର୍ଣ୍ଣ ସାଧନ ବିଧି ହୋଇ ଅବଗତ
ପୂର୍ଣ୍ଣ କଲେ ଜୀବନର ଏହି ପୁଣ୍ୟ ବ୍ରତ ।
ବ୍ରହ୍ମପ୍ରାପ୍ତ ହୋଇ ଲାଭ କଲେ ଅମୃତତ୍ତ୍ୱ,
ମୃତ୍ୟୁମୟ ମର୍ତ୍ତ୍ୟେ ଆଉ ନ ଭ୍ରମିଲେ ପଥ ।
କେବଳ ଯେ ନଚିକେତା ଥିଲେ ବ୍ରହ୍ମ ଲଭି
ହୃଦୟରେ ଥିଲେ କରି ଆତ୍ମ ଉପଲବ୍ଧି
ତାହା ନୁହେଁ ତାହା ନୁହେଁ ଯେ କେହି ସାଧନେ
ବ୍ରହ୍ମବିଦ୍ୟା ଲାଭ କରି ପାରିବେ ଜୀବନେ ।
ସମସ୍ତଙ୍କ ଅମୃତତ୍ତ୍ୱ ଲାଭେ ଅଧିକାର
ମଣିଷ ନିମନ୍ତେ ଏହି ପୂର୍ଣ୍ଣ ଅଙ୍ଗୀକାର ।
ଶ୍ରୁତି ଦିଏ ଉଦ୍‌ବୋଧନ ଏ ଉପନିଷଦେ
'ଅମୃତ ସନ୍ତାନ ଆରେ ଜାଗି ଉଠ ସର୍ବେ ।
ସର୍ବେ ହୁଅ ମୃତ୍ୟୁମୟ ସଂସାର ଅତୀତ
ବୃଥା ଶୋକ ମୋହେ କିଆଁ ହୁଅ ଉତ୍ପୀଡ଼ିତ ?
ମୋହ ନିଦ୍ରା ତେଜି ଉଠ, ହୁଅ ଆଗୁସାର
ଅମୃତତ୍ତ୍ୱ ଲାଭେ ତୁମ ପୂର୍ଣ୍ଣ ଅଧିକାର ।''
ରହିଛି ସୁଯୋଗ ପୁଣି ରହିଛି ସମୟ
କର ଏବେ ଜୀବନକୁ ଦିବ୍ୟାନନ୍ଦମୟ ॥

ଓଁ ସହନାବବତୁ, ସହ ନୌ ଭୁନକ୍ତୁ, ସହ ବୀର୍ଯ୍ୟଂ କରବାବହୈ ।
ତେଜସ୍ୱି ନାବଧୀତମସ୍ତୁ । ମା ବିଦ୍ୱିଷାବହୈ ॥ ଓଃ ଶାନ୍ତିଃ ଶାନ୍ତିଃ ଶାନ୍ତିଃ

—o—

Digitized by srujanika@gmail.com

# ବେଦାନ୍ତ ପାଠଚକ୍ର
## ଭୁବନେଶ୍ୱର

ଧର୍ମ କେବଳ ବିଭିନ୍ନ ସମ୍ପ୍ରଦାୟର ଭିନ୍ନଭିନ୍ନ ଉପାସନାପଦ୍ଧତି ନୁହେଁ କିମ୍ବା କେତେକ ଲୋକଙ୍କ ସକାଶେ ନିଜ ରୁଚି ସଂମତ ଏକ ମତବାଦ ମଧ୍ୟ ନୁହେଁ। ଏହା ସମଗ୍ର ମାନବ ଜାତିର କଲ୍ୟାଣକାରୀ ଶକ୍ତି ବିଶେଷ। ସବୁ ଅବସ୍ଥାରେ ଧର୍ମ ଯଦି ମଣିଷର ସହାୟତା କରି ନ ପାରିଲା, ତା'ହେଲେ ତାକୁ ଧର୍ମ କୁହାଯାଇପାରିବ ନାହିଁ। ମହନୀୟ ଭାବନାରେ ମଣିଷକୁ ଦେବତା କରିବାହିଁ ହେଉଛି ବେଦାନ୍ତ-ଧର୍ମ। ବେଦାନ୍ତର ଆଦର୍ଶକୁ କିଭଳି ଭାବରେ ଆମର ଦୈନନ୍ଦିନ ଜୀବନରେ, ଗାର୍ହସ୍ଥ୍ୟ ଜୀବନରେ, ନାଗରିକ ଜୀବନରେ ଓ ଗ୍ରାମ୍ୟ ଜୀବନରେ କାର୍ଯ୍ୟରେ ପରିଣତ କରାଯାଇପାରେ, ସେଥିପାଇଁ ଓଡ଼ିଶାର ବିଶିଷ୍ଟ ବିଦ୍ୱାନ୍ ଶ୍ରୀମହାମେଧାନନ୍ଦନାଥ ସରସ୍ୱତୀଙ୍କ ଅଧ୍ୟକ୍ଷତାରେ କେତେକ ସମଧର୍ମୀ ବନ୍ଧୁଙ୍କୁ ନେଇ ଏକ ବେଦାନ୍ତ ପ୍ରଚାର ପରିଷଦ୍ ଗଠନ କରାଯାଇ ପାଠଚକ୍ର ଅନୁଷ୍ଠିତ ହେଉଛି। ଏହା ପକ୍ଷରୁ 'ଉପନିଷଦ୍ ଗ୍ରନ୍ଥମାଳା'ର ପ୍ରଥମପୁଷ୍ପ 'ଈଶୋପନିଷଦ୍', ଦ୍ୱିତୀୟ ପୁଷ୍ପ 'କେନୋପନିଷଦ୍' ଓ ତୃତୀୟପୁଷ୍ପ 'କଠୋପନିଷଦ୍' ପ୍ରକାଶ ପାଇ ଲୋକପ୍ରିୟ ହୋଇଛି। ଏହି ଗ୍ରନ୍ଥଗୁଡ଼ିକର ପଠନପାଠନ ଦ୍ୱାରା ବେଦାନ୍ତ ଭାବରେ ନିଜକୁ ଅଧିଷ୍ଠିତ କରି ଆତ୍ମସ୍ୱରୂପ ଉପଲବ୍ଧି କରିବା ପାଇଁ ସମସ୍ତଙ୍କୁ ମୋର ବିନମ୍ର ନିବେଦନ।

॥ ଇତି ॥

ବିନୀତ

**ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ**

ସଂପାଦକ

ବେଦାନ୍ତ ପ୍ରଚାର ପରିଷଦ୍

ଭୁବନେଶ୍ୱର—୩୮

Digitized by srujanika@gmail.com